# ଜୈନଧର୍ମ ଓ ସଂସ୍କୃତି

ପ୍ରାଧ୍ୟାପକ ଅଶୋକ କୁମାର ରଥ
କୁଳ ସଚିବ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ



ତାରାତାରିଣୀ ପୁସ୍ତକାଳୟ
ବାରାକ୍‌ସ, ବ୍ରହ୍ମପୁର-୧

ସ୍ୱସ୍ତି ଶ୍ରୀ ଜଗନ୍ନାଥାସ୍ତୁ, ସ୍ୱସ୍ତି ଶ୍ରୀ ସିଦ୍ଧ-ସୂରଣେ ।
ସ୍ୱସ୍ତି ପାଠକ ସାଧୁଭ୍ୟାଂ, ସ୍ୱସ୍ତି ଶ୍ରୀ ଗୁରୁଦେବ ନମଃ ।।

# ଜୈନଧର୍ମ ଓ ସଂସ୍କୃତି

ପ୍ରାଧ୍ୟାପକ ଅଶୋକ କୁମାର ରଥ
କୁଳସଚିବ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ପ୍ରକାଶକ :
**ଶ୍ରୀ ଭଗବାନ ପାଢ଼ୀ**
**ତାରତାରିଣୀ ପୁସ୍ତକାଳୟ**
ବ୍ରହ୍ମପୁର-୭୬୦୦୦୧

ପ୍ରଥମ ପ୍ରକାଶ : **ମହାଶିବରାତ୍ରି ( ୧୯୯୧ )**

ମୁଦ୍ରଣ :
**ମନମୋହନ ଟ୍ରେଡ଼ର୍ସ, ବ୍ରହ୍ମପୁର—୨**

**ସାଧାରଣ ବନ୍ଧେଇ ଟ ୪୦-୦୦ ଙ୍କା**
**ଶୋଭନ ଟ ୬୦-୦୦ ଙ୍କା**

# Jaina Dharma O Samskruti

**SRI ASHOK KUMAR RATH**
Registrar, Berhampur University.

*Published by* :
**Sri Bhagaban Padhi**
**TARATARINI PUSTAKALAYA**
Berhampur-760001

First Edition :
**Mahashivaratri (1991)**

*Printers* :
**Manmohan Traders, Berhampur-2**

**Students' Edition Rs. 40/-**
**Library Edition Rs. 60/-**

ପରମ ପୂଜ୍ୟ ନନା ୰ ଆଦିକନ୍ଦ ରଥ

ଓ

ବୋଉ ୰ ପଦ୍ମାବତୀ ଦେବୀଙ୍କ

ସ୍ମୃତି ଉଦ୍ଦେଶ୍ୟରେ ଅର୍ପିତ ।

"ପଦସ୍ଥଂ ମନ୍ତ୍ରବାକ୍ୟସ୍ଥଂ, ପିଣ୍ଡସ୍ଥଂଚ ଆତ୍ମଚିନ୍ତାନଂ
ରୂପସ୍ଥଂ ସର୍ବଚ୍ଛିଦ୍ରୂପଂ, ରୂପାତୀତଂ ନିରଞ୍ଜନଂ ।"

# ମୁଖବନ୍ଧ

'ଜୈନଧର୍ମ ଓ ସଂସ୍କୃତି' ଗ୍ରନ୍ଥରେ ମୌଳିକ ଉପାଦାନ ଗୁଡ଼ିକୁ ଭିତ୍ତି କରି ତେରଗୋଟି ଗବେଷଣାମୂଳକ ପ୍ରବନ୍ଧ ସନ୍ନିବେଶିତ କରାଯାଇଛି । ତନ୍ମଧ୍ୟରୁ ଛଅଗୋଟି ପ୍ରବନ୍ଧ, ଯଥା : 'ଜୈନଧର୍ମ ଓ ତାହାର ବୈଶିଷ୍ଟ୍ୟ' 'ଜୈନ କଥା ସାହିତ୍ୟ', 'ଜୈନ ପୁରାଣ', ଜୈନ ସାହିତ୍ୟ ଓ 'ଯକ୍ଷ ପୂଜା', 'ମନ୍ଦିର ଓ ମୂର୍ତ୍ତିମାନଙ୍କର ଉତ୍ପତ୍ତି' ଏବଂ 'ଜୈନଧର୍ମ ଓ ଶିଳ୍ପକଳା' ଝଙ୍କାର ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଥିଲା । ସେଥିପାଇଁ ଝଙ୍କାରର ସମ୍ପାଦକଙ୍କ ନିକଟରେ ମୁଁ କୃତଜ୍ଞ । ଉକ୍ତ ପ୍ରବନ୍ଧ ଗୁଡ଼ିକର ପୁନର୍ବିଲୋକନ ତଥା ପୁନରୀକ୍ଷଣ କରି ଅବଶିଷ୍ଟ ଅପ୍ରକାଶିତ ପ୍ରବନ୍ଧ ଗୁଡ଼ିକୁ ତତ୍ ସହିତ ଏହି ଗ୍ରନ୍ଥରେ ଉପସ୍ଥାପନ କରିଛି । ପ୍ରବନ୍ଧ ଗୁଡ଼ିକ ସହୃଦୟ ପାଠକ ତଥା ଗବେଷକଙ୍କ ଦୃଷ୍ଟି ଆକର୍ଷଣ କରିପାରିଲେ ନିଜକୁ ସାର୍ଥକ ମନେ କରିବି ।

ଗ୍ରନ୍ଥର ପାଣ୍ଡୁଲିପି ପ୍ରସ୍ତୁତ କରିଛନ୍ତି ମୋର ସହଧର୍ମିଣୀ ଶ୍ରୀମତୀ ସ୍ନେହଶୀଳା ରଥ । ତାଙ୍କଠାରୁ ଉତ୍ସାହ ପାଇନଥିଲେ ମୋର ଏହି ଲେଖାଟି ସମ୍ପୂର୍ଣ୍ଣ ହୋଇପାରିନଥା'ନ୍ତା ।

ଗ୍ରନ୍ଥଟି ପ୍ରକାଶ କରିବାରେ ମୋର ସହପାଠୀ ତଥା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ, ବନ୍ଧୁ ସର୍ବଶ୍ରୀ ରମେଶଚନ୍ଦ୍ର ସାହୁ ଏବଂ ବିଷ୍ଣୁବ୍ରଜ ଚୌଧୁରୀଙ୍କ ଉଦ୍ୟମ ପ୍ରଶଂସନୀୟ । ସେମାନଙ୍କୁ ମୋର ଧନ୍ୟବାଦ ।

ତାରିଣୀ ପୁସ୍ତକାଳୟର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ଭଗବାନ ପାଢ଼ୀ ଏହି ଗ୍ରନ୍ଥଟି ପ୍ରକାଶ କରିଥିବାରୁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଅଛି ।

ମନମୋହନ ପ୍ରେସ୍‌ର କର୍ମକର୍ତ୍ତା ଶ୍ରୀ ଶିବରାମ ସାବତ ଗ୍ରନ୍ଥଟିର ମୁଦ୍ରଣ କରିଥିବାରୁ ତାଙ୍କୁ ମୋର ଧନ୍ୟବାଦ ।

ମହାଶିବରାତ୍ରି
୧୨-୨-୯୧

ଲେଖକ

# ବିଷୟ ସୂଚୀ



"ଅମୂର୍ତ୍ତସ୍ୟ ଚିଦାନନ୍ଦରୂପସ୍ୟ ପରମାତ୍ମନଃ
ନିରଞ୍ଜନସ୍ୟ ସିଦ୍ଧସ୍ୟ ଧ୍ୟାନଂ ସ୍ୟାତ୍ ରୂପବର୍ଜିତଂ ॥"

ଆଚାର୍ଯ୍ୟ ହେମଚନ୍ଦ୍ର

# ପ୍ରଥମ ଅଧ୍ୟାୟ

## ଜୈନ ଧର୍ମ ଓ ତାହାର ବୈଶିଷ୍ଟ୍ୟ

ବିଶ୍ୱର ପ୍ରାଚୀନତମ ଧର୍ମ ମଧ୍ୟରେ ଜୈନଧର୍ମ ଅନ୍ୟତମ । ଜିନ ଶବ୍ଦର ଅର୍ଥ 'ରାଗଦ୍ୱେଷାନ୍ ବା କର୍ମ ଶତ୍ରୁନ୍ ଜୟତୀତି ଜିନଃ'—ରାଗ, ଦ୍ୱେଷ ପ୍ରଭୃତି ଓ କର୍ମ ଶତ୍ରୁଙ୍କୁ ଜୟ କରିଥିବା ବ୍ୟକ୍ତି ହିଁ ଜିନ ପଦବାଚ୍ୟ । ଜିନମାନଙ୍କ ପ୍ରବର୍ତ୍ତିତ ଧର୍ମ ଜୈନଧର୍ମ । ଜିନମାନେ ଅର୍ହତ, ଅର୍ହନ୍ତ, ଅରିହନ୍ତ ଓ ତୀର୍ଥଙ୍କର ନାମରେ ମଧ୍ୟ ଅଭିହିତ । ପ୍ରାଚୀନ-କାଳରୁ ଭାରତରେ ଜୈନଧର୍ମର ପ୍ରଭାବ ଓ ପ୍ରତିପତ୍ତି ବିଭିନ୍ନ ପ୍ରମାଣରୁ ପ୍ରତିପାଦିତ । ବୌଦ୍ଧ-ଧର୍ମରୁ ଜୈନଧର୍ମର ଉତ୍ପତ୍ତି ବୋଲି କେତେକ ତଦ୍‌ବିଦ୍ ବିବେଚନା କରିଥିଲେ ହେଁ ଜର୍ମାନୀର ବିଶିଷ୍ଟ ବିଦ୍ୱାନ୍ ଜାକୋବି ଏହି ମତକୁ ଖଣ୍ଡନ କରିଛନ୍ତି । ଜାକୋବିଙ୍କ ମତରେ (୧) ବୌଦ୍ଧ ଧର୍ମର ଆବିର୍ଭାବ ପୂର୍ବରୁ ଜୈନଧର୍ମର ଅସ୍ତିତ୍ୱ ଥିଲା । ବୌଦ୍ଧଧର୍ମ ସଦୃଶ ଜୈନଧର୍ମ ମଧ୍ୟ ବୈଦିକ ଧର୍ମରେ ବିପ୍ଳବର ଏକ ପ୍ରତୀକ । ଖ୍ରୀ : ପୂ : ୩୦୦୦ ବର୍ଷ ବେଳକୁ ସିନ୍ଧୁନଦୀର ଉପତ୍ୟକାରେ ଯେଉଁ ସଭ୍ୟତାର ଅଭ୍ୟୁଦୟ ହୋଇଥିଲା ତାହା ମୁଖ୍ୟତଃ ହରପ୍ପା ଓ ମହେଞ୍ଜୋଦାରୋ ଭୂଖନନରୁ ଜ୍ଞାତ ହୁଏ । ସେଠାରେ ଆବିଷ୍କୃତ କାୟୋତ୍ସର୍ଗ ଓ ଧ୍ୟାନ ମୁଦ୍ରାର କେତେକ ନଗ୍ନ ପୁରୁଷମୂର୍ତ୍ତିକୁ **Sir John Marshall** (୨) ଏବଂ **Sir Mortimore Wheeler** (୩) ଆଦି ପ୍ରତ୍ନତତ୍ତ୍ୱବିତ୍‌ମାନେ ଜୈନତୀର୍ଥଙ୍କର ଭାବେ ଚିହ୍ନିତ କରିଥିବାରୁ ତତ୍‌କାଳୀନ ଭାରତରେ ଜୈନଧର୍ମ ପ୍ରଚଳିତ ଥିବା ଅନୁମେୟ । ଏହାପରେ ବିଭିନ୍ନ ସାମାଜିକ ପରିବେଶ ମଧ୍ୟରେ ଜୈନଧର୍ମ ନୂତନ ରୂପରେ ପରିପୁଷ୍ଟ ହୋଇ ବିସ୍ତାର ଲାଭକରିଥିବା ସମ୍ଭବ । ପରବର୍ତ୍ତୀ କାଳରେ ଜୈନଧର୍ମରେ ପ୍ରବୃତ୍ତି ଓ ନିବୃତ୍ତି ମୂଳକ ମାର୍ଗ ରହିଥିବା ଅନୁମିତ ହୁଏ । ଏ ଦୁଇଟି ମାର୍ଗର ଲକ୍ଷ୍ୟ ଥିଲା ମୋକ୍ଷ । ଉକ୍ତ ଉଭୟ ମାର୍ଗର ମଧ୍ୟମ ପନ୍ଥାନୁଗାମୀ ଥିଲେ ଶାକ୍ୟ ମୁନି ବୁଦ୍ଧ, ଜୈନ ଧର୍ମର ଶେଷ ସଂସ୍କାରକ । ସେ ନିଜକୁ ଜଣେ ଜିନ ରୂପେ ଅଭିହିତ କରିଛନ୍ତି । ଏହି ମଧ୍ୟମ ପନ୍ଥା ହିଁ ତାଙ୍କୁ ଲୋକପ୍ରିୟ କରିବାରେ ସହାୟକ ହୋଇଥିଲା ।

ଭାରତର ଇତିହାସ ଓ ସଂସ୍କୃତି ସହ ଜୈନଧର୍ମ ଓତପ୍ରୋତ ଭାବେ ଜଡ଼ିତ । ତାହା ବିଶ୍ଳେଷଣ କଲେ ବହୁତଥ୍ୟ ଲୋକ ଲୋଚନକୁ ଆସିପାରିବ । ଜୈନଧର୍ମର ବୈଶିଷ୍ଟ୍ୟ

ସମ୍ପର୍କରେ ଅବଗତ ହେବାକୁ ହେଲେ ଉକ୍ତ ଧର୍ମର ଐତିହାସିକ ଭିତ୍ତିଭୂମିର ଅଧ୍ୟୟନ ଏକାନ୍ତ ଆବଶ୍ୟକ । ଏହି ଧର୍ମର ଅଭ୍ୟୁଦୟ, ପ୍ରସାର ପ୍ରାଧାନ୍ୟ ତଥା ଦେଶର ପରମ୍ପରା, ସଂସ୍କୃତି, ଇତିହାସ, ଭୂଗୋଳ, ସାହିତ୍ୟ ଇତ୍ୟାଦି ବିଷୟରେ ଅନେକ ଗବେଷଣା କଲେ ବହୁତଥ୍ୟ ଉଦ୍‌ଘାଟିତ ହୋଇପାରିବ । ଜୈନଧର୍ମର ଆଦି ତୀର୍ଥଙ୍କର ଋଷଭଦେବ ମନ୍ତ୍ରଦ୍ରଷ୍ଟା ବୈଦିକ ଋଷିମାନଙ୍କର ସମସାମୟିକ ବୋଲି ଜୈନମାନଙ୍କର ଧାରଣା ରହିଛି । ବୌଦ୍ଧଧର୍ମର କେତେକ ପ୍ରବର୍ତ୍ତକଙ୍କ ମତରେ ଜୈନଧର୍ମ ବୌଦ୍ଧଧର୍ମରୁ ଉଦ୍‌ଭୂତ । କିନ୍ତୁ ଏସବୁ ମତ ଅଯୌକ୍ତିକ ମନେହୁଏ । ତେବେ ଜୈନଧର୍ମର ଦର୍ଶନ ବୌଦ୍ଧଧର୍ମର ଦାର୍ଶନିକ ସିଦ୍ଧାନ୍ତ ଠାରୁ ପ୍ରାଚୀନତର ବୋଲି ପ୍ରମାଣ କରୁଥିବା କୌଣସି ଶାସ୍ତ୍ର ଅଦ୍ୟାପି ଗବେଷକଙ୍କ ହସ୍ତଗତ ହୋଇନାହିଁ । ସିଦ୍ଧାନ୍ତ ଅଥବା ମତ ବିଶେଷର ମୂଲ୍ୟ ନିର୍ଦ୍ଧାରଣ କରିବା ନିମନ୍ତେ ଦୁଇଟି ମାନଦଣ୍ଡ ଆବଶ୍ୟକ, ଯଥା :—ଐତିହାସିକ ଏବଂ ତର୍କ ଅଥବା ଅନୁଭୂତି ସମ୍ବନ୍ଧୀୟ । ଐତିହାସିକ ପ୍ରମାଣ ବଳରେ କୌଣସି ମତ ବା ସିଦ୍ଧାନ୍ତ ଉତ୍ପତ୍ତି କାଳରେ ପ୍ରଗତିର ଅନୁକୂଳ ବା ପ୍ରତିକୂଳରେ ଉପନୀତ ହୁଏ । ଅନୁଭୂତି ମୂଳକ ଉପାଦାନ ଦ୍ୱାରା ମାନବ ଜାତିର ସର୍ବକାଳୀନ ଅନୁଭବ ନିର୍ଣ୍ଣିତ ହୋଇପାରେ ।

ମନୁଷ୍ୟର ଅନୁଭୂତିର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଉକ୍ତ ମତବାଦର ବ୍ୟାଖ୍ୟାକାରୀ ସିଦ୍ଧାନ୍ତଗୁଡ଼ିକର ପରିବର୍ତ୍ତନ ହେବା ସ୍ୱାଭାବିକ । କାରଣ Darwin ଙ୍କ ବିବର୍ତ୍ତନବାଦ ପୂର୍ବରୁ ପ୍ରତିପାଦିତ ସୃଷ୍ଟି ସମ୍ବନ୍ଧୀୟ ସିଦ୍ଧାନ୍ତ ଆଧୁନିକ ବିଦ୍ୱାନ୍‌ମାନଙ୍କ ଅବଧାରଣାର ବହିର୍ଭୂତ ଥିଲା । ସେମାନେ ମୁଖ୍ୟତଃ ବାହ୍ୟଦର୍ଶୀ ଥିଲେ । ବିଭିନ୍ନ ପ୍ରାକୃତିକ ଘଟଣା-ବଳୀର ଆଧାର ଉପରେ ସେମାନଙ୍କ ଇଷ୍ଟଦେବତା ମାନଙ୍କର ପ୍ରଭାବ ଅନୁଭୂତ ହେଉଥିଲା । ତଦ୍‌ବତ୍ ଆର୍ଯ୍ୟମାନଙ୍କ ମତରେ ଏହି ଶକ୍ତିଗୁଡ଼ିକ ଥିଲେ ଅଧିକ ସମ୍ମାନିତ । ଋଗ୍‌ବେଦରେ ଆର୍ଯ୍ୟମାନଙ୍କର ଏହି ବିଶ୍ୱାସର ଅକୃତ୍ରିମ ଅଭିବ୍ୟକ୍ତି ଦେଖାଯାଏ । କିନ୍ତୁ କାଳକ୍ରମେ ବୈଦିକ ଧର୍ମ ମତରେ ଏହି ସରଳତା ଓ ସ୍ୱତଃପ୍ରବଣତା ବିଲୁପ୍ତ ହେବାରୁ ପୁରୋହିତମାନେ ସ୍ୱାର୍ଥସାଧନ ଉଦ୍ଦେଶ୍ୟରେ ବିବିଧ ଯଜ୍ଞାନୁଷ୍ଠାନ ତଥା ଦକ୍ଷିଣାଦିର ଅବତାରଣା କରିଥିବା ସମ୍ଭବ । କ୍ରମେ ପୁରୋହିତମାନେ ଏହି ଯଜ୍ଞ ବିଧାନକୁ ଜଟିଳ କଲେ ତଥା ଯଜ୍ଞାନୁଷ୍ଠାନ ନିମିତ୍ତ ସେମାନଙ୍କ ସାହାଯ୍ୟ ଓ ସହଯୋଗ ଅପରିହାର୍ଯ୍ୟ ବୋଲି ପ୍ରତିପାଦନ କଲେ । କେବଳ ସେତିକି ନୁହେଁ, ବିତ୍ତଶାଳୀ ଲୋକଙ୍କଠାରୁ ପ୍ରଚୁର ଅର୍ଥ ଅନ୍ୟାନ୍ୟ ଦ୍ରବ୍ୟ ଦାନ ସ୍ୱରୂପ ଆଦାୟ କରି ସେମାନଙ୍କୁ ସ୍ୱର୍ଗଲାଭର ମିଥ୍ୟା ପ୍ରତିଶ୍ରୁତିର ପ୍ରତାରଣା କରୁଥିଲେ । ସେମାନେ ଏକ ଭ୍ରାନ୍ତ ଧାରଣା ଦେଲେ ଯେ ଯଜ୍ଞାନୁଷ୍ଠାନ ଦ୍ୱାରା ବ୍ୟକ୍ତି ଇପ୍‌ସିତ ଆଧ୍ୟାତ୍ମିକ ଫଳ ଲାଭ କରିବ ।

ବୈଦିକ ମତର ପରିପୋଷକ ଆର୍ଯ୍ୟମାନେ ଭକ୍ତି ରଚନାରେ ବିହ୍ୱଳ ହୋଇ ଦେବତାମାନଙ୍କର ସ୍ତୁତିଗାନ କରୁଥିଲେ । କିନ୍ତୁ ବ୍ରାହ୍ମଣମାନଙ୍କ ପ୍ରାଧାନ୍ୟ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଭକ୍ତିର ସ୍ଥାନ ଅନୁଷ୍ଠାନ ମାନଙ୍କ ଦ୍ୱାରା ଅଧିକୃତ ହେବାକୁ ଲାଗିଲା ।

ଏହାଦ୍ୱାରା ଆର୍ଯ୍ୟମାନଙ୍କର ଉପାସନା ପଦ୍ଧତି ଓ ଯଜ୍ଞାନୁଷ୍ଠାନାଦି କାର୍ଯ୍ୟରେ ଦେବତାମାନଙ୍କର ପ୍ରାଧାନ୍ୟ ବିଲୁପ୍ତ ହୋଇ ବ୍ରାହ୍ମଣମାନଙ୍କ ଅପ୍ରତିହତ ପ୍ରଭାବ ବୃଦ୍ଧି ଲାଭ ହେଲା । କେବଳ ମାତ୍ର ବୈଧାନିକ କ୍ରିୟାନୁଷ୍ଠାନ ଦ୍ୱାରା ଯଜମାନର ଅଭୀଷ୍ଟ ସିଦ୍ଧି ଲାଭ କରିପାରିବ ବୋଲି ଯଜ୍ଞର୍ତ୍ତମନା ସ୍ୱାର୍ଥାନ୍ୱେଷୀ ବ୍ରାହ୍ମଣ ତଥା ପୁରୋହିତ ବର୍ଗ ବିଧାନ କଲେ । ଅତଏବ ବୈଦିକ କର୍ମକାଣ୍ଡ ଗୁଡ଼ିକର ଦୁର୍ବୋଧ ବିଧିବିଧାନକୁ କାର୍ଯ୍ୟକାରୀ କରିବା ହିଁ ମନୁଷ୍ୟର ସର୍ବଶ୍ରେଷ୍ଠ ଧର୍ମ ଓ କର୍ତ୍ତବ୍ୟ ବୋଲି ବିବେଚିତ ହେଲା । ବହୁ ଦେବ ଦେବୀଙ୍କ ଅସ୍ତିତ୍ୱ, ବିବିଧ କର୍ମକାଣ୍ଡ, ହିଂସାତ୍ମକ ଓ ବ୍ୟୟସାପେକ୍ଷ ଯଜ୍ଞାନୁଷ୍ଠାନ, ହିଂସାଦ୍ୟୋତକ ଜୀବବଳି ପ୍ରଥା, ଜାତି ଓ ଗୋଷ୍ଠୀ ଭେଦଭାବ, ନାନା ଅବାନ୍ତର ରୀତିନୀତି ତଥା ପୁରୋହିତ ବର୍ଗଙ୍କ ପ୍ରାଧାନ୍ୟ ମଧ୍ୟରେ ଆବଦ୍ଧ ହୋଇ ବୈଦିକ ଧର୍ମ ଓ ସମାଜ ଜଟିଳ ହେବାକୁ ଲାଗିଲା । ଜନସାଧାରଣ ଧର୍ମ ନାମରେ ନାନା କୁସଂସ୍କାର ଏବଂ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହେଲେ ।

ଏହିପରି ପରିସ୍ଥିତିରେ ଧର୍ମ ସମ୍ବନ୍ଧୀୟ ଯେ କୌଣସି କ୍ରିୟାକଳାପ ବୈଦିକ ପରଂପରାର ପ୍ରତିକୂଳ ହେବା ଅନିବାର୍ଯ୍ୟ । ବ୍ରାହ୍ମଣ୍ୟ ଯୁଗରେ ପ୍ରତିପାଦିତ କର୍ମକାଣ୍ଡର ବାହୁଲ୍ୟ ଦ୍ୱାରା ସମାଜରେ କ୍ରମେ ଧର୍ମବିପ୍ଳବର ସୂତ୍ରପାତ ହେଲା । ଏହି ପ୍ରତିକ୍ରିୟା ଦାର୍ଶନିକ ଓ ନୈତିକ ଦିଗରେ ପ୍ରସାରିତ ହେବା ଦ୍ୱାରା ବୈଦିକ ଯାଗଯଜ୍ଞର ପ୍ରାଧାନ୍ୟ ହ୍ରାସ ପାଇବାକୁ ଲାଗିଲା । ବ୍ରାହ୍ମଣ୍ୟ ଯୁଗର ପ୍ରତିକୂଳ ଦାର୍ଶନିକ ତଥା ଆଧ୍ୟାତ୍ମିକ ପ୍ରତିକ୍ରିୟାର ପରୋକ୍ଷ ଦୃଷ୍ଟାନ୍ତ ଉପନିଷଦରୁ ମିଳେ । ଉପନିଷଦର ପ୍ରଣେତାଗଣ ବହୁଦେବ ଦେବୀଙ୍କ ଠାରୁ ଆମର ଦୃଷ୍ଟି ପରିହିତ କରାଇ ଏକ ଆତ୍ମା ଉପରେ ଆମର ବିଶ୍ୱାସ ଅଟଳ ରଖାଇବାରେ ସକ୍ଷମ ହେଲେ । ନୈତିକ କ୍ଷେତ୍ରରେ ଉପନିଷଦର ଋଷିମାନେ ଅମଙ୍କୁ କର୍ମକାଣ୍ଡର ଅସାରତା ସମ୍ପର୍କରେ କେତେକ ସୂଚନା ଦେଇଛନ୍ତି । ଉଦାହରଣ ସ୍ୱରୂପ ମୁଣ୍ଡକ ଉପନିଷଦରେ ଲକ୍ଷିତ ଅଛି ବୈଦିକ ଯଜ୍ଞାନୁଷ୍ଠାନ ଅଥବା ଜୀବବଳି ଦ୍ୱାରା ମନୁଷ୍ୟ ମୋକ୍ଷ-ପ୍ରାପ୍ତ ହୁଏ ନାହିଁ ।

"ପ୍ଳବା ହ୍ୟେତେ ଅଦୃଢ଼ା ଯଜ୍ଞରୂପା... ...

........... ............

ଏତଚ୍ଛ୍ରେୟୋ ଯେ ପ୍ରବେଦସ୍ତି ମୂଢ଼ା
ଜରାମୃତ୍ୟୁଂ ତେ ପୁନରେ ବାପିୟନ୍ତି" । (୪)

ଅର୍ଥାତ୍ "ବୈଦିକ ଯାଗ-ଯଜ୍ଞାଦି କେବଳ ଛଳନାପୂର୍ଣ୍ଣ ଶିଳ୍ପକଳାରୂପୀ । ଯେଉଁ ଅଜ୍ଞମାନେ ଏହା ଉପରେ ଆସ୍ଥା ପୋଷଣ କରନ୍ତି ସେମାନେ ଜରା ଓ ମୃତ୍ୟୁ ମୁଖରେ ବାରମ୍ବାର ପତିତ ହୁଅନ୍ତି ।" ମାତ୍ର ସମସ୍ତ ଉପନିଷଦର ପ୍ରଣେତା ଏହି ମତବାଦର ପରିପୋଷକ ନଥିଲେ । କାରଣ ଅନେକ ଉପନିଷଦରେ ଯଥା :—କେନୋପନିଷଦ, ପ୍ରଶ୍ନୋପନିଷଦ କଠୋପନିଷଦ,ଛାନ୍ଦୋଗ୍ୟ ଉପନିଷଦରେ(୫)ବ୍ରାହ୍ମଣ୍ୟ ଧର୍ମର ସାର୍ବଭୌମ

ପ୍ରଭାବ ସ୍ୱୀକୃତ ହୋଇଛି । କିନ୍ତୁ କେବଳ ମୋକ୍ଷ ପ୍ରାର୍ଥୀଙ୍କ ଦୃଷ୍ଟିକୋଣରୁ ହିଁ ଉପନିଷଦରେ କର୍ମକାଣ୍ଡର ନିନ୍ଦା କରାଯାଇଛି । (୭) ତଥାପି ଦର୍ଶନରେ ଉପନିଷଦଗୁଡ଼ିକ ପ୍ରତ୍ୟକ୍ଷରେ ଅନେକେଶ୍ୱରବାଦର ବିରୋଧ କରିନାହାନ୍ତି । ଆଧୁନିକ ରାଜନୈତିକ ଭାଷାରେ କହିବାର ହେଲେ ଉପନିଷଦର ସ୍ୱର ସଂସ୍କାରବାଦୀ ଥିଲା, କ୍ରାନ୍ତିବାଦୀ ନୁହେଁ । କିନ୍ତୁ ଏ ସମୟରେ ଜନସାଧାରଣ କର୍ମକାଣ୍ଡର ଜଟିଳତାରେ କ୍ଷୁବ୍ଧହୋଇ ନୈତିକ ବାତାବରଣର ଆମୂଳ-ଚୂଳ ପରିବର୍ତ୍ତନ ଦାବୀ କରୁଥିଲେ । ନାନା ଅଜ୍ଞାତ,ଅନାଚାର ଓ କୁସଂସ୍କାର ମଧ୍ୟରେ ବୈଦିକ ଧର୍ମ ଓ ସମାଜ କଳୁଷିତ ହେବାରୁ କେତେକ ଚିନ୍ତାଶୀଳ ବ୍ୟକ୍ତି ଧର୍ମକ୍ଷେତ୍ରରେ ସଂସ୍କାର ନିମନ୍ତେ ଏକ ଆଧ୍ୟାତ୍ମିକ ଆନ୍ଦୋଳନ ସୃଷ୍ଟି କଲେ । ଏହି ସଂସ୍କାରମୂଳକ ତଥା ବୌଦ୍ଧିକ ବିପ୍ଳବ ମଧ୍ୟରୁ ବିଭିନ୍ନ ମତବାଦର ଅଭ୍ୟୁଦୟ ହୋଇଥିଲା । ପରିଣାମରେ ତତ୍କାଳୀନ ଭାରତରେ ସୃଜନଶୀଳ ବିଚାରକ ଓ ପ୍ରଚାରକ ବୈଦିକ ଦାର୍ଶନିକ ଓ ନୈତିକ ବିଚାର ପରଂପରାର ପ୍ରତିକୂଳ ହେଲେ ।

ଏହି ପ୍ରଚାରକମାନେ ଯେକୌଣସି ପ୍ରକାରେ ପ୍ରାଚୀନ ଅନ୍ଧବିଶ୍ୱାସ ଗୁଡ଼ିକୁ ଦୂର କରିବାରେ ସଚେଷ୍ଟ ହେଲେ । ଏହି ନୂତନ ଶ୍ରେଣୀର ଚିନ୍ତକଙ୍କ ମଧ୍ୟରେ ମଂଖଲି ଗୋଷାଲ ‘ନିୟତି ବାଦ’ (ସଂସାର ବିଶୁଦ୍ଧି !, (୭) ପୂରଣ କସ୍ସପ ‘ଅକ୍ରିୟା ବାଦ’ (୮) ଅଜିତ କେଶ କମ୍ବଳିନ୍ ‘ଉଚ୍ଛେଦ ବାଦ) (୯) ପକୁଧ କାତ୍ୟାୟନ କକୁଧ କାତ୍ୟାୟନ) ‘ଶାଶ୍ୱତ ବାଦ’ ଅଥବା, ‘ସତ୍କାୟ ବାଦ’ (୧୦) ଏବଂ ସଞ୍ଜୟ ବେଲଠ୍ଠିପୁତ୍ତ-ବିକ୍ଷେପ ବାଦ’ ଅଥବା ‘ଅଜ୍ଞାନ ବାଦ’ର (୧୧) ର ପ୍ରଚାର କରିଥିଲେ । କିନ୍ତୁ ସେମାନଙ୍କ ଗୂଢ଼ ଦାର୍ଶନିକ ଚିନ୍ତାଧାରା ଏବଂ କ୍ଲିଷ୍ଟ ଧର୍ମତତ୍ତ୍ୱୋପଦେଶ ସର୍ବ-ସାଧାରଣଙ୍କ ପାଇଁ ଅବୋଧ ହେଲା । କେତେକ କ୍ରାନ୍ତିକାରୀ ବିଚାରକଙ୍କ ଦୃଷ୍ଟିକୋଣ ଭାବାତ୍ମକ ଓ ସର୍ଜନାତ୍ମକ ମଧ୍ୟ ଥିଲା । ସେମାନେ ବ୍ରାହ୍ମଣ୍ୟଯୁଗର ଅନ୍ଧାନୁକରଣର ବିଲୋପ ସାଧନ କରି ଏକ ନବୀନ ସୃଷ୍ଟିର ଉଦୟକୁ ସ୍ୱାଗତ କରୁଥିବେ । ସେମାନଙ୍କ ଉଦ୍ଦେଶ୍ୟଥିଲା ସମାଜର ନୈତିକ ପୃଷ୍ଠଭୂମିର ଆମୂଳଚୂଳ ପରିବର୍ତ୍ତନ, ସଂସ୍କାର ତଥା ନବୀକରଣ । ଏହି ପ୍ରକାରର ଚିନ୍ତକ ଥିଲେ ଜୈନଧର୍ମର ପ୍ରଚାରକ ଭଗବାନ ମହାବୀର ଏବଂ ବୌଦ୍ଧଧର୍ମର ପ୍ରବର୍ତ୍ତକ ଭଗବାନ ବୁଦ୍ଧ ।

ଜୈନଧର୍ମର ଉତ୍ପତ୍ତି କାଳ ସଂପର୍କରେ ଐତିହାସିକ ମାନଙ୍କ ମଧ୍ୟରେ ମତଦ୍ୱୈଧ ଥିଲେ ସୁଦ୍ଧା ତାହା ଯେ ବୈଦିକ ଧର୍ମଠାରୁ ପ୍ରାଚୀନ ସେଥିରେ ସନ୍ଦେହର ଅବକାଶ ନାହିଁ । ଐତିହାସିକ ଏବଂ ଦାର୍ଶନିକ ଦୃଷ୍ଟିକୋଣରୁ ଏହା ମହତ୍ତ୍ୱପୂର୍ଣ୍ଣ । ଜୈନ ଧର୍ମର ମହତ୍ତ୍ୱ ନିର୍ଣ୍ଣୟ କଲାବେଳେ ଏହି କାଳକ୍ରମକୁ ଧ୍ୟାନ ଦେବା ନିତାନ୍ତ ଆବଶ୍ୟକ । ସମ୍ଭବତଃ ଜୈନଧର୍ମ ହିଁ ପ୍ରଥମ ସମ୍ପ୍ରଦାୟ ରୂପେ ବୈଦିକ କର୍ମକାଣ୍ଡର ବିରୋଧ କରିଥିଲା ଏବଂ ତାହା ପରିବର୍ତ୍ତେ ନୈତିକ ସିଦ୍ଧାନ୍ତ ଗୁଡ଼ିକୁ ଉପସ୍ଥାପନ କରିବା ପାଇଁ ଉଦ୍ୟମ କଲା । ଜୈନଧର୍ମର କୋମଳମନା ପ୍ରବର୍ତ୍ତକଙ୍କ ପ୍ରାଣର ସୂକ୍ଷ୍ମ ତନ୍ତ୍ରୀରେ ବୈଦିକ କର୍ମକାଣ୍ଡର ହିଂସା ପରାୟଣତା

ବିଶେଷ ଆଘାତ ଦେଇଥିବା ଯୋଗୁଁ ଜୈନମାନେ ସର୍ବପ୍ରଥମେ ଦୃଢ଼ ନିନାଦ ସ୍ୱରରେ ପ୍ରଚାର କରିଥିଲେ "ଅହିଂସା ପରମୋ ଧର୍ମଃ" । ପାରମ୍ପରିକ ଆର୍ଯ୍ୟ ସନାତନ ଧର୍ମକୁ ଅବଲମ୍ବନ କରୁଥିବା କେତେକ ସ୍ୱାର୍ଥାନ୍ଧ ବ୍ରାହ୍ମଣ ଗୋଷ୍ଠୀ ସନାତନ ଧର୍ମର ମୌଳିକ ନୀତି ନିୟମର କଦର୍ଥ କରି ଧର୍ମ ନାମରେ ବିବିଧ କୁତ୍ସିତ କର୍ମକାଣ୍ଡ ଏବଂ ହିଂସା ଦ୍ୟୋତକ ବଳି ପ୍ରଥାକୁ ପ୍ରତ୍ୟକ୍ଷ ଅଥବା ପରୋକ୍ଷରେ ସମର୍ଥନ କରୁଥିବାବେଳେ ଜୈନଧର୍ମ ଦାର୍ଶନିକମାନଙ୍କର ଅହିଂସା ଆଚରଣ ଉପରେ ଗୁରୁତ୍ୱାରୋପ କରିବା ବିଶେଷତଃ ଉଲ୍ଲେଖଯୋଗ୍ୟ ।

**ପଞ୍ଚମହାବ୍ରତ** : ଜୈନ ଧର୍ମର ତ୍ରୟୋବିଂଶ ତୀର୍ଥଙ୍କର ପାର୍ଶ୍ୱନାଥ ଯେଉଁ ଧର୍ମ ପ୍ରଚାର କରିଥିଲେ ତାହା 'ଚତୁର୍ଯ୍ୟାମ' ଧର୍ମ ନାମରେ ଅଭିହିତ । (୧୨) କାରଣ ସେଥିରେ ନୈତିକ ଆଚରଣ ପଦ୍ଧତି ସମ୍ବନ୍ଧୀୟ ଚାରୋଟି ନୀତି ଅବତାରିତ ହୋଇଥିଲା । ଯଥା :— ଅହିଂସା, ଅନୃତ ବା ସତ୍ୟ, ଅସ୍ତେୟ ଏବଂ ଅପରିଗ୍ରହ । ଏହି 'ଚତୁର୍ଯ୍ୟାମ' ଧର୍ମର ସଂସ୍କାର ସାଧନ କରି ମହାବୀର (ଜୈନଧର୍ମର ଚତୁର୍ବିଂଶ ତୀର୍ଥଙ୍କର) ତାହାକୁ 'ପଞ୍ଚଯାମ' ଧର୍ମରେ ପରିଣତ କରିଥିଲେ । ଉପରୋକ୍ତ ଚାରୋଟି ନୀତି ସହିତ ମହାବୀର ଅନ୍ୟ ଏକ ନୀତି ଯୋଗ କରିଥିଲେ । ସେହି ପଞ୍ଚମ ନୀତିଟି ହେଲା ବ୍ରହ୍ମଚର୍ଯ୍ୟ ଅଥବା ଆତ୍ମସଂଯମ । ବ୍ରହ୍ମଚର୍ଯ୍ୟ ପାଳନ ତଥା ଇନ୍ଦ୍ରିୟକୁ ସଂଯତ କରିବା ଉପରେ ମହାବୀର ଗୁରୁତ୍ୱ ଆରୋପ କରିଛନ୍ତି ।

ଅହିଂସା ହେଲା ଜୈନଧର୍ମର ମୂଳନୀତି ତଥା ଜୈନ ଆଚାରର ପ୍ରାଣ । ଅହିଂସା ବ୍ରତ ପାଳନ ଉପରେ ଜୈନମାନେ ବିଶେଷ ଗୁରୁତ୍ୱାରୋପ କରନ୍ତି । ନିଷ୍ଠାର ସହ କାୟ, ମନ ଏବଂ ବାକ୍ୟରେ ଅହିଂସା ଆଚରଣକୁ ଅକ୍ଷରେ ଅକ୍ଷରେ ପାଳନ କରିବା ପାଇଁ ଜୈନ ଧର୍ମ ଦାର୍ଶନିକମାନେ ନିର୍ଦ୍ଦେଶ ଦେଇଛନ୍ତି । ଅନ୍ୟକୁ ଆଘାତ ନଦେବା ସଙ୍ଗେ ସଙ୍ଗେ ଅନ୍ୟର ହିତ ବା କଲ୍ୟାଣ ସାଧନ କରିବା ଏହି ଅହିଂସା ବ୍ରତର ଅନ୍ତର୍ଗତ । ସେମାନଙ୍କ ମତରେ ଅହିଂସା ଧର୍ମର ଆଦର୍ଶ ହେଉଛି ଦୟା, କ୍ଷମା, କରୁଣା, ସମଦୃଷ୍ଟି, ସହନଶୀଳତା, ଅକ୍ରୋଧ, ବ୍ରହ୍ମଚର୍ଯ୍ୟ ଇତ୍ୟାଦି । ଜୀବ ପ୍ରତି ପ୍ରେମ ଓ କରୁଣା ଭାବ ପ୍ରଦର୍ଶନ ଅହିଂସା ନୀତିର ଭିତ୍ତିଭୂମି । ଜୈନମତରେ ମନରୁ କ୍ରୋଧ, ମୋହ, ଦ୍ୱେଷ ଓ ହିଂସାଭାବ ଦୂର କରିବା ହିଁ ମହାପୁଣ୍ୟ । (୧୩) କେବଳ ମନୁଷ୍ୟ ଶରୀର କାହିଁକି, ପଶୁ-ପକ୍ଷୀ, କୀଟ-ପତଙ୍ଗ ପ୍ରଭୃତି ଜୀବଙ୍କ ଶରୀରରେ ମଧ୍ୟ ଆତ୍ମା ବିଦ୍ୟମାନ । ଏପରିକି ବୃକ୍ଷ ପତ୍ର, ପୁଷ୍ପ ଫଳ, ଗୁଳ୍ମ, ଲତା ମଧ୍ୟରେ ପ୍ରାଣର ସତ୍ତା ଓ ଚେତନା ଅଛି ବୋଲି ଜୈନମାନଙ୍କର ବିଶ୍ୱାସ । ସେମାନଙ୍କ ମତରେ ସଜୀବ ଜୀବ ଓ ନିର୍ଜୀବ (ଅଜୀବ) ଉଭୟର ଚେତନା ବା ଆତ୍ମା ରହିଛି । ଏବଂ ତା ହିଂସା ଧ୍ୱଂସ କରିବା ମହାପାପ । ତେଣୁ ଏହି ଜୀବମୟ ଜଗତରେ ଅହିଂସା ନୀତି ପାଳନ ହିଁ ପ୍ରକୃତ ଏବଂ ଶ୍ରେଷ୍ଠ ଧର୍ମ । (୧୪) । କୀଟ-ପତଙ୍ଗ ଅଗ୍ନିରେ ଦଗ୍ଧ ହୋଇଯିବେ ଏବଂ ତଦ୍ୱାରା ଜୀବହିଂସା ବା ଜୀବ ବଧ ପାପ ଲାଗିବ ବୋଲି ଜୈନ-ଭିକ୍ଷୁମାନେ ରାତିରେ ପ୍ରଦୀପ ଜାଳି ଶୟନ କରନ୍ତି ନାହିଁ କିମ୍ବା ଖାଦ୍ୟ ରନ୍ଧନ କରି

ଭୋଜନ କରନ୍ତି ନାହିଁ । ନିଶ୍ୱାସ ପ୍ରଶ୍ୱାସ ପ୍ରକ୍ରିୟାରେ ନାସିକା ମଧ୍ୟ ଦେଇ କୀଟ ଶରୀର ଭିତରକୁ ପ୍ରବେଶ କଲେ ନାଶ ହୋଇଯିବେ ବୋଲି ଜୈନମାନେ ନାକରେ ପତଳା କନା ବା ପଟି ବାନ୍ଧିଥାନ୍ତି । ଏହା ବ୍ୟତୀତ ସେମାନେ ପାଣି ଛାଣି ପିଅନ୍ତି, କାରଣ ପାଣିରେ ଥିବା କୀଟ ଉଦର ମଧ୍ୟକୁ ଗଲେ ତାହାର ବିନାଶ ହେବ ଏବଂ ତଦ୍ୱାରା ଜୀବ ହତ୍ୟା ପାପ ଲାଗିବ । ଜୀବ ପ୍ରତି ଏପରି ଅସୀମ ଦୟା ଏବଂ ଏଭଳି କଠୋର ଅହିଂସା ନୀତି ପାଳନ ଜୈନ ଧର୍ମର ଏକ ବୈଶିଷ୍ଟ୍ୟ । ଅବଶ୍ୟ ଅନ୍ୟାନ୍ୟ ଧର୍ମରେ ଅହିଂସା ନୀତି ପାଳନ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । କିନ୍ତୁ ଜୈନ ଧର୍ମ ଅହିଂସା ନୀତିରେ ଯେପରି ଗୁରୁତ୍ୱ ଦିଏ ତାହାର ପଟାନ୍ତର ନାହିଁ ।

ଜୈନଧର୍ମରେ ସତ୍ୟ ଆଚରଣ ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଇଛି । ସତ୍ୟାଚରଣର ଭୂମିକା ଯେ କୌଣସି ପ୍ରକାର ସାମାଜିକ ତଥା ମାନସିକ ବ୍ୟବସ୍ଥା ପାଇଁ ଅତୀବ ଗୁରୁତ୍ୱ-ପୂର୍ଣ୍ଣ । ଏହାର ମହତ୍ତ୍ୱ କେବଳ ଜୈନମାନେ କାହିଁକି ଅନ୍ୟାନ୍ୟ ଧର୍ମାବଲମ୍ବୀମାନେ ଯୁଗ ଯୁଗ ଧରି ଗ୍ରହଣ କରି ଆସିଛନ୍ତି ।

ଅସ୍ତେୟ ଅର୍ଥାତ୍ ଚୌର୍ଯ୍ୟ ବୃତ୍ତିର ପରିହାର ଉପରେ ଜୈନ ଧର୍ମ-ଦର୍ଶନ ଗୁରୁତ୍ୱ ଦିଏ । ଜୈନ ମତରେ ବିନାନୁମତିରେ ପରଧନ ବା ଦ୍ରବ୍ୟ ଭୋଗ ଅଥବା ବ୍ୟବହାର ସ୍ତେୟ ବା ଚୌର୍ଯ୍ୟାନ୍ତର୍ଗତ । ନୈତିକ ଦୃଷ୍ଟିରୁ ଚୌର୍ଯ୍ୟ ବୃତ୍ତି କଦାପି ସ୍ପୃହଣୀୟ ନୁହେଁ । ମାନବିକ ତଥା ସାମାଜିକ ଶୃଙ୍ଖଳା ଓ ନିରାପତ୍ତାର ସୁରକ୍ଷା ନିମନ୍ତେ ଅସ୍ତେୟ ବ୍ରତ ପାଳନ ଏକାନ୍ତ ଆବଶ୍ୟକ ।

ଶ୍ରମଣ ନିମିତ୍ତ ଅପରିଗ୍ରହ ବ୍ରତ ଅନିବାର୍ଯ୍ୟ । ପରମଶ୍ରେୟର ଉପଲବ୍ଧି ନିମନ୍ତେ ଶ୍ରମଣର ସମ୍ପୂର୍ଣ୍ଣ ନିବୃତ୍ତି-ଯୋଗ କାମ୍ୟ । ସୁତରାଂ ଅପରିଗ୍ରହ ବ୍ରତର ମୂଳ ଉଦ୍ଦେଶ୍ୟ ହେଲା ସମସ୍ତ ପ୍ରକାର ବିଷୟାସକ୍ତି ଅଥବା କୌଣସି ବସ୍ତୁର ମମତ୍ୱମୂଳକ ବା ଅଧିକରଣର ବିଲୋପ ସାଧନ । ଏଥିପାଇଁ ସମସ୍ତ ପାର୍ଥିବ ବିଷୟ ପ୍ରତି ଅନାସକ୍ତ ଭାବ ଆବଶ୍ୟକ । ଅପରିଗ୍ରହ ବ୍ରତ ସଂଯମ ଆଚରଣ କରିବା ଦିଗରେ ସହାୟକ ହୋଇଥାଏ ।

ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ଗୃହତ୍ୟାଗୀ ବୈରାଗୀ ଅଥବା ଶ୍ରମଣ ପକ୍ଷରେ ଏକାନ୍ତ ଆବଶ୍ୟକ । କାରଣ ସଂଯମ ଆଚରଣ କରିବା ନିମନ୍ତେ ସେ ନିଜକୁ ଉତ୍ସର୍ଗ କରିଥାଏ । ଜୈନ ମତରେ ମାନସିକ ଅଥବା ବାହ୍ୟିକ, ଲୌକିକ କିମ୍ବା ପରଲୌକିକ, ସ୍ୱାର୍ଥ ବା ପରାର୍ଥ ସମସ୍ତ ପ୍ରକାର କାମନା ଏବଂ ମୈଥୁନର ପୂର୍ଣ୍ଣ ପରିତ୍ୟାଗରେ ହିଁ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ସମ୍ଭବ । କାମନା ବା ବାସନା ଅଥବା ମୈଥୁନରୁ ହିଂସା ବିଦ୍ୱେଷ, ସଂଘର୍ଷ ଆଦି ପାପର ସୂତ୍ରପାତ ହୋଇଥାଏ । ତେଣୁ ସମ୍ବନ୍ଧୀୟ କାମନା ଏବଂ ଯୌନ ସମ୍ଭୋଗ ଶ୍ରମଣ ନିମିତ୍ତ ପୂର୍ଣ୍ଣତୟା ବର୍ଜନୀୟ ।

ଏହି ପଞ୍ଚ ମହାବ୍ରତ ପାଳନ ଦ୍ୱାରା ଶ୍ରମଣ ନିଜ ବ୍ୟକ୍ତିତ୍ୱର ଉତ୍କର୍ଷ ଓ ପୂର୍ଣ୍ଣତା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ନିର୍ବାଣ ପ୍ରାପ୍ତ ହୋଇଥାଏ ।

ଜୈନ ଦର୍ଶନର ମୂଳ ପ୍ରକୃତି ଓ ଜୀବ ପରସ୍ପର ଆଧାରିତ । ପ୍ରକୃତି ବା ପଦାର୍ଥ, ଧର୍ମ, ଅଧର୍ମ, ସ୍ଥାନ, କାଳ, ଦ୍ରବ୍ୟ ଓ ଆତ୍ମା ସ୍ୱରୂପରେ ଷଡ଼୍‌ବିଧ । ଜୀବ, ଅଜୀବ, ଆଶ୍ରବ, କର୍ମବନ୍ଧ ସମ୍ବର, ନିର୍ଜରା, ପାପ, ପୁଣ୍ୟ ଏବଂ ମୋକ୍ଷ—ଏହି ନଅଗୋଟି ନୈତିକ ତତ୍ତ୍ୱ ଜୈନ ଦର୍ଶନରେ ସ୍ୱୀକୃତ ହୋଇଛି ।

**ଷଡ଼୍‌ବିଧ ଦ୍ରବ୍ୟ :** ଜୈନଧର୍ମ ବାସ୍ତବବାଦୀ ( **Realistic**) ଏବଂ ବହୁ ତତ୍ତ୍ୱବାଦୀ (**Pluralistic**) । ଏହି ଧର୍ମ ଅନୁସାରେ ଜଗତ ସତ୍ୟ ଏବଂ ଏଥିରେ ପ୍ରଚଳିତ ବହୁତତ୍ତ୍ୱ ସତ୍ୟ । ଜୈନଧର୍ମ ବସ୍ତୁର ଚିରନ୍ତନତାରେ ବିଶ୍ୱାସ କରେ । ଏହି ବିଶ୍ୱାସ ଅନୁସାରେ ବସ୍ତୁ ପରିବର୍ତ୍ତିତ ହେଉଥିଲେ ସୁଦ୍ଧା ଚିରନ୍ତନ ହୋଇ ରହେ । ବସ୍ତୁର ମୌଳିକ ଗୁଣ (**Essential quality**) ଚିରନ୍ତନ, ମାତ୍ର ଏହାର ପର୍ଯ୍ୟାୟ (**modes**) ପରିବର୍ତ୍ତିତ ହେଉଥାଏ । କିନ୍ତୁ ବୌଦ୍ଧଧର୍ମ ବସ୍ତୁର ଚିରନ୍ତନତାରେ ବିଶ୍ୱାସ କରେନାହିଁ ।

ଜୈନ ଦର୍ଶନରେ ପ୍ରକୃତି, ପଦାର୍ଥ, ପୁଦ୍‌ଗଳ ଅଥବା ଦ୍ରବ୍ୟ ଓ ତାହାର ଗୁଣକୁ ସତ୍ ବୋଲି ସ୍ୱୀକାର କରାଯାଇଛି । ଦ୍ରବ୍ୟ ସତତ ନିତ୍ୟ । ଦ୍ରବ୍ୟ ଏବଂ ସତ୍ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ ବୋଲି ଉମାସ୍ୱାତି ମତବ୍ୟକ୍ତ କରନ୍ତି --"ସତ୍ ଦ୍ରବ୍ୟ ଲକ୍ଷଣମ୍" । ପ୍ରତ୍ୟେକ ଦ୍ରବ୍ୟ ସ୍ୱୀୟ ପୂର୍ବପର୍ଯ୍ୟାୟକୁ ତ୍ୟାଗ କରି ଉତ୍ତର ପର୍ଯ୍ୟାୟକୁ ଧାରଣ କରିଥାଏ । ପୂର୍ବାବସ୍ଥାରେ ବିନାଶ ତଥା ଉତ୍ତରାବସ୍ଥାରେ ଉତ୍ପତ୍ତିର ଧାରା ଅନାଦି ଏବଂ ଅନନ୍ତ । ପ୍ରତ୍ୟେକ ଜଡ଼ ବା ଚେତନ ଦ୍ରବ୍ୟ ଏହି ଉତ୍ପତ୍ତି—ବିନାଶ—ଚକ୍ର ଭ୍ରମର ଅନ୍ତର୍ଭୁକ୍ତ । ବସ୍ତୁର ବିଭିନ୍ନ ପର୍ଯ୍ୟାୟ ବିନାଶ ଓ ଉତ୍ପତ୍ତିର ସାପେକ୍ଷ ହୋଇଥାଏ । ଏହା ସତ୍ତ୍ୱେ ବସ୍ତୁର କେବେହେଁ ସମ୍ପୂର୍ଣ୍ଣ ବିନାଶ କିମ୍ବା ସମ୍ପୂର୍ଣ୍ଣ ନୂତନ ରୂପରେ ବିକାଶ ହୁଏ ନାହିଁ । ଜୈନ ଦର୍ଶନରେ ଦ୍ରବ୍ୟ ଗୁଣ ଦୃଷ୍ଟିରୁ ନିତ୍ୟ ଏବଂ ପର୍ଯ୍ୟାୟ ଦୃଷ୍ଟିରୁ ଅନିତ୍ୟ ।

'ଜୀବ' ଓ 'ଅଜୀବ'—ଏହିପରି ମୁଖ୍ୟତଃ ଦ୍ରବ୍ୟ ଦୁଇଭାଗରେ ବିଭକ୍ତ । ଯେଉଁ ଦ୍ରବ୍ୟ ଚୈତନ୍ୟ ଧର୍ମଯୁକ୍ତ ତାହା 'ଜୀବ' । ତଦ୍‌ବ୍ୟତୀତ ଅନ୍ୟ ସମସ୍ତ ଦ୍ରବ୍ୟ 'ଅଜୀବ' ।

ଷଡ଼ବିଧ ଦ୍ରବ୍ୟ ମଧ୍ୟରୁ ପୁଦ୍‌ଗଳ ହେଉଛି ଏକ ଦ୍ରବ୍ୟ ଯାହାକି ଜଡ଼ ବା ଭୌତିକ । 'ପୁଦ୍' ଅର୍ଥ ପୂରଣ ଏବଂ ଗଳ' ଅର୍ଥ ହ୍ରାସ । 'ପୁଦ୍' ଏବଂ 'ଗଳ' ଦ୍ୱାରା ବିଭିନ୍ନ ରୂପରେ ପରିବର୍ତ୍ତିତ ହେଉଥିବା ଦ୍ରବ୍ୟ ହେଉଛି ପୁଦ୍‌ଗଳ । ସ୍ପର୍ଶ-ରସ ଗନ୍ଧ-ବର୍ଣ୍ଣ ଏହିପରି ଚାରିଗୋଟି ଗୁଣ ପୁଦ୍‌ଗଳରେ ବିଦ୍ୟମାନ ।

ଧର୍ମ ହେଉଛି ଏକ ଦ୍ରବ୍ୟ ଯାହାକି ଜୀବ ଏବଂ ପୁଦ୍‌ଗଳର ଗତିରେ ସଦା ସହାୟକ ହୋଇଥାଏ । ତେଣୁ ତାହା ନିତ୍ୟ ବା ଶାଶ୍ୱତ, ସର୍ବଲୋକ ବ୍ୟାପକ ଏବଂ ଅରୂପ ।

ଜୀବ ଏବଂ ପୁଦ୍‌ଗଳର ସ୍ଥୈର୍ଯ୍ୟ ବା ସ୍ଥିତିରେ ସାହାଯ୍ୟ କରୁଥିବା ଦ୍ରବ୍ୟର ନାମ ଅଧର୍ମ । ଗତିଶୀଳ ଦ୍ରବ୍ୟ ଅର୍ଥାତ୍ ଜୀବ ଓ ପୁଦ୍‌ଗଳର ସ୍ଥିତିରେ ମାଧ୍ୟମ ହେଲା ଅଧର୍ମ । ତାହା ସର୍ବତ୍ର ପରିବ୍ୟାପ୍ତ ।

ଆକାଶ ହେଉଛି ଏକ ଦ୍ରବ୍ୟ ଯେଉଁ ଜୀବ ଅଜୀବ ଆଦି ଦ୍ରବ୍ୟଙ୍କୁ ଆଶ୍ରୟ ଦେଇଥାଏ । ଆକାଶ ହେଉଛି ନିରାକାର । ତାହାର ବ୍ୟାପ୍ତି ଅସୀମ । ଆକାଶ ସ୍ୱାଶ୍ରିତ, ସ୍ୱପ୍ରତିଷ୍ଠିତ ଏବଂ ଅପରିବର୍ତ୍ତନଶୀଳ । ଜୀବାଜୀବ ଆଦି ଦ୍ରବ୍ୟ ସମୂହଙ୍କୁ ଆଶ୍ରୟ ଦେଉଥିବା ଆକାଶର ଆଶ୍ରୟସ୍ଥଳୀ ନାହିଁ । ଆକାଶ ଦୁଇଭାଗରେ ବିଭକ୍ତ । ଯଥା:—ଲୋକ ଓ ଅଲୋକ । ଲୋକର ଆକାଶକୁ 'ଲୋକାକାଶ' ଏବଂ ଅଲୋକର ଆକାଶକୁ 'ଅଲୋକାକାଶ' କୁହାଯାଏ । 'ଲୋକାକାଶ'ରେ ଜୀବ ପୁଦ୍‌ଗଳ, ଧର୍ମ, ଅଧର୍ମ ଏବଂ କାଳ ବିଦ୍ୟମାନ୍ । ସେଠାରେ ପାପ-ପୁଣ୍ୟର ଫଳ ଅନୁଭୂତ ହୋଇଥାଏ । ଲୋକାକାଶ'ର ଊର୍ଦ୍ଧ୍ୱରେ ଅବସ୍ଥିତ 'ଅଲୋକାକାଶ'ରେ ପାପ-ପୁଣ୍ୟର ଫଳ ଉପଲବ୍‌ଧ ହୁଏ ନାହିଁ ।

ଧର୍ମ, ଅଧର୍ମ ଓ ଆକାଶ ସଦୃଶ୍ୟ କାଳ ମଧ୍ୟ ଅଚେତନ ଓ ନିଷ୍କ୍ରିୟ ଦ୍ରବ୍ୟ । କାଳର ବ୍ୟାପ୍ତି ନଥାଏ । ତାହା ଅସୀମ । ପୁଦ୍‌ଗଳାଦି ଦ୍ରବ୍ୟର ପରିବର୍ତ୍ତନର ମାଧ୍ୟମ ବା ସହାୟକ ହେଉଛି କାଳ । ସମସ୍ତ ଘଟଣାର କାରଣ ହେଉଛି କାଳ ଯାହାକ ଅବିଭକ୍ତ ।

ଜୈନ ଦାର୍ଶନିକମାନେ ଜୀବକୁ ଆତ୍ମା ରୂପରେ ବର୍ଣ୍ଣନା କରିଛନ୍ତି । ପ୍ରତ୍ୟେକ ପ୍ରାଣୀର ଶରୀରରେ ଜୀବ ବା ଆତ୍ମା ବିଦ୍ୟମାନ । ତାହା ଅନେକ ଓ ପରସ୍ପର ଠାରୁ ଭିନ୍ନ । ପ୍ରତ୍ୟେକ ଆତ୍ମାର ସ୍ୱତନ୍ତ୍ର ସତ୍ତା ରହିଛି । ଗୁଣ ଭେଦରେ ସଂସାରର ସମସ୍ତ ପ୍ରାଣୀ ପରସ୍ପର ଠାରୁ ଭିନ୍ନ ହୋଇଥିବାରୁ ଆତ୍ମା ପ୍ରତ୍ୟେକ ଶରୀରରେ ଭିନ୍ନ ଭିନ୍ନ ପରିଲକ୍ଷିତ ହୁଏ । ଶରୀର ମଧ୍ୟରେ ବ୍ୟାପ୍ତ ଥିବାରୁ ଆତ୍ମା ପୌଦ୍‌ଗଳିକ କର୍ମଯୁକ୍ତ ଭାବେ ବିଦେଶିତ ହୁଏ । ମନୁଷ୍ୟ ହେଉ ବା ଅନ୍ୟ କୌଣସି ପ୍ରାଣୀ ହେଉ ଆତ୍ମା ହେଉଛି ସଚ୍ଚିଦ୍, ଚେତନଶୀଳ ଓ ସନାତନ । ଚେତନା ଆତ୍ମାର ସ୍ୱାଭାବିକ ଓ ଆବଶ୍ୟକ ଗୁଣ । ଆତ୍ମା ସଦାପରିଣାମୀ । ମନୁଷ୍ୟ ଶରୀରସ୍ଥ ଆତ୍ମା, ନାରକୀ (ନରକ ଜାତି) ଓ ଇତରଅଙ୍କ (ତୃଣ, କୀଟ, ପତଙ୍ଗ, ପଶୁ ପ୍ରଭୃତି) ଜୀବଙ୍କ ଆତ୍ମା ଅପେକ୍ଷା ଅଧିକ ଉନ୍ନ୍‌ତିଶୀଳ ଓ ଉନ୍ନତ ।

ତତ୍ତ୍ୱାର୍ଥ ସୂତ୍ରରେ ଆତ୍ମାକୁ 'ଉପଯୋଗ ଲକ୍ଷଣମ୍' ବୋଲି କୁହାଯାଇଛି । କାରଣ ଆତ୍ମାର ସାଧାରଣ ଲକ୍ଷଣ ହେଉଛି ଉପଯୋଗ ଅର୍ଥାତ୍ ଚୈତନ୍ୟ ପରିଣତି । ଜୀବ ବା ଆତ୍ମା ଏହି ଅସାମାନ୍ୟ ଗୁଣରେ ଅଧିକାରୀ ହୋଇଥିବା ଯୋଗୁ ତାହା ସମସ୍ତ ଜଡ଼ ଦ୍ରବ୍ୟଠାରୁ ଭିନ୍ନ । ମନୁଷ୍ୟର ଆତ୍ମା ଅନନ୍ତ ଶକ୍ତି, ଅନନ୍ତ ଦର୍ଶନ, ଅନନ୍ତ ଜ୍ଞାନ ଓ ଅନନ୍ତ ଆନନ୍ଦ ଏହି ଅନନ୍ତ ଚତୁଷ୍ଟୟର ଅଧିକାରୀ ହୋଇପାରିବ । ପବିତ୍ର ଆତ୍ମାରେ ଏହି ଅନନ୍ତ ଚତୁଷ୍ଟୟ ବିଦ୍ୟମାନ । କିନ୍ତୁ ସାଂସାରିକ ମୋହ ମାୟାଗ୍ରସ୍ତ ଆତ୍ମାରେ ଅନନ୍ତ ଚତୁଷ୍ଟୟ ପୂର୍ଣ୍ଣମାତ୍ରାରେ ବିକାଶ ଲାଭ କରିପାରେ ନାହିଁ । ଏହା ଲାଭ କରିବାକୁ ହେଲେ ଜୀବକୁ ପୁନର୍ଜନ୍ମରୁ ମୁକ୍ତ ହୋଇ ଏହି ଅନନ୍ତ ଚତୁଷ୍ଟୟର ଅଧିକାରୀ ହେବାକୁ ପଡ଼ିବ ।

ଜୈନମତରେ ଅନାତ୍ମା ବା ଶରୀରକୁ ଅଧିନରେ ରଖି ଯେଉଁ ଆତ୍ମଶକ୍ତିର ପ୍ରକାଶ, ସେଇ ହେଉଛି ପୁରୁଷ । ମନୁଷ୍ୟର ବ୍ୟକ୍ତିତ୍ୱ ହେଉଛି ଦ୍ୱୈତ । ଏହି ଦ୍ୱୈତ ବ୍ୟକ୍ତିତ୍ୱକୁ ବୁଝାଯାଏ ପୁରୁଷ । ଏଥିରେ ଆତ୍ମା ଓ ତାହାର ଅଧିନରେ ପୁରୁଷ ବିଦ୍ୟମାନ । ମନୁଷ୍ୟ ପୂର୍ଣ୍ଣ ନୁହେଁ । ସେ କ୍ରମେ ଉନ୍ନତି କରେ, ଅର୍ଥାତ୍ ସେ ପୂର୍ଣ୍ଣତା ଆଡ଼କୁ ଗତିକରେ । ତା' ପରେ ମନୁଷ୍ୟର ଆତ୍ମା ପୂର୍ଣ୍ଣତା ପ୍ରାପ୍ତ କରେ । ଏଇ ପୂର୍ଣ୍ଣତା ଚ୍ୟୁରପ୍ରକାରେ ପ୍ରକାଶ ପାଏ । ଯଥା :—ଅନନ୍ତ ଦର୍ଶନ, ଅନନ୍ତ ଜ୍ଞାନ, ଅନନ୍ତ ବୀର୍ଯ୍ୟ ଓ ଅନନ୍ତ ସୁଖ । ନିଜର ଆଧ୍ୟାତ୍ମିକ ପ୍ରକୃତିର ପ୍ରଭାବ ଦ୍ୱାରା ମନୁଷ୍ୟ ତା'ର ଭୌତିକ ପ୍ରକୃତିକୁ ନିୟନ୍ତ୍ରଣ କରିପାରେ । ଏହିପରି ଭୌତିକ ପ୍ରକୃତି ସମ୍ପୂର୍ଣ୍ଣ ଆତ୍ମସ୍ୱାଧୀନ ହେଲପରେ ଆତ୍ମା ପୂର୍ଣ୍ଣତା, ସ୍ୱାଧୀନତା ଓ ପରମ ସୁଖ ଲାଭ କରିପାରିବ । ଏହି ସ୍ୱାଧୀନ ଓ ସୁଖୀ ଆତ୍ମାକୁ 'ଜିନ' (ଜେତା—ଯେ ଇନ୍ଦ୍ରିୟମାନଙ୍କୁ ଜୟ କରନ୍ତି) ବା ତୀର୍ଥଙ୍କର (ପଥପ୍ରଦର୍ଶକ) ବୁଝାଯାଏ । ଏହି ଜିନତ୍ୱ ଲାଭ କରିବା ଯେଉଁ ଧର୍ମର ଲକ୍ଷ୍ୟ ତାହାହିଁ ଜୈନଧର୍ମ ।

ଆତ୍ମା ଓ ଭୂତ ପଦାର୍ଥ ନିତ୍ୟ ବୋଲି ଜୈନମାନେ ମତବ୍ୟକ୍ତ କରନ୍ତି । ସତ୍ ବିଶ୍ୱାସ, ସତ୍ ଜ୍ଞାନ ଓ ସତଚରିତ୍ର ଆତ୍ମାର ପ୍ରକୃତ ସ୍ୱଭାବ । ଆତ୍ମାକୁ ସାକ୍ଷାତ୍ କଲେ, ପୁନର୍ଜନ୍ମ ହୁଏନାହିଁ । କୁକର୍ମ କଲେ ମନୁଷ୍ୟେତର ପ୍ରାଣୀଙ୍କ ମଧ୍ୟରେ ଆତ୍ମା ଜନ୍ମ ଲାଭ କରି ତାହାର ପତନ ଘଟିଥାଏ । କେତେକ କର୍ମ ସତ୍‌ଜ୍ଞାନ ଲାଭ କରିବା ପଥରେ ପ୍ରତିବନ୍ଧକ ହୋଇଥା'ନ୍ତି । ହିଂସା, ଦ୍ୱେଷ, ଘୃଣା ପ୍ରଭୃତି ଦୁର୍ଗୁଣରେ ପ୍ରକୃତ ରୂପ ଉପଲବ୍‌ଧି କରିବାରେ କେତେକ କର୍ମ ବାଧା ଦିଅନ୍ତି । ସୁଖ-ଦୁଃଖ ଉପଲବ୍‌ଧି କରିବାରେ କେତେକ କର୍ମ ସହାୟକ ହୋଇଥାନ୍ତି । ଜ୍ଞାନ, ଆତ୍ମା, ମନ ଓ ଶରୀରର ସମବାୟରେ ମନୁଷ୍ୟର ପ୍ରକୃତ ଜୀବନ ବିକଶିତ ହୁଏ । ମନୁଷ୍ୟ ଆତ୍ମାର ପୂର୍ଣ୍ଣ ବିକାଶ ହିଁ ପରମାତ୍ମା ।

ଜୈନ ମତରେ ଆକାଶ, କାଳ, ଧର୍ମ, (ସ୍ପନ୍ଦନ) ଓ ଅଧର୍ମ (ନିଃସ୍ପନ୍ଦନ) ସାହାଯ୍ୟରେ ଦ୍ରବ୍ୟର ଅସ୍ତିତ୍ୱ ଉପଲବ୍‌ଧି ହୁଏ । ଆକାଶ ଥିବାରୁ ଦ୍ରବ୍ୟର ଗତିସ୍ଥିତି କର୍ମର ପରିଚୟ ମିଳେ । କାଳ ସାହାଯ୍ୟରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ପ୍ରଭୃତି କର୍ମ ସମ୍ବନ୍ଧରେ ଜ୍ଞାନ ଜାତ ହୁଏ । କର୍ମରେ ପ୍ରବୃତ୍ତିକୁ ଧର୍ମ ଓ କର୍ମରୁ ନିବୃତ୍ତିକୁ ଅଧର୍ମ ବୁଝାଯାଏ । ଦ୍ରବ୍ୟ ଗୁଡ଼ିକ ପରମାଣୁରୁ ଉତ୍ପନ୍ନ । ଜୈନମାନେ ପରମାଣୁକୁ ଅଣୁ କହନ୍ତି । ଆକାଶ, କାଳ, ଧର୍ମ, ଅଧର୍ମ, ଅଣୁ, ଅଜୀବ ଓ ଅନ୍ୟ ସମସ୍ତ ପଦାର୍ଥ ଜୀବ ଶ୍ରେଣୀ ଅନ୍ତର୍ଗତ । ଆତ୍ମା ବିହୀନ ଯେଉଁ ପଦାର୍ଥ ଗୁଡ଼ିକ କେବଳ ଅଣୁମାନଙ୍କ ସମବାୟରେ ଉତ୍ପନ୍ନ ସେଗୁଡ଼ିକ ଅଜୀବ ଏବଂ ଅଣୁ ସମବାୟରେ ଉତ୍ପନ୍ନ ପଦାର୍ଥରେ ଆତ୍ମାଥିଲେ ତାହା ଜୀବ ।

**ନବନୈତିକ ତତ୍ତ୍ୱ** : ଜୈନ ଦର୍ଶନର ମୂଳଭିତ୍ତି ହେଉଛି ନବ ନୈତିକ ତତ୍ତ୍ୱ ବା ନଅଗୋଟି ନୈତିକ ତତ୍ତ୍ୱ । ତାହା ହେଲା- ଜୀବ, ଅଜୀବ, ପୁଣ୍ୟ, ପାପ, ଆଶ୍ରବ, ବନ୍ଧ, ସମ୍ବର, ନିର୍ଜର ଓ ମୋକ୍ଷ । ଜୈନ ଧର୍ମର ବିଭିନ୍ନ ସଂପ୍ରଦାୟ, ଯଥା :— ଶ୍ୱେତାମ୍ବର,

ଦିଗାମ୍ବର, ଶ୍ୱେତାମ୍ବର ସ୍ଥାନକବାସୀ ଜୈନମାନେ ଏହି ନବତତ୍ତ୍ୱମୂଳକ ଜୈନ ଦର୍ଶନରେ ମୌଳିକ ସତ୍ୟକୁ ସ୍ୱୀକାର କରନ୍ତି ।

ପ୍ରଥମ ତତ୍ତ୍ୱ ହେଉଛି ଜୀବ । ଜୀବକୁ ଜୀବନ, ଶକ୍ତି, ଆତ୍ମା ଓ ଜ୍ଞାନ ରୂପେ ଜୈନ ଦର୍ଶନରେ ସ୍ୱୀକାର କରାଯାଇଛି । ଯାହାର ଚେତନା ଅଛି ତାହାକୁ ଜୀବ କୁହାଯାଏ । ଇଚ୍ଛା, ଘୃଣା, ଆକର୍ଷଣ ଆଦି ପ୍ରାକୃତିକ ଗୁଣ ଅନୁଭବ ପୂର୍ବକ କର୍ମ ଜନିତ ପ୍ରେରଣା ପ୍ରାପ୍ତ ହେଲେ ଜୀବ ନୂତନ ରୂପରେ ଜନ୍ମ ଲାଭ କରେ । ଜୀବ ଦେହରେ ଜାତ ଶକ୍ତି (ଦୈହିକ ଶକ୍ତି) ହେଉଛି ପ୍ରାଣ ଏବଂ ତାହା ଦଶ ଭାଗରେ ବିଭକ୍ତ—ତ୍ୱକ୍, ଜିହ୍ୱା, ନାସିକ, ଚକ୍ଷୁ, କର୍ଣ୍ଣ, କାୟବଳ, ବାକ୍ୟବଳ, ମନୋବଳ, ଶ୍ୱାସୋଚ୍ଛ୍ୱାସ ଏବଂ ଆୟୁ ।

ଜୀବ ଦୁଇ ପ୍ରକାର—ସିଦ୍ଧି ଜୀବ ଓ ସଂସାରୀ ଜୀବ । ସଂସାରୀ ଜୀବ ତିନି ଭାଗରେ ବିଭକ୍ତ— ପୁରୁଷ,ସ୍ତ୍ରୀ ଓ କ୍ଳୀବ । ପୁଣି ସୃଷ୍ଟି କ୍ରମାନୁସାରେ ନାରକୀ(ନରକ ଜାତ) ତିରିଅଙ୍କ (ତିର୍ଯ୍ୟକ୍ , ମନୁଷ୍ୟ ଓ ଦେବତା—ଏହିପରି ଜୀବ ଚାରି ଭାଗରେ ବିଭକ୍ତ । କୀଟ, ପତଙ୍ଗ, ପକ୍ଷୀ ଆଦି ରୂପରେ ଜାତ ଜୀବ ହେଲେ ନାରକୀ । ତିରିଅଙ୍କ ବା ତିର୍ଯ୍ୟକ୍ ଜୀବ ହେଲେ ମାନବେତର ପ୍ରାଣୀ (—ତୃଣ, ପକ୍ଷୀ ପଶ୍ୱାଦି), ନରନାରୀ ଶରୀରଧାରୀ ଜୀବ ମନୁଷ୍ୟ ଏବଂ ଯେଉଁମାନେ ଅଲୌକିକ ଶକ୍ତି ସମ୍ପନ୍ନ ତଥା ଦିବ୍ୟାକାର ସେମାନେ ହେଲେ ଦେବତା । ବର୍ଣ୍ଣ ଭେଦରେ ମଧ୍ୟ ଜୈନମାନେ ଜୀବକୁ ସ୍ୱଚ୍ଛ, କୃଷ୍ଣ, ନୀଳ, କପୋତ, ତେଜ (ରକ୍ତ), ପଦ୍ମ (ହରିଦ୍ରା) ଶୁକ୍ଳ ଓ ଅଲେଖ (ବର୍ଣ୍ଣହୀନ ଅବସ୍ଥା) ଆଦି ଆଠ ଭାଗରେ ବିଭକ୍ତ କରିଛନ୍ତି । ସେମାନେ ସର୍ବମୋଟ ୧୦୪ ଭାଗରେ ଜୀବ ବିଭକ୍ତ କରିଛନ୍ତି ।

ଦ୍ୱିତୀୟ ତତ୍ତ୍ୱ ହେଲା ଅଜୀବ । ଯାହାର ଚେତନା ନାହିଁ ସେ ଅଜୀବ । ତାହା ଦୁଇ ଭାଗରେ ବିଭକ୍ତ—ରୂପୀ ଏବଂ ଅରୂପୀ । ରୂପୀ ଅଜୀବ ରୂପଯୁକ୍ତ । ତାହା ପୁଦ୍‌ଗଳାସ୍ତିକାୟ ରୂପେ ଏକ ପ୍ରକାର ଏବଂ ରୂପ, ରସ,ଗନ୍ଧ, ସ୍ପର୍ଶ ଓ ବର୍ଣ୍ଣଯୁକ୍ତ । ଅରୂପୀ ଅଜୀବ ଚାରି ଭାଗରେ ବିଭକ୍ତ— ଧର୍ମାସ୍ତିକାୟ, ଅଧର୍ମାସ୍ତିକାୟ, ଆକାଶାସ୍ତିକାୟ ଏବଂ କାଳ ।

ପୁଣ୍ୟ ବା ଯୋଗ୍ୟତା ହେଲା ତୃତୀୟ ତତ୍ତ୍ୱ, ପୁଣ୍ୟକୁ ଶୁଭକର୍ମର ପରିଣାମ ବୋଲି ବିବେଚନା କରାଯାଇଛି । ଶୁଭକର୍ମର ଉଦାହରଣ ହେଲା—ସମ୍ୟକ ଦର୍ଶନ. ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ରର ପ୍ରାପ୍ତି ତଥା ସାଧୁ ପୁରୁଷଙ୍କ ପ୍ରତି ଶ୍ରଦ୍ଧାଭାବ । ଶୁଭକର୍ମକାରୀ ବ୍ୟକ୍ତି ପରିଣାମରେ ଶୁଭ ଆୟୁ, ଶୁଭନାମ, ସୁସ୍ଥ ଓ ସୁନ୍ଦର ଶରୀର ତଥା ସୁଖ-ସ୍ୱଚ୍ଛନ୍ଦ୍ୟ ଆଦି ପ୍ରାପ୍ତ ହୁଏ । ପୁଣ୍ୟ ନଅ ପ୍ରକାର—ଅନ୍ନପୁଣ୍ୟ (ଆହାର ଦାନ),ପାନପୁଣ୍ୟ (ପାନୀୟ ଜଳ ଦାନ), ବସ୍ତ୍ର ପୁଣ୍ୟ (ବସ୍ତ୍ର ଦାନ), ଲେଣ୍ୟ ପୁଣ୍ୟ (ବାସଦାନ), ଶୟନ ପୁଣ୍ୟ (ଶଯ୍ୟା ବା ଆସନ ଦାନ), ମନ ପୁଣ୍ୟ (ଗୁଣୀ, ସନ୍ଥ ଜନଙ୍କୁ ଦେଖି ସନ୍ତୋଷାନୁଭବ କରିବା), ବଚନ ପୁଣ୍ୟ (ଗୁଣୀ.ବ୍ୟକ୍ତିଙ୍କ ପ୍ରଶଂସା କରିବା), କାୟ ପୁଣ୍ୟ (ଶରୀରସେବା , ଏବଂ ନମସ୍କାର ପୁଣ୍ୟ (ଗୁରୁଜନଙ୍କୁ ନମସ୍କାର ଏବଂ ମହାପୁରୁଷ ବା ସିଦ୍ଧ ପୁରୁଷଙ୍କର ପଦାନୁସରଣ କରିବା) । ଏହି ସବୁ ଶୁଭକର୍ମ ଦ୍ୱାରା ବ୍ୟକ୍ତିଗତ, ପାରିବାରିକ, ସାମାଜିକ

ତଥା ଗାର୍ହସ୍ଥୀୟ ଜୀବନ ପୁଣ୍ୟମୟ ହୋଇଥାଏ । ଏତଦ୍‌ବ୍ୟତୀତ ଏହିପରି ପୁଣ୍ୟାଚରଣ ଦ୍ୱାରା ପ୍ରତ୍ୟେକ ବ୍ୟକ୍ତି ବୟାଳିଶ ପ୍ରକାର ଫଳପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ଆଦର୍ଶ ଓ କୈବଲ୍ୟ ପ୍ରାପ୍ତ ମହାପୁରୁଷ ହୋଇପାରିବ ବୋଲି ଜୈନମାନଙ୍କର ବିଶ୍ୱାସ । ଏହି ବୟାଳିଶ ପ୍ରକାର ପୁଣ୍ୟ ଫଳ ହେଲା—ସାତାବେଦନୀୟ, ଉଚ୍ଚ ଗୋତ୍ର, ମନୁଷ୍ୟ ଗତି, ମନୁଷ୍ୟ-ଅନୁପୂର୍ବୀ, ଦେବତା ଗତି, ଦେବତା ଅନୁପୂର୍ବୀ, ପଞ୍ଚେନ୍ଦ୍ରିୟ ପଣ୍ଡୁ, ଔଦାରିକ ଶରୀର, ବୈକ୍ରିୟ ଶରୀର, ଆହାରକ ଶରୀର. ଔଦାରିକ ଅଙ୍ଗୋପାଙ୍ଗ, ବୈକ୍ରିୟ ଅଙ୍ଗୋପାଙ୍ଗ, ଆହାରକ ଅଙ୍ଗୋପାଙ୍ଗ, ତୈଜସ ଶରୀର, କାର୍ମନ୍ ଶରୀର, ବଜ୍ର ଋଷଭ ନାରାଚ ସଂହନନ, ସମଚତୁରସ୍ର ସଂସ୍ଥାନ, ଶୁଭବର୍ଣ୍ଣ, ଗନ୍ଧ, ରସ ଓ ସ୍ପର୍ଶ, ଅଗୁରୁ ଲଘୁନାମ କର୍ମ, ଉଚ୍ଛ୍ୱାସ, ଆତପ ଓ ଉଦ୍ୟୋତ, ଶୁଭବିହାୟୋଗତି, ନିର୍ମାଣ-ନାମ କର୍ମ, ତ୍ରସ, ବାଦର, ପର୍ଯ୍ୟାପ୍ତି, ସ୍ଥିର, ପ୍ରତ୍ୟେକ, ଶୁଭ, ସୁଭଗ, ସୁସ୍ୱର, ଆଦେୟ, ଯଶୋକୀର୍ତ୍ତି, ଦେବତା ଆୟୁଷ, ମନୁଷ୍ୟ, ଓ ତିର୍ଯ୍ୟକ୍ ଓ ତୀର୍ଥଙ୍କର ନାମ କର୍ମ ।

ପାପ ହେଲା ଚତୁର୍ଥ ତତ୍ତ୍ୱ । ପାପକୁ ହିଂସା ବୃତ୍ତି, ଅସତ୍ୟ ବଚନ, ମିଥ୍ୟା ଦର୍ଶନ, ମିଥ୍ୟା ଜ୍ଞାନ ମିଥ୍ୟା ଶ୍ରଦ୍ଧା ଆଦି ଅଶୁଭ କର୍ମର ପରିଣାମ ବୋଲି ବୁଝାଯାଇଛି । ଅଶୁଭ କର୍ମକୃତ୍ ବ୍ୟକ୍ତିକୁ ସ୍ୱଳ୍ପାୟୁ, ଅଶୁଭନାମ, କୁଟଣ ଓ କୁରୂପ, ଦୁଃଖାନୁଭବ ଆଦି ପ୍ରାପ୍ତ ହୁଏ । ଜୀବ ହିଂସା, ଅସତ୍ୟ ବଚନ, ଅଦତ୍ତ ଦାନ, ଅବ୍ରହ୍ମଚର୍ଯ୍ୟ, ପରିଗ୍ରହ, କ୍ରୋଧ ମାନ, ମାୟା, ଲୋଭ ରାଗ ବା ଅନୁରକ୍ତି, ଦ୍ୱେଷ, କ୍ଳେଶ, ଅଭ୍ୟାଖ୍ୟାନ, ପୈଶୁନ୍ୟ, ନିନ୍ଦା, ରତି, ମାୟା ମୃଷା, ମିଥ୍ୟା ଦର୍ଶନ, ଓ ଶଲ୍ୟ—ଏପରି ଜୈନମାନେ ମୁଖ୍ୟତଃ ପାପକୁ ଅଠର ଭାଗରେ ବିଭକ୍ତ କରିଛନ୍ତି । ଏ ପ୍ରକାର ପାପ ଆଚରଣ ଦ୍ୱାରା ବ୍ୟକ୍ତି, ପରିବାର, ସମାଜ ଓ ରାଷ୍ଟ୍ର କଳୁଷିତ ହୁଏ ।

ପାପଜନିତ ଫଳ ବୟାଅଶୀ ପ୍ରକାର । ତାହା ଅଠର ଭାଗରେ ବିଭକ୍ତ । ତନ୍ମଧ୍ୟରୁ ପ୍ରଥମଟି ହେଲା ଜ୍ଞାନାବରଣୀୟ ଯଦ୍ୱାରା କି ମନୁଷ୍ୟର ଜ୍ଞାନ କଳୁଷିତ ହୋଇଥାଏ । ଜ୍ଞାନାବରଣୀୟ ପଞ୍ଚବିଧ—ମତି, ଶ୍ରୁତି, ଅବଧି, ମନଃ ପର୍ଯ୍ୟାୟ ଓ କେବଳ ଜ୍ଞାନାବରଣୀୟ । ଦ୍ୱିତୀୟ ବିଭାଗ ହେଲା ଅନ୍ତରାୟ । ଆତ୍ମାର ଶକ୍ତି ବା ବୀର୍ଯ୍ୟଗୁଣକୁ ପାପଗ୍ରସ୍ତ କରୁଥିବା ଏହି ଅନ୍ତରାୟ ଫଳ ପାଞ୍ଚ ପ୍ରକାରର, ଯଥା:—ଦାନାନ୍ତରାୟ, ଲାଭାନ୍ତରାୟ, ଭୋଗାନ୍ତରାୟ, ଉପଭୋଗାନ୍ତରାୟ ଓ ବୀର୍ଯ୍ୟାନ୍ତରାୟ । ତୃତୀୟ ବିଭାଗ ହେଲା ଦର୍ଶନାବରଣୀୟ । ଭୌତିକ ଜ୍ଞାନର ଅନ୍ତରାୟ ସ୍ୱରୂପ ଦର୍ଶନାବରଣୀୟ ଚକ୍ଷୁ, ଅଚକ୍ଷୁ, ଅବଧି ଓ କେବଳ ଦର୍ଶନାବରଣୀୟ ରୂପେ ଚାରି ପ୍ରକାର । ଚତୁର୍ଥ ହେଲା ସାଧନା ଓ ପ୍ରାର୍ଥନାକୁ କଳୁଷିତ କରୁଥିବା ଅନ୍ତରାୟ । ତାହା ପାଞ୍ଚ ପ୍ରକାର - ନିଦ୍ରା, ନିଦ୍ରା ନିଦ୍ରା, ପ୍ରଚଳା, ପ୍ରଚଳା ପ୍ରଚଳା ଓ ସ୍ତ୍ୟାନଗୃଦ୍ଧି । ପଞ୍ଚମ ବିଭାଗରେ ନୀଚଗୋତ୍ର, ନରକ ଗତି, ଅସାତ ବେଦନୀୟ, ନରକାନୁପୂର୍ବୀ ଓ ନରକାୟୁ ଆଦି ପାଞ୍ଚ ପ୍ରକାର ପାପ ଫଳ ଅନ୍ତର୍ଭୁକ୍ତ । ଷଷ୍ଠ ଭାଗଟି ହେଲା ମୋହନୀୟ । ତାହା ଦୁଇ ପ୍ରକାର—ଦର୍ଶନ ମୋହନୀୟ ଏବଂ ଚରିତ୍ର ମୋହନୀୟ । ଦର୍ଶନ ମୋହନୀୟ

ତ୍ରିବିଧ—ସମ୍ୟକତ୍ୱ ମୋହନୀୟ, ମିଥ୍ୟାତ୍ୱ ମୋହନୀୟ ଏବଂ ମିଶ୍ର ମୋହନୀୟ । ଚରିତ୍ର ମୋହନୀୟର ମୁଖ୍ୟ ଭେଦ ଦ୍ୱୟ ହେଲା—କଷାୟ ମୋହନୀୟ ଏବଂ ନୋକଷାୟ ମୋହନୀୟ । କ୍ରୋଧ, ମାନ, ମାୟା ଏବଂ ଲୋଭ ହେଲା ଚ୍ୟାରୋଟି କଷାୟମୋହନୀୟ ଏବଂ ସେଗୁଡ଼ିକ ପ୍ରତ୍ୟେକ ନିଜ ନିଜର ତୀବ୍ରତା ଓ ମନ୍ଦତା ଦୃଷ୍ଟିରୁ କାଳକ୍ରମେ ପୁନଃ ଅନନ୍ତାନୁବନ୍ଧୀ, ଅପ୍ରତ୍ୟାଖ୍ୟାନାବରଣ, ପ୍ରତ୍ୟାଖ୍ୟାନାବରଣ ଏବଂ ସଜ୍ୱଳନ ଭେଦରେ ଷୋହଳ ପ୍ରକାର । ହାସ୍ୟ, ରତି, ଅରତି, ଶୋକ, ଭୟ, ଜୁଗୁପ୍ସା, ପୁରୁଷ ଭେଦ (ପୁରୁଷର ସ୍ତ୍ରୀ ସହ ମୈଥୁନ କରିବାର ଇଚ୍ଛା , ସ୍ତ୍ରୀ ଭେଦ (ସ୍ତ୍ରୀର ପୁରୁଷ ସହିତ ସମ୍ଭୋଗ କରିବାର ଅଭିଳାଷ) ଓ ନଂପୁସକ ଭେଦ (ଉଭୟ ପୁରୁଷ ଓ ସ୍ତ୍ରୀଙ୍କ ପ୍ରତି କାମୁକର କାମାଭିଳାଷରେ ଉତ୍କଣ୍ଠା ପ୍ରଦର୍ଶନ) ରୂପେ ନଅ ପ୍ରକାରର ନୋକଷାୟ (କ୍ଷୁଦ୍ର କଷାୟ)ର ବର୍ଣ୍ଣନା କରାଯାଇଛି । ଏହିପରି ଭାବରେ ଚରିତ୍ର ମୋହନୀୟର ପଚିଶି ଗୋଟି ଭେଦ ରହିଛି ।

ଜୀବର ଶ୍ରେଣୀ ଅନୁଯାୟୀ ପାପ ଫଳ ତିର୍ଯକ୍ ଅନୁପୂର୍ବୀ, ତିର୍ଯକ୍ ଗତି, ଏକେନ୍ଦ୍ରିୟ, ଦ୍ୱୀଇନ୍ଦ୍ରିୟ, ତ୍ରିଇନ୍ଦ୍ରିୟ ଓ ଚତୁରିନ୍ଦ୍ରିୟ ନାମ ଭେଦରେ ଛଅ ପ୍ରକାର । ଅଶୁଭବିହାୟୋଗତି, ଉପଘାତନାମ ଅଶୁଭ ବର୍ଣ୍ଣ, ଅଶୁଭ ଗନ୍ଧ, ଅଶୁଭ ରସ ଓ ଅଶୁଭ ସ୍ପର୍ଶ ଭେଦରେ ଦୈହିକ ବା ଆକୃତିଜନିତ ଫଳ ଷଡ଼୍‌ବିଧ; ସଂଘେଣ ଫଳରେ ଋଷଭନାରଚ ସଂଘେଣ, ନାରଚ ସଂଘେଣ, ଅର୍ଦ୍ଧନାରଚ ସଂଘେଣ, କୀଲକୋସଂଘେଣ ଓ ସେବାର୍ତ୍ତି ସଂଘେଣ ରୂପେ ପଞ୍ଚବିଧ; ନ୍ୟଗ୍ରୋଧ ପରିମଣ୍ଡଳ ସଂସ୍ଥାନ, ସାଦି ସଂସ୍ଥାନ, କୁବଜକ ସଂସ୍ଥାନ, ବାମନ ସଂସ୍ଥାନ, ହୁଣ୍ଡ ସଂସ୍ଥାନ ରୂପେ ସଂସ୍ଥାନ ଜନିତ ଦୋଷ ପାଞ୍ଚ ପ୍ରକାର ଏବଂ ସ୍ଥାବର ଦଶକ ମଧ୍ୟରେ ସ୍ଥାବର, ସୂକ୍ଷ୍ମ, ଅପର୍ଯ୍ୟାପ୍ତି, ସାଧାରଣ ଅସ୍ଥିର, ଅଶୁଭ ଦୁର୍ଭଗ, ଦୁଃସ୍ୱର, ଅନାଦେୟ,ଅଯଶ ଓ ମିଥ୍ୟାତ୍ୱ ମୋହନୀୟ ରୂପେ ଏଗାର ପ୍ରକାର । ଏହିପରି ଏଗାର ପ୍ରକାରର ବିରାଶି ପ୍ରକାର ପାପ ଫଳରେ ଜୈନମାନଙ୍କର ବିଶ୍ୱାସ ରହିଛି ।

ପଞ୍ଚମ ତତ୍ତ୍ୱ ହେଲା ଆସ୍ରବ । ଆସ୍ରବ ହେତୁ ଆତ୍ମା ପାପଗ୍ରସ୍ତ ହୋଇଥାଏ । ପୁଦଗଳର ସମ୍ପର୍କରେ ଆସି ଜୀବ ବନ୍ଧନରେ ପତିତ ହୁଏ । ଏହାଦ୍ୱାରା ଜୀବ ଅପୂର୍ଣ୍ଣ ଓ ସସୀମ ହୋଇଯାଏ, ଦୁଃଖ ଭୋଗ କରେ । ଜୀବର ବନ୍ଧନର କାରଣ ହେଉଛି ଅବିଦ୍ୟା । ଏହା ଜୀବକୁ ଆସକ୍ତ ଜଡ଼ିତ କରିଦିଏ । ତୈଳାକ୍ତ ଦ୍ରବ୍ୟ (କଷାୟ) ମଳ ଧରି ରଖିଲାପରି, ଅସକ୍ତ ଜୀବ ପାଇଁ କଷାୟର କାର୍ଯ୍ୟ କରେ ଏବଂ ଏହା ପୁଦ୍‌ଗଳମାନଙ୍କୁ ଆକର୍ଷଣ କରି ଧରି ରଖେ । ଏହିପରି ଭାବରେ ଜୀବ ଉପରେ ଯେଉଁ ପୁଦ୍‌ଗଳ ସଞ୍ଚିତ ହୁଏ ତାହା ଜୈନଧର୍ମରେ ଆସ୍ରବ ନାମରେ ଅଭିହିତ । ଯେଉଁ ପର୍ଯ୍ୟନ୍ତ ଜୀବ ଠାରେ ଆସ୍ରବ ଥାଏ ସେ ପର୍ଯ୍ୟନ୍ତ ଜୀବ ବାରମ୍ବାର ଜନ୍ମଲାଭ କରୁଥାଏ । ଆସ୍ରବ ବୟାଳିଶି ପ୍ରକାରର । ତନ୍ମଧ୍ୟରୁ ମୁଖ୍ୟ ସତରଟି ହେଲା—କର୍ଣ୍ଣ, ଚକ୍ଷୁ, ନାସା, ଜିହ୍ୱା ଓ ସ୍ପର୍ଶ (ପଞ୍ଚଜ୍ଞାନେନ୍ଦ୍ରିୟ, କ୍ରୋଧ, ମାନ,

ମାୟା, ଲୋଭ (ଚତୁଷ୍କଷାୟ ହିଂସା, ଅସତ୍ୟ,ଚୌର୍ଯ୍ୟ,ଲୋଭ ଓ ବ୍ୟଭିଚାର ପଞ୍ଚ ଅବ୍ରତ) ଏବଂ କାୟ, ମନ ଓ ବାକ୍ୟ (ତ୍ରିଯୋଗ) । ଏହି ମୁଖ୍ୟ ସତରଟି ଆଶ୍ରବ ଦ୍ୱାରା କର୍ମ ଜୀବରେ ପ୍ରବେଶ କରେ । ତଦ୍‌ବ୍ୟତୀତ ଅନ୍ୟ ପଚିଶ ପ୍ରକାରର ଆଶ୍ରବ ହେଲା—କାର୍ଯ୍ୟିକୀ, ଅଧିକରଣିକୀ, ପ୍ରଦୋଷିକୀ, ପରିତାପନକୀ, ପ୍ରାଣାତିପାତିକୀ, ଆରମ୍ଭିକୀ, ପାରିଗ୍ରହିକୀ, ମାୟା ପ୍ରତ୍ୟୟିକୀ, ମିଥ୍ୟା ଦର୍ଶନ ପ୍ରତ୍ୟୟିକୀ, ଅପ୍ରତ୍ୟାଖ୍ୟାନକୀ, ଦୃଷ୍ଟିକୀ, ସ୍ପୃଷ୍ଟିକୀ, ପ୍ରାତିତ୍ୟକୀ, ସମନ୍ତୋପନିପାତିକୀ, ନୈଶସ୍ତ୍ରିକୀ, ସ୍ୱହସ୍ତିକୀ, ଆଜ୍ଞାପନକୀ, ବୈଦାରଣିକୀ, ଅନାଭୋଗିକୀ, ପ୍ରାୟୋଗିକୀ, ଅନବକାଙ୍କ୍ଷାପ୍ରତ୍ୟୟିକୀ, ସାମୁଦାୟିକୀ, ପ୍ରେମିକୀ, ଦ୍ୱେଷିକୀ ଓ ଇର୍ଯ୍ୟାପଥିକୀ ।

ଆତ୍ମା ଶରୀର ମଧ୍ୟରେ ବ୍ୟାପ୍ତ ଥିବାରୁ ପୌଦ୍‌ଗଳିକ କର୍ମଯୁକ୍ତ ଅଟେ । ଜୀବର ଈର୍ଷା, କ୍ରୋଧ, ମାନ, ଲୋଭ, ଅହିଂଛା ଆଦି ଅଶୁଦ୍ଧ ମନୋଭାବ ଯୋଗୁ କର୍ମ-ପରମାଣୁ ଗୁଡ଼ିକର ପ୍ରଭାବରୁ ଆତ୍ମା ମୁକ୍ତ ହୋଇପାରେ ନାହିଁ । ଫଳତଃ ଆତ୍ମା ପ୍ରତି ଆକର୍ଷିତ ହୋଇ କର୍ମ ପରମାଣୁଗୁଡ଼ିକ ପ୍ରବାହିତ ହୁଅନ୍ତି । ଏହା ଭାବାସ୍ରବ ନାମରେ କଥିତ । ପୁଦ୍‌ଗଳରେ କର୍ମତ୍ୱର ଉପସ୍ଥିତିକୁ ଦ୍ରବ୍ୟାସ୍ରବ କୁହାଯାଏ । ଭାବାସ୍ରବ ଜୀବଗତ ପର୍ଯ୍ୟାୟ ଏବଂ ଦ୍ରବ୍ୟାସ୍ରବ ପୁଦ୍‌ଗଳ ଗତ ।

ନବତତ୍ତ୍ୱବାଦରେ କର୍ମଜନିତ ସବର ହେଲା ଷଷ୍ଠ ତତ୍ତ୍ୱ । ସବର ଦ୍ୱାରା ଜୀବ ଜନ୍ମ-ମୃତ୍ୟୁ ଚକ୍ରରୁ ଉଦ୍ଧାର ପାଇଥାଏ । ଆସକ୍ତ କର୍ମକୁ ପରିହାର ନକଲେ ଆସ୍ରବ-ସଂଗ୍ରହର ନିରୋଧ କରିହେବ ନାହିଁ । ଆହୁ ଅଧିକ ଆସ୍ରବ ଜମି ହଆସିବାର ପ୍ରକ୍ରିୟାକୁ ସବର କୁହାଯାଏ । ଜୀବକୁ ଆସକ୍ତିରୁ ମୁକ୍ତ ଅଥବା ଦୂଷିତ ହେବାରୁ ରକ୍ଷା କରିବା ପାଇଁ କର୍ମ ପରମାଣୁର ସ୍ରୋତକୁ ବନ୍ଦ କରିବାର ପ୍ରକ୍ରିୟାର ନାମ ସବର । ଅର୍ଥାତ୍ କର୍ମାସ୍ରବର ପଥର ନିରୋଧକୁ ସବର କୁହାଯାଏ ।

ସବର ମୁଖ୍ୟତଃ ସମିତି, ଗୁପ୍ତି, ପରୀଷହଜୟ, ଦଶଯତି ଧର୍ମ, ଚରିତ୍ର ଓ ଉତ୍ତମ ଭାବନା (ଅନୁପେକ୍ଷା) ରୂପେ ଛଅଟି କାରଣ ଯୋଗୁଁ ହୋଇଥାଏ । ସତ୍ ପ୍ରବୃତ୍ତିକୁ ସମିତି କୁହାଯାଏ । ଇର୍ଯ୍ୟା, ଭାଷା, ଏଷଣା, ଆଦାନ ନିକ୍ଷେପଣା ଓ ପରିଥାପଣିକା ନାମରେ ସମିତି ପଞ୍ଚବିଧ । ମନ, ବଚନ ଓ କାୟର ବିଭିନ୍ନ ପ୍ରବୃତ୍ତିର ନିୟନ୍ତ୍ରଣକୁ ଗୁପ୍ତି କୁହାଯାଏ । ଗୁପ୍ତି ତିନି ପ୍ରକାର—ମନୋଗୁପ୍ତି (ଆତ୍ମରମତା), ବଚନଗୁପ୍ତି (ମୌନାବଲମ୍ବୀ) ଓ କାୟଗୁପ୍ତି (ଚେଷ୍ଟାନିବୃତ୍ତି) । କ୍ଷୁଧା, ତୃଷ୍ଣା, ଶୀତ, ଉଷ୍ଣ, ଦଂଶ, ବସ୍ତ୍ର, ଅରତି, ସ୍ତ୍ରୀ, ଚର୍ଯ୍ୟା, ନୈଷିଧିକୀ, ଶଯ୍ୟା, ଅକ୍ରୋଶ, ବଧ, ଯାଚଞ୍ଚା, ଅଲାଭ, ରୋଗ, ତୃଣସ୍ପର୍ଶ, ମେଲା ସତ୍କାର, ପ୍ରଜ୍ଞାନ, ଅଜ୍ଞାନ ଓ ସମ୍ୟକତ୍ୱ ଭେଦରେ ପରୀଷହଜୟ ଦ୍ୱାବିଂଶ ପ୍ରକାର । କ୍ଷୁଧା, ତୃଷ୍ଣା, ଶୀତ, ଉଷ୍ଣ, କ୍ଷତ, ଅକ୍ରୋଶ ଆଦି ବିଭିନ୍ନ ପ୍ରକାର ପରିସ୍ଥିତି ପ୍ରତି ଅବିଚଳିତ-ଭାବେ ଧୈର୍ଯ୍ୟର ସହିତ ସହନଶୀଳ ହେବା ହେଉଛି ପରୀଷହଜୟ । ସର୍ବଲୋକହିତ ଅଥବା

ସମାଜହିତକାରୀ ତଥା ଆତ୍ମ ସ୍ୱରୂପାଭିମୁଖୀ ପ୍ରବୃତ୍ତିକୁ ଧର୍ମ ବୁଝାଯାଏ । ଦଶଗତ ଧର୍ମ ହେଲା—କ୍ଷମା, ମାର୍ଦ୍ଦବ, ଆର୍ଜବ, ନିର୍ଲୋଭତା, ତପ,ସଂଯମ, ସତ୍ୟ, ଶୌଚ, ଅକିଞ୍ଚନତ୍ୱ ଓ ବ୍ରହ୍ମଚର୍ଯ୍ୟ । ଚରିତ୍ର ପଞ୍ଚବିଧ, ଯଥା :—ସାମାୟିକ, ଛେଦୋପସ୍ଥାପନୀୟ, ପରିହାର ବିଶୁଦ୍ଧି, ସୂକ୍ଷ୍ମ ସଂପରାୟ ଓ ଯଥାଖ୍ୟାତ । ସମ୍ପୂର୍ଣ୍ଣ ପଞ୍ଚମହାବ୍ରତ, ଯଥା :— ଅହିଂସା, ଅସ୍ତେୟ, ସତ୍ୟ, ଅପରିଗ୍ରହ, ବ୍ରହ୍ମଚର୍ଯ୍ୟ ପାଳନକୁ ସମ୍ୟକ୍ ଚରିତ୍ର ବୁଝାଯାଏ । ସତ୍ ଆତ୍ମଚିନ୍ତନ ଏବଂ ଉତ୍ତମ ଭାବନା ହେଲା ଅନୁପ୍ରେକ୍ଷା । ଦ୍ୱାଦଶ ପ୍ରକାର ଅନୁପେକ୍ଷା ହେଉଛି- ଅନିତ୍ୟ, ଅଶରଣ, ସଂସାର, ଏକତ୍ୱ, ଅନ୍ୟତ୍ୱ, ଅଶୌଚ ଆସ୍ରବ, ସଂବର,ନିର୍ଜରା, ଲୋକ, ବୋଧିଦୁର୍ଲଭ ଓ ଧର୍ମ ।

ବନ୍ଧ ହେଉଛି ସପ୍ତମ ତତ୍ତ୍ୱ । ଜୈନମତାନୁସାରେ ଜୀବ ବା ଆତ୍ମା ଓ କର୍ମର ପାରସ୍ପରିକ ସହଯୋଗ ହେଉଛି ବନ୍ଧ । ଅର୍ଥାତ୍ ପୁଦ୍‌ଗଳ ପରମାଣୁଗୁଡ଼ିକର କର୍ମ ରୂପେ ଆତ୍ମା ସହିତ ବନ୍ଧନକୁ ଜୈନମାନେ ବନ୍ଧ କହିଥା'ନ୍ତି । ପ୍ରକୃତି, ସ୍ଥିତି,ଅନୁଭାଗ ଓ ପ୍ରଦେଶ ଭେଦରେ ବନ୍ଧ ଚାରି ପ୍ରକାର । ଜୀବ ସ୍ଖଳିତ ହେଲେ ଦ୍ରବ୍ୟ କର୍ମ ପରମାଣୁରେ ଅନ୍ୟରୂପ ଧାରଣ କରିଥାଏ । ଏହି ପ୍ରକ୍ରିୟାକୁ ପ୍ରକୃତି ବନ୍ଧ ବୁଝାଯାଏ । ଆତ୍ମାର କର୍ମ ପରମାଣୁଗୁଡ଼ିକ ପ୍ରତି ଆକର୍ଷଣ ସୃଷ୍ଟି ହେଲାପରେ ଆତ୍ମାର ବିଭିନ୍ନ ପ୍ରଦେଶରେ କର୍ମ ପରମାଣୁ ଗୁଡ଼ିକ ଅବସ୍ଥାନ କରନ୍ତି । ଏହା ହେଉଛି ପ୍ରଦେଶ ବନ୍ଧ । ଯେଉଁଥିରେ ରାଗ, ଦ୍ୱେଷ, ଈର୍ଷା, ଲୋଭ, ଅଜ୍ଞତା ଆଦି କଷାୟଗୁଡ଼ିକର ପ୍ରଖରତା ଅଥବା କ୍ଷୀଣତା ଅନୁସାରେ ସେହି କର୍ମ ପୁଦ୍‌ଗଳ ଗୁଡ଼ିକରୁ ସ୍ଥିତି ଏବଂ ଫଳଦାୟକ ଶକ୍ତି ନିର୍ଭର କରେ,ତାହା ଯଥାକ୍ରମେ 'ସ୍ଥିତି ବନ୍ଧ' ଏବଂ 'ଅନୁଭାଗ ବନ୍ଧ' ନାମରେ ଅଭିହିତ ।

ଜୈନ ଦର୍ଶନରେ ଅଷ୍ଟମ ତତ୍ତ୍ୱ ହେଲା ନିର୍ଜରା । ଅତୀତରେ ସଞ୍ଚିତ ଆସ୍ରବର ଧୌତ ହେବାର ପ୍ରକ୍ରିୟାକୁ ନିର୍ଜରା ବୁଝାଯାଏ । ଅର୍ଥାତ ଜୀବରେ ପୂର୍ବସଞ୍ଚିତ ପୁଦ୍‌ଗଳର ବିନାଶ ହିଁ ନିର୍ଜରା । ତାହା ଦୁଇ ପ୍ରକାର—ବାହ୍ୟ ନିର୍ଜରା ଏବଂ ଆଭ୍ୟନ୍ତର ନିର୍ଜରା । ବାହ୍ୟ ନିର୍ଜରା ଷଡ଼୍‌ବିଧ, ଯଥା :—ଅନଶନ (ଇତ୍ୱର, ଯାବତଥିତ), ଉଣୋଦରୀ, ବୃତ୍ତି- ସଂକ୍ଷେପ (ଦ୍ରବ୍ୟ, କ୍ଷେତ୍ର, କାଳ, ଭାବ), ରସତ୍ୟାଗ, କାୟକ୍ଳେଶ ସଂଲୀନତା (ଇନ୍ଦ୍ରିୟ, କଷାୟ) । ଆଭ୍ୟନ୍ତର ନିର୍ଜରର ମଧ୍ୟ ଛଅ ପ୍ରକାର, ଯଥା :—ପ୍ରାୟଶ୍ଚିତ୍ତ, ବିନୟ (ଜ୍ଞାନ, ଦର୍ଶନ, ଚରିତ୍ର, ମନ, ବଚନ, କାୟ, କଲ୍ପ), ବୈୟାବୃତ୍ୟ (ଗୁରୁସେବା) ସ୍ୱାଧ୍ୟାୟ, ଧ୍ୟାନ (ଆର୍ତ୍ତି, ରୌଦ୍ର, ଧର୍ମ, ଶୁକ୍ଳ) ଓ ଉତ୍ସର୍ଗ (ଦେହତ୍ୟାଗ) ।

ନବ ନୈତିକ ତତ୍ତ୍ୱବାଦର ମୋକ୍ଷ ହେଲା ନବମ ତଥା ଶେଷ ତତ୍ତ୍ୱ । ଜୀବର ଅଜୀବ ଠାରୁ ମୁକ୍ତି ହେଉଛି ମୋକ୍ଷ । ଆତ୍ମା ଯେତେବେଳେ କର୍ମ ଓ ପୁନର୍ଜନ୍ମ ସମ୍ଭାବନାରୁ ମୁକ୍ତ ହୁଏ, ସେତେବେଳେ ମୋକ୍ଷ ଲାଭ କରେ । ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର ହିଁ ମୋକ୍ଷର ମାର୍ଗ ଅଟେ ।—ସମ୍ୟଗ୍ ଦର୍ଶନ ଜ୍ଞାନ ଚରିତ୍ରାଣି ମୋକ୍ଷ

ମାର୍ଗଃ (୧୫) । ତାହା ଜୈନଧର୍ମରେ ତ୍ରିରତ୍ନ ନାମରେ ଅଭିହିତ । ବ୍ୟକ୍ତି ମୋକ୍ଷଲାଭ କରିବାପରେ ସିଦ୍ଧରୂପେ ଅଭିହିତ ହୁଏ । ସିଦ୍ଧଠାରେ ଗନ୍ଧ, ରସ, କ୍ଷୁଧା, ଦୁଃଖ, କଷ୍ଟ, ସୁଖ, ଜନ୍ମ, ଜରା, ମୃତ୍ୟୁ, ଦେହ ଓ କର୍ମ ଅନୁଭୂତ ନିର୍ବିଶେଷରେ ଅନନ୍ତ ସୁଖ ଓ ଶାନ୍ତି ପରିଦୃଷ୍ଟ ହୁଏ । ଜୈନ ମତରେ ମୋକ୍ଷ ପନ୍ଦର ଭାଗରେ ବିଭକ୍ତ—ଜିନ, ଅଜିନ, ତୀର୍ଥ, ଅତୀର୍ଥ, ଗୃହଲିଙ୍ଗ, ଅନ୍ୟଲିଙ୍ଗ, ସ୍ୱଲିଙ୍ଗ, ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ, ନପୁଂସକ, ବୁଦ୍ଧବୋଧି, ପ୍ରତ୍ୟେକ ବୁଦ୍ଧ, ସ୍ୱୟଂବୁଦ୍ଧ, ଏକ ସିଦ୍ଧ ଓ ଅନେକ ସିଦ୍ଧ ।

ଷଡ଼୍‌ବିଧ ଦ୍ରବ୍ୟ ଓ ନବତତ୍ତ୍ୱର ଆଲୋଚନାରୁ ବିଦିତ ହୁଏ ଯେ, ଜୀବ ଓ ଅଜୀବ—ଏ ଦୁଇଟି ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଜୀବ ଓ ଅଜୀବର ମିଶ୍ରଣ ହିଁ ସଂସାର । ଜୀବ ଏବଂ ଅଜୀବର ସମ୍ମିଶ୍ରଣରେ କର୍ମ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଜୀବନ ଚକ୍ରର ମଧ୍ୟ ସଂଚାର ହୁଏ । ଜୀବ ଓ ଅଜୀବର ସମଷ୍ଟିକୁ ଜୈନମାନେ ଅସ୍ତିକାୟ ଅର୍ଥାତ ଜଗତ କହନ୍ତି । ଜୀବ ସର୍ବବ୍ୟାପୀ । ତାହାର ଅସ୍ତିତ୍ୱ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳରେ, ଏହିଭଳି ତ୍ରିଭୁବନରେ ବିଦ୍ୟମାନ । ଜୈନମାନଙ୍କ ସର୍ବଭୂତେ ଦୟାର ଏହା ହିଁ ତାତ୍ପର୍ଯ୍ୟ । (୧୬) । ଜୀବ ଅଜୀବ ଠାରୁ ଅର୍ଥାତ୍ ଭାବଯୁକ୍ତ କର୍ମ (ରାଗ, ଦ୍ୱେଷ, ମୋହ) ଏବଂ ଦ୍ରବ୍ୟ କର୍ମର ବନ୍ଧନରୁ ସମ୍ପୂର୍ଣ୍ଣ ମୁକ୍ତ ହେଲେ ସିଦ୍ଧି ଲାଭ କରେ । ସଂସାର ଦୁଇ ଭାଗରେ ବିଭକ୍ତ—ଭବ ସଂସାର ଏବଂ ଦ୍ରବ୍ୟ ସଂସାର । ଭବ ଜୀବ ଏବଂ ଭବ ଅଜୀବ ଦ୍ୱାରା ଭବ ସଂସାର ଏବଂ ଦ୍ରବ୍ୟ ଜୀବ ଆତ୍ମ ପ୍ରଦେଶ ଏବଂ ଦ୍ରବ୍ୟ ଅଜୀବ (କର୍ମ ପରମାଣୁ) କୁ ନେଇ ଦ୍ରବ୍ୟ ସଂସାର ସୃଷ୍ଟି । ଭବସଂସାର ହିଁ ଦୁଃଖ ଦୁର୍ଦ୍ଦଶାର ମୂଳ କାରଣ । ଭବ ସଂସାର ଯୋଗୁଁ ଦ୍ରବ୍ୟ ସଂସାର ସ୍ଥିତି ଲାଭ କରିଥାଏ । କର୍ମ ବନ୍ଧନରୁ ଭବ ସଂସାର ମୁକ୍ତ ହେଲେ ଦ୍ରବ୍ୟ ସଂସାର ମୁକ୍ତି ଲାଭ କରେ ।

ଜୀବ ହେଲା ଏକ ଏବଂ ଅଜୀବ ହେଲା ପଞ୍ଚବିଧ ଯଥା —ପୁଦ୍‌ଗଲ (Matter), ଧର୍ମ (Cause of motion—ସ୍ପନ୍ଦନ), ଅଧର୍ମ (Cause of rest—ନିଃସ୍ପନ୍ଦନ) ଆକାଶ (Spac or sky ଏବଂ କାଳ (Cause of changing) ଜୀବ, ପୁଦ୍‌ଗଲ, ଧର୍ମ, ଅଧର୍ମ ଆକାଶ—ଏହି ପାଞ୍ଚଟି ପଦାର୍ଥ ସଂସାରରେ ରହିଛି ଏବଂ ତାହାର ପରିମାଣ ବା ଅସ୍ତିକାୟ ବିଶାଳ ଓ ବିସ୍ତୃତ । ତେଣୁ ତାହା ଜୈନ ଦର୍ଶନରେ ପଞ୍ଚାସ୍ତିକାୟ ନାମରେ କଥିତ । ଅସ୍ତିକାୟ ଶବ୍ଦ ଦୁଇଟି ଭାଗରେ ବିଭକ୍ତ ଯଥା —ଅସ୍ତି ଏବଂ କାୟ । ଅସ୍ତି ଅର୍ଥ ଅଛି, କାୟ ଅର୍ଥ ଅନନ୍ତ । ଅସ୍ତିକାୟ ଗୁଡ଼ିକର ବିଶେଷତ୍ୱ ହେଲା, ଅସ୍ତିତ୍ୱ ସହିତ ସେମାନଙ୍କର ବିସ୍ତାର ଜଡ଼ିତ । ଏହି ପଞ୍ଚାସ୍ତିକାୟ ମଧ୍ୟରୁ ଜୀବ ବା ଆତ୍ମା ହେଲା ଚେତନ (Conscious) । ଅନ୍ୟ ଚାରୋଟି ହେଲେ ଅଚେତନ (Unconscious) । ଆତ୍ମା ଏବଂ ପୁଦ୍‌ଗଲ ହେଲା ସକ୍ରିୟ ଦ୍ରବ୍ୟ ଏବଂ ଧର୍ମ, ଅଧର୍ମ, ଆକାଶ ଓ କାଳ ହେଲା ନିଷ୍କ୍ରିୟ ଦ୍ରବ୍ୟ । ଯେଉଁ ସବୁ ଅଣୁ ଏକ ସମୟରେ ଏକତ୍ର ପୂର୍ଣ୍ଣତାଲାଭ କରି ପୁଞ୍ଜୀକୃତ ହୁଅନ୍ତି ଓ ପରିଶେଷରେ ବିଗଳିତ ହୁଅନ୍ତି ବା ପୂର୍ବସ୍ୱଭାବ ତ୍ୟାଗ କରନ୍ତି ତାହାକୁ ପୁଦ୍‌ଗଲ କୁହାଯାଏ । ସ୍ପର୍ଶ, ସ୍ୱାଦ, ଗନ୍ଧ ଓ ବର୍ଣ୍ଣ ପୁଦ୍‌ଗଲର ଗୁଣ । ଅନନ୍ତ ଆକାଶ ପୁଦ୍‌ଗଲମାନଙ୍କୁ ଧାରଣ

କରିଥାଏ । ଧର୍ମ ଓ ଅଧର୍ମ ଯଥାକ୍ରମେ ଚଳନ ଓ ଅଚଳନର ଗୁଣ । ଧର୍ମ ପୁଦଗଳମାନଙ୍କୁ ଗତିଶୀଳ କରିଥାଏ ଏବଂ ସେମାନଙ୍କର ପାରସ୍ପରିକ ମିଶ୍ରଣ ଦ୍ୱାରା ବସ୍ତୁ ପ୍ରସ୍ତୁତ ହୁଏ । ଅଧର୍ମ ପୁଦ୍‌ଗଳ ମାନଙ୍କୁ ସ୍ଥିତିବାନ୍ କରିଥାଏ ।

ଜୀବ ପୁଦ୍‌ଗଳର ସମ୍ପର୍କରେ ଆସି ବନ୍ଧନ ମଧ୍ୟରେ ଆବଦ୍ଧ ହେବା ଦ୍ୱାରା ଅପୂର୍ଣ୍ଣ ଓ ସସୀମ ହୋଇଯାଏ । ଜୀବର ବନ୍ଧନର କାରଣ ହେଲା ଅବିଦ୍ୟା । ଅବିଦ୍ୟା ଦ୍ୱାରା ଜୀବ ଆସକ୍ତ ଜଡ଼ିତ ହୋଇଯାଏ । ଆସକ୍ତ ପୁଦ୍‌ଗଳମାନଙ୍କୁ ତୈଳାକ୍ତ ଦ୍ରବ୍ୟ (କଷାୟ) ମଳ ଧରି ରଖିଲା ପରି, ଆକର୍ଷଣ କରି ଜାବୁଡ଼ି ରଖେ । ଏହି ପ୍ରଣାଳୀରେ ଜୀବ ଉପରେ ପୁଦଗଳ ଯେଉଁପରି ସଞ୍ଚିତ ହୁଏ ତାହା ଜୈନ ଦର୍ଶନରେ ଆସ୍ରବ ନାମରେ କଥିତ । ଜୀବଠାରେ ଆସ୍ରବ ରହିବା ପର୍ଯ୍ୟନ୍ତ ଜୀବର ପୁନର୍ଜନ୍ମ ହେଉଥାଏ । ଅତଏବ ଆସ୍ରବ ବିଲୀନ ହେଲେହିଁ ଜୀବ ପୁନର୍ଜନ୍ମରୁ ମୁକ୍ତିଲାଭ କରେ । ଆସକ୍ତ କର୍ମ କରିବା ଦ୍ୱାରା କର୍ମ ସଂସ୍କାର ରହେ । କର୍ମ ସଂସ୍କାର ରହିଲେ ବନ୍ଧନ ରହେ । ବନ୍ଧନ ରହିଲେ ଜୀବ ଜନ୍ମଲାଭ କରେ । ଏବଂ ଜନ୍ମ-ମୃତ୍ୟୁର ଚକ୍ରରେ ଘୂର୍ଣ୍ଣାୟମାନ ହୁଏ । ନିର୍ଜର ଓ ସମ୍ବର ଦ୍ୱାରା ଜୀବ ଜନ୍ମ-ମୃତ୍ୟୁ ଚକ୍ରରୁ ତ୍ରାଣ ପାଇଥାଏ । ଅତୀତରେ ସଞ୍ଚିତ ଆସ୍ରବକୁ ଧୌତ କରିବାର ପ୍ରକ୍ରିୟାକୁ ନିର୍ଜର କୁହାଯାଏ । ଆସ୍ରବକୁ ଆଉ ଅଧିକ ଜମି ରହିବାକୁ ପ୍ରଶ୍ରୟ ନଦେବାର ପ୍ରକ୍ରିୟା ହେଲା ସମ୍ବର । ଆସକ୍ତ କର୍ମକୁ ପରିହାର କଲେ ହିଁ ଆସ୍ରବ ସଂଗ୍ରହକୁ ନିରୋଧ କରାଯାଇପାରିବ ।

**ତ୍ରିରତ୍ନ :** ବୌଦ୍ଧ ଧର୍ମାବଲମ୍ବୀମାନେ ବୁଦ୍ଧ, ଧର୍ମ ଓ ସଂଘ -- ଏହି ତ୍ରିରତ୍ନରେ ବିଶ୍ୱାସ କରନ୍ତି । ଜୈନମାନଙ୍କର ମଧ୍ୟ ତ୍ରିରତ୍ନରେ ବିଶ୍ୱାସ ରହିଛି । ଏହି ତ୍ରିରତ୍ନ ଜୈନଧର୍ମର ସବୁ ତତ୍ତ୍ୱର ସମାହାର । ତ୍ରିରତ୍ନ ହେଲା —ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଏବଂ ସମ୍ୟକ୍ ଚରିତ (Three jewels of jainism) । ତାହା ଯଥାକ୍ରମେ ଭକ୍ତିମାର୍ଗ, ଜ୍ଞାନ ମାର୍ଗ ଓ କର୍ମ ମାର୍ଗ ସହ ସମାନ । ଜିନମାନଙ୍କ ଦ୍ୱାରା ଏବଂ ଜୈନସିଦ୍ଧ ପୁରୁଷମାନଙ୍କ ଦ୍ୱାରା ପ୍ରଦର୍ଶିତ ଆଧ୍ୟାତ୍ମିକ ନୀତିରେ ଶ୍ରଦ୍ଧା ଓ ବିଶ୍ୱାସ ଜାତ ହେବାର ପ୍ରକ୍ରିୟାକୁ ସମ୍ୟକ ଦର୍ଶନ କୁହାଯାଏ । ଏହା ଲାଭ କରିବାକୁ ହେଲେ ଆଠଟି ବିଷୟର ଆବଶ୍ୟକତା ରହିଛି— (୧) ନିଃଶଙ୍କିତା (ଶଙ୍କା ପ୍ରକାଶ ନକରିବା), (୨) ନିଃକାଂକ୍ଷିତା (ସାଂସାରିକ ଭୋଗ ପ୍ରତି ଆକାଂକ୍ଷା ନରଖିବା), (୩) ନିର୍ବିଚିକିତ୍ସା (ଆଧ୍ୟାତ୍ମିକ-ମାର୍ଗ ଲାଭ ପାଇଁ ଶଙ୍କାରହିତ ହେବା),(୪) ଅମୂଢ଼ ଦୃଷ୍ଟି (ଆଦର୍ଶ ସମ୍ପର୍କରେ ପ୍ରାଞ୍ଜଳ ବିଶ୍ୱାସ ରଖିବା),(୫) ଉପ ବୃହନ (ଆଧ୍ୟାତ୍ମିକ ଗୁଣକୁ ବୃଦ୍ଧି କରିବା), (୬) ସ୍ଥିତି କରଣ (ସତ୍ୟରୁ ସ୍ଖଳିତ ହୋଇଥିଲେ ସତ୍ୟକୁ ପୁନଃ ପ୍ରତିଷ୍ଠିତ କରିବା), (୭) ବାତ୍ସଲ୍ୟ (ସନ୍ମାର୍ଗୀଙ୍କ ପ୍ରତି ସ୍ନେହ ପ୍ରଦର୍ଶନ), ଏବଂ (୮) ପ୍ରଭାବନା (ସତ୍ୟର ପ୍ରାଧାନ୍ୟକୁ ବିସ୍ତାର କରିବା) ।

ଜୀବ ଓ ଅଜୀବ ବିଷୟରେ ସଠିକ୍ ଜ୍ଞାନ ଲାଭ କରିବା ଏବଂ ଉଭୟ ମଧ୍ୟରେ ଥିବା ପ୍ରଭେଦକୁ ଉପଲବ୍‌ଧି କରିବାକୁ ସମ୍ୟକ୍ ଜ୍ଞାନ କୁହାଯାଏ । ଅଜ୍ଞାନତା ଆସକ୍ତ କର୍ମର କାରଣ । ଆସକ୍ତ କର୍ମ ବନ୍ଧନର କାରଣ । ସମ୍ୟକ୍ ଜ୍ଞାନ ଲାଭ ଦ୍ୱାରା ଅବିଦ୍ୟା ଦୂରହୁଏ ।

ଅବିଦ୍ୟା ଜୀବର ବନ୍ଧନର କାରଣ । ଏହା ଜୀବକୁ ଆସକ୍ତ ଜଡ଼ିତ କରିଥାଏ । ତେଣୁ ଅବିଦ୍ୟା ଦୂର ହେଲେ ବନ୍ଧନ ଦୂର ହେବ । ବନ୍ଧନ ଦୂର ହେଲେ ମୋକ୍ଷ ମିଳେ । ପଞ୍ଚମହାବ୍ରତ ପାଳନ ତଥା ନୈତିକ ଆଚରଣ [ଅହିଂସା, ପବିତ୍ରତା ବିଶୁଦ୍ଧତା,ବୈରାଗ୍ୟ,କରୁଣା, ପ୍ରେମ, ଭ୍ରାତୃଭାବ ପ୍ରଦର୍ଶନ] ଦ୍ୱାରା ମନୁଷ୍ୟ ସମ୍ୟକ୍ ଚରିତର ଅଧିକାରୀ ହୁଏ । ( ୭ ) ।

ଜୀବର ଅଜ୍ଞାନତାରୁ ମୁକ୍ତ ହେଉଛି ମୋକ୍ଷ । ଜୈନମାନେ ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ ଏହି ତିନିମାର୍ଗକୁ ମୋକ୍ଷ ଅଥବା ନିର୍ବାଣ ନିମନ୍ତେ ଅବଲମ୍ବନ କରିବା ଶ୍ରେୟସ୍କର ବୋଲି ମତବ୍ୟକ୍ତ କରିଛନ୍ତି । ଏହି ତ୍ରିରତ୍ନରୁ ଯେ କୌଣସି ଗୋଟିକର ଅଭାବରେ ମୋକ୍ଷପ୍ରାପ୍ତି ସମ୍ଭବପର ନୁହେଁ ।

"ଅତଃ ସମ୍ୟଗ୍ ଦର୍ଶନଂ ସମ୍ୟଗ୍ ଜ୍ଞାନଂ ସମ୍ୟକ୍ ଚରିତ ମିତ୍ୟେତତ୍ ତ୍ରିତୟ
ସମୁଦିତଂ ମୋକ୍ଷ୍ୟସ୍ୟ ସାକ୍ଷାନ୍ମାର୍ଗୋ ବେଦିତବ୍ୟଃ" । ( ୧୮ ) ।

ଆତ୍ମା କର୍ମ ଦ୍ୱାରା ଆବୃତ ହୋଇ ନିଜର ଆତ୍ମ ସ୍ୱଭାବ ଅନୁଭବ କରିପାରେ ନାହିଁ । ସକଳ ପ୍ରକାର କର୍ମ ବନ୍ଧନରୁ ମୁକ୍ତ ହେଲେ, ଆତ୍ମା ନିଜର ଅନନ୍ତ ଦୃଷ୍ଟି, ଅନନ୍ତ ଜ୍ଞାନ ଓ ଅନନ୍ତ ଶକ୍ତିକୁ ଅନୁଭବ କରେ । ଆତ୍ମାର ମୋକ୍ଷ ବା ନିର୍ବାଣ ପ୍ରାପ୍ତି ହେଲା ଜୈନଧର୍ମର ମୂଳତତ୍ତ୍ୱ । କର୍ମର ଫଳ ସ୍ୱରୂପ ପୁନର୍ଜନ୍ମ ହୋଇଥାଏ ଏବଂ ଉକ୍ତଜନ୍ମରେ ମଧ୍ୟ ନାନା ସୁଖ ଦୁଃଖ ଭୋଗ କରିବାକୁ ହୁଏ । ସୁତରାଂ ସକଳ ପ୍ରକାରର କର୍ମ ବନ୍ଧନରୁ ମୁକ୍ତି ଲାଭ କରିବା ଆବଶ୍ୟକ । ନିର୍ବାଣ ଲାଭ ଥିଲା ଜୈନମାନଙ୍କର ଚରମ ଲକ୍ଷ୍ୟ । ପୁନର୍ଜନ୍ମରୁ ଆତ୍ମାକୁ ମୁକ୍ତ କରିବା ହେଉଛି ନିର୍ବାଣର ଉଦ୍ଦେଶ୍ୟ । ସଂସାରର ଦୁଃଖ ଓ ପୁନର୍ଜନ୍ମରୁ ମୁକ୍ତି ଲଭିବା ନିମନ୍ତେ ଇନ୍ଦ୍ରିୟକୁ ଜୟ କରି ସବୁ ଆଶା ତ୍ୟାଗ କରିବାକୁ ହେବ । ସର୍ବୋପରି ସମ୍ୟକ୍ ଦର୍ଶନ, ଜ୍ଞାନ ଓ ଚରିତ—ଏହି ତିନିକୁ ଅବଲମ୍ବନ କରି ନୈତିକ ଏବଂ ଆଧ୍ୟାତ୍ମିକ ସାଧନା ଦ୍ୱାରା ସାଧକ କର୍ମଫଳ ଜନିତ ପୁନର୍ଜନ୍ମରୁ ମୁକ୍ତିଲାଭ କରେ ଏବଂ ନିର୍ବାଣ ପ୍ରାପ୍ତ ହୁଏ । ( ୧୯ ) ।

## ନୟବାଦ :

ପ୍ରତ୍ୟେକ ଦ୍ରବ୍ୟରେ ରୂପ-ଗୁଣ (କଳା-ଧଳା), ସ୍ପର୍ଶଗୁଣ (ଥଣ୍ଡା-ଗରମ), ରସ-ଗୁଣ [ଖଟା ମିଠା] ପ୍ରଭୃତି ପ୍ରତ୍ୟେକ ଗୁଣ ରହିଛି । ଏହିପରି ପ୍ରତ୍ୟେକ ଦ୍ରବ୍ୟ ବା ବସ୍ତୁ ଅନନ୍ତ ଧର୍ମାତ୍ମକ ଅଥବା ଅନନ୍ତ ଗୁଣ ଧର୍ମଯୁକ୍ତ । ବିଭିନ୍ନ ଗୁଣ ଅନୁସାରେ ବିଭିନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ ଦ୍ରବ୍ୟର ବିଶେଷତ୍ୱ ନିରୂପଣ କରନ୍ତି । ଗୋଟିଏ ଦ୍ରବ୍ୟ କିପରି ଅନ୍ୟଦ୍ରବ୍ୟ ଠାରୁ ଭିନ୍ନ ତାହା ଜାଣିବା ପାଇଁ ଯେଉଁ ବିଷୟର ପ୍ରଣାଳୀ ଅବଲମ୍ବନ କରାଯାଏ ତାହା ହେଲା ନୟ । ଅର୍ଥାତ୍ ପ୍ରମାଣ ଦ୍ୱାରା ଗୃହୀତ ବସ୍ତୁର କୌଣସି ନିର୍ଦ୍ଦିଷ୍ଟ ଗୁଣର ଜ୍ଞାନକୁ ନୟ କୁହାଯାଏ । ନୟଗୁଡ଼ିକୁ ସାତଟି ଭାଗରେ ବିଭକ୍ତ କରାଯାଇଛି, ଯଥା :—ନୈଗମନୟ, ସଂଗ୍ରହନୟ, ବ୍ୟବହାର ନୟ ଋଜୁସୂତ୍ର ନୟ, ଶବ୍ଦନୟ, ସମଭିରୂଢ଼ନୟ ଏବଂ ଭୂତନୟ । ଦ୍ରବ୍ୟର ଲକ୍ଷଣ ଓ ଗୁଣ ଦ୍ରବ୍ୟଠାରୁ ପୃଥକ୍ ନୁହେଁ । ମନରେ ଯେଉଁ ଧାରଣା (ଜ୍ଞାନ)ଜାତ ହୁଏ ତାହାକୁ 'ଦ୍ରବ୍ୟ ନୟ' କୁହାଯାଏ । ଦ୍ରବ୍ୟ ବା ପଦାର୍ଥ ନଥିବା ବେଳେ ତାହାର

କେବଳ ଗୁଣ ଯେତେବେଳେ ବସ୍ତୁର କରାଯାଏ, ତାହାକୁ 'ପର୍ଯ୍ୟାୟନୟ' ବୁଝାଯାଏ । ଯେ କୌଣସି ଦ୍ରବ୍ୟକୁ ପ୍ରତ୍ୟକ୍ଷ କରିବା ବେଳେ ପ୍ରଥମେ କେତୋଟି ଗୁଣ ପୃଥକ୍ ରୂପେ ଉପଲବ୍ଧି କରି ଦ୍ରବ୍ୟଟି ବିଶେଷ ବା ଅନ୍ୟାନ୍ୟ ଦ୍ରବ୍ୟ ଠାରୁ ପୃଥକ୍ ବୋଲି ଅନୁଭୂତ ଜନ୍ମେ । ତାପରେ ତାହାର ଲକ୍ଷଣ ଓ ଗୁଣ କେବଳ ମନରେ ସ୍ଥିର କରାଯାଏ । ବସ୍ତୁ ସରିଲେ ମନରେ କେବଳ ଲକ୍ଷଣ ଓ ଗୁଣ ସ୍ଥାନ ପାଏ । ଦ୍ରବ୍ୟ ପ୍ରତ୍ୟକ୍ଷ କରିବାର ଆଉ ପ୍ରୟୋଜନ ନଥାଏ । ଏଣୁ 'ନୟ' 'ଦ୍ରବ୍ୟନୟ' 'ପର୍ଯ୍ୟାୟ ନୟ' ଭେଦରେ ଜ୍ଞାନ ବିଭକ୍ତ ହୁଏ ।

## ଜ୍ଞାନ :

ଜୈନ ଦର୍ଶନରେ ଜ୍ଞାନକୁ ସ୍ୱପରପ୍ରକାଶ ଏବଂ ତାହା ଆତ୍ମାର ସ୍ୱାଭାବିକ ଗୁଣଭାବେ ସ୍ୱୀକୃତ ହୋଇଛି । 'ପ୍ରବଚନସାର'ରେ ଅନନ୍ତ ସୁଖ ଓ ଅନନ୍ତ ଜ୍ଞାନ ଏବଂ ତାହା ଏକ ଓ ଅଭିନ୍ନ ବୋଲି ଆଚାର୍ଯ୍ୟ କୁନ୍ଦ କୁନ୍ଦ ଉଲ୍ଲେଖ କରିଛନ୍ତି । ଆତ୍ମା ଓ ଜ୍ଞାନ ମଧ୍ୟରେ କୌଣସି ପାର୍ଥକ୍ୟ ନଥିବା ହେତୁ କେବଳୀ ଜ୍ଞାନକୁ ଜାଣିବା ଅର୍ଥ ହେଉଛି କେବଳୀ ଆତ୍ମାକୁ ଜାଣିବା । ଜୈନମତ ଅନୁସାରେ ଜ୍ଞାନ ପଞ୍ଚବିଧ, ଯଥା ମତି ଜ୍ଞାନ ଅଥବା ଆଭିନବୋଧିକ ଜ୍ଞାନ, ଶ୍ରୁତ ଜ୍ଞାନ, ଅବଧି ଜ୍ଞାନ, ମନଃ ପର୍ଯ୍ୟାୟ ଜ୍ଞାନ ଏବଂ କେବଳ ଜ୍ଞାନ । (୨୦) ନିଜର ଅନୁଭୂତ ତଥା ଚିନ୍ତନ ଶକ୍ତିରୁ ଯେଉଁ ଜ୍ଞାନ ଜାତ ହୁଏ ତାହା ମତି ଜ୍ଞାନ । ଇନ୍ଦ୍ରିୟ ଓ ମନ ମାଧ୍ୟମରେ ଉତ୍ପନ୍ନ ଜ୍ଞାନ 'ମତି ଜ୍ଞାନ' ବୋଲି ତତ୍ତ୍ୱାର୍ଥ ସୂତ୍ରରେ ଆଚାର୍ଯ୍ୟ ଉମାସ୍ୱାତି ଉଲ୍ଲେଖ କରିଛନ୍ତି । ଦୁଇ ପ୍ରକାରର ମତିଜ୍ଞାନ ହେଲା— ଇନ୍ଦ୍ରିୟ ଜନ୍ୟ ଜ୍ଞାନ ଓ ମନୋଜନ୍ୟ ଜ୍ଞାନ । ଇନ୍ଦ୍ରିୟର ବସ୍ତୁ ସାନ୍ନିଧ୍ୟରେ ଇନ୍ଦ୍ରିୟଜନ୍ୟ ଜ୍ଞାନ ପ୍ରାପ୍ତ ହୁଏ । ମନ ସନ୍ନିକର୍ଷରେ ମନୋଜନ୍ୟ ଜ୍ଞାନ ପ୍ରାପ୍ତି ହୁଏ । ସର୍ବଜ୍ଞ ବୀତରାଗ ପରମେଷ୍ଠିଙ୍କ ପ୍ରଦତ୍ତବାଣୀ ଶ୍ରବଣ ଦ୍ୱାରା ଯେଉଁ ଜ୍ଞାନ ଆହରଣ କରାଯାଏ ଅଥବା ପବିତ୍ର ଗ୍ରନ୍ଥରୁ ଆହୃତ ଜ୍ଞାନ ହେଲା ଶ୍ରୁତଜ୍ଞାନ । ଶ୍ରୁତଜ୍ଞାନ ଦ୍ୱିବିଧ—ଅଙ୍ଗବାହ୍ୟ ଓ ଅଙ୍ଗ ପ୍ରବିଷ୍ଟ । ସ୍ଥବିର କୃତ ଆଗମ ଅଙ୍ଗବାହ୍ୟ ଏବଂ ଗଣଧର କୃତ ଆଗମ ଅଙ୍ଗ ପ୍ରବିଷ୍ଟ ନାମରେ କଥିତ । ସ୍ୱୀୟ ଚେତନା ଶକ୍ତି ଦ୍ୱାରା ବିଭିନ୍ନ ସ୍ଥାନ ଓ କାଳରେ ଘଟିତ ଘଟଣାବଳୀରୁ ପ୍ରାପ୍ତ ଜ୍ଞାନ ହେଉଛି ଅବଧି ଜ୍ଞାନ । କର୍ମର ଅଧୀନ ନହୋଇ କର୍ମ ନିଜର ଅଧୀନ ହେଲେ ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ସଂଯତ କଲେ ଅବଧି ଜ୍ଞାନ ଜାତ ହୁଏ । ସାକ୍ଷାତ୍ ଆତ୍ମାରୁ ଉତ୍ପନ୍ନ ହେଉଥିବାରୁ ଅବଧିଜ୍ଞାନକୁ ପ୍ରତ୍ୟକ୍ଷ ଜ୍ଞାନ ବୁଝାଯାଏ । ବ୍ରତ ବିଧାନାଦି ପାଳନ ଦ୍ୱାରା ଅବଧିଜ୍ଞାନ ଉତ୍ପନ୍ନ ହୋଇଥାଏ । ନିଜ ପ୍ରୟାସ ଦ୍ୱାରା କର୍ମର କ୍ଷୟ ହେଲାପରେ ମନୁଷ୍ୟ ଏହି ଜ୍ଞାନକୁ ପ୍ରାପ୍ତ କରେ ।

ଘୃଣା, ଅସୂୟା ପ୍ରଭୃତି ତ୍ୟାଗ କରି ଯୋଗ ଏବଂ ତପସ ଦ୍ୱାରା ଅନ୍ୟର ମନୋଭାବ ବା ଚିନ୍ତାଧାରା ଜାଣିବ ହେଲା ମନଃ ପର୍ଯ୍ୟାୟ ଜ୍ଞାନ । ଦୁଇ ପ୍ରକାରର ମନଃ ପର୍ଯ୍ୟାୟ ଜ୍ଞାନ ହେଲା—ଋଜୁମତି ଏବଂ ବିପୁଳମତି । ମନୁଷ୍ୟ ଯେତେବେଳେ ପଞ୍ଚଜ୍ଞାନେନ୍ଦ୍ରିୟ ଓ

ବ୍ୟକ୍ତିତ୍ୱର ବିକାଶ କରିବା ସଙ୍ଗେ ସଙ୍ଗେ ଭୋଗ-ବିଳାସରେ ଲିପ୍ତ ନହୋଇ ସମ୍ୟକ୍ ଦୃଷ୍ଟିବାନ୍ ଓ ସମ୍ୟକ ଚରିତ୍ରବାନ୍ ହୁଏ, ସେତେବେଳେ ସେ ମନଃ ପର୍ଯ୍ୟାୟ ଜ୍ଞାନର ଅଧିକାରୀ ହୁଏ । ସଂପୂର୍ଣ୍ଣ ମୋକ୍ଷ ପ୍ରାପ୍ତିରେ ଯେଉଁ ଦିବ୍ୟଜ୍ଞାନ ମିଳିଥାଏ ତାହା ହେଉଛି କେବଳ ଜ୍ଞାନ ଅଥବା ଶ୍ରେଷ୍ଠ ଜ୍ଞାନ । (୨୧) । କେବଳ ଜ୍ଞାନକୁ ତତ୍ତ୍ୱାର୍ଥ ସୂତ୍ରରେ ପବିତ୍ର, ପରିପୂର୍ଣ୍ଣ, ପାରମାର୍ଥିକ, ନିରପେକ୍ଷ, ଅସାଧାରଣ, ସର୍ବଦ୍ରବ୍ୟଦ୍ୟୋତକ ଏବଂ ଅନନ୍ତଗୁଣ ଓ ଅନନ୍ତ ପର୍ଯ୍ୟାୟଯୁକ୍ତ ବୋଲି ଉଲ୍ଲେଖ କରାଯାଇଛି । ଜୀବର ଅଜ୍ଞାନତା ଯୋଗୁଁ ବାସନା ପ୍ରବୃତ୍ତିର ଉଦ୍ରେକ ହୋଇଥାଏ । ତେଣୁ ବନ୍ଧନ ଅଜ୍ଞାନତା ଯୋଗୁଁ ଘଟିଥାଏ ବୋଲି କୁହାଯାଏ । କାରଣ ଅଜ୍ଞାନତା ଯୋଗୁଁ ଜୀବ ବାସନା ପ୍ରବୃତ୍ତିର ବଶବର୍ତ୍ତୀ ହୁଏ; ଏବଂ ବାସନା ପ୍ରବୃତ୍ତିର ଉଦ୍ରେକ ଫଳରେ ତାହା କର୍ମ-ପୁଦ୍‌ଗଳ (ପରମାଣୁ-କର୍ମ)ର ସନ୍ନିକର୍ଷରେ ବନ୍ଧନମୁକ୍ତ ହୁଏ । ସୁତରାଂ ଅଜ୍ଞାନତାର ବିନାଶରେ ବନ୍ଧନରୁ ମୁକ୍ତି ମିଳିପାରିବ ଏବଂ କେବଳ ଜ୍ଞାନ ଦ୍ୱାରା ଅଜ୍ଞାନତାର ନିରାକରଣ ହୋଇପାରିବ । ଉକ୍ତ—ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର ଦ୍ୱାରା ସେହି କେବଳ ଜ୍ଞାନର ପ୍ରାପ୍ତି ହୁଏ ବୋଲି ତତ୍ତ୍ୱାର୍ଥ ସୂତ୍ରରେ ଉଲ୍ଲେଖ ଅଛି । ଜୀବର କର୍ମ-ପୁଦ୍‌ଗଳର ସାନ୍ନିଧ୍ୟରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହେଲେହିଁ ଏହି ବିଶୁଦ୍ଧ ଜ୍ଞାନାବସ୍ଥାର ସମ୍ଭବ ହୋଇଥାଏ । ଏହି ପଞ୍ଚଜ୍ଞାନ ମଧ୍ୟରୁ ମତି ଓ ଶ୍ରୁତି ପରୋକ୍ଷ ଏବଂ ଅବଧି, ମନଃପର୍ଯ୍ୟାୟ ଏବଂ କେବଳ ଜ୍ଞାନ ପ୍ରତ୍ୟକ୍ଷ ଜ୍ଞାନ ରୂପେ ବିବେଚିତ । ବସ୍ତୁ ପ୍ରତ୍ୟକ୍ଷ ନକରି ଅନ୍ୟ କାହାରି ଠାରୁ ବସ୍ତୁର ବର୍ଣ୍ଣନା ଶୁଣି ଅଥବା ଅନୁମାନ କରି ଯେଉଁ ଜ୍ଞାନ ଲାଭ କରାଯାଏ ତାହା ପରୋକ୍ଷ ଜ୍ଞାନ । ଅର୍ଥାତ୍ ଇନ୍ଦ୍ରିୟ ଏବଂ ମନ ଉପରେ ଆଶ୍ରିତ ଜ୍ଞାନ ପରୋକ୍ଷ ଜ୍ଞାନ । ଇନ୍ଦ୍ରିୟଜନ୍ୟ ଜ୍ଞାନକୁ ପ୍ରତ୍ୟକ୍ଷ ଜ୍ଞାନ କୁହାଯାଏ । ବସ୍ତୁ ପ୍ରତ୍ୟକ୍ଷ କରି ମଧ୍ୟ ଯେଉଁ ପ୍ରତ୍ୟକ୍ଷ ଜ୍ଞାନ ଜନ୍ମେ ତାହା ମଧ୍ୟ ଆଂଶିକ ସଂପୂର୍ଣ୍ଣ ନୁହେଁ । କାରଣ ପ୍ରତ୍ୟେକ ଦ୍ରବ୍ୟ ଅନନ୍ତ ଧର୍ମାତ୍ମକ ।

## କର୍ମବାଦ :

ଅନ୍ୟାନ୍ୟ ଦାର୍ଶନିକଙ୍କ ପରି ଜୈନ ଦାର୍ଶନିକମାନେ ମଧ୍ୟ କର୍ମ ଓ କର୍ମ-ଫଳରେ ବିଶ୍ୱାସ କରନ୍ତି । ସେମାନଙ୍କ ମତରେ କର୍ମଦ୍ୱାରା ହିଁ ଜର୍ତ୍ତ ଜନ୍ମାନ୍ତର ପ୍ରାପ୍ତ ହୋଇଥାଏ । ପ୍ରତ୍ୟେକ ଜୀବ ସ୍ୱୟଂ କର୍ମବନ୍ଧ ଏବଂ କର୍ମଭୋଗର ଅଧିଷ୍ଠାତା । ସେ ନିଜର ସୁ କର୍ମ ସାଧନା ଦ୍ୱାରା ଉର୍ଦ୍ଧ୍ୱଗାମୀ ଏବଂ କୁକର୍ମ ଦ୍ୱାରା ଅଧୋଗାମୀ ହୋଇଥାଏ । ପରିଶେଷରେ ଜୀବ ଉଭୟ ସୁ ଓ କୁ କର୍ମ ସଂପୂର୍ଣ୍ଣ ରୂପେ ତ୍ୟାଗ କରି ଶୁଦ୍ଧ କେବଳ ଜ୍ଞାନ ଦ୍ୱାରା ହିଁ ସିଦ୍ଧି ବା ମୋକ୍ଷ ଲାଭ କରେ । ସମସ୍ତ ପ୍ରକାରର କର୍ମର ସମୂଳ ନିରାକରଣ ଦ୍ୱାରା ଜୀବ ଠାରେ ଶୁଦ୍ଧ ଜ୍ଞାନର ପରିପ୍ରକାଶ ହୋଇଥାଏ । ଅତଃ ଜୈନ ମତରେ ଜୀବର ଶ୍ରେଷ୍ଠତ୍ୱ କିମ୍ବା ପରମତ୍ୱ ଲାଭ କେବଳ କୌଣସି ସୁକର୍ମ ସଂପାଦନର ଫଳ ନହୋଇ କେବଳ ବିଶୁଦ୍ଧ ଜ୍ଞାନ ପ୍ରାପ୍ତି ଯୋଗୁଁ ଘଟିଥାଏ । ଅର୍ଥାତ୍ ଜୀବର ସିଦ୍ଧିଲାଭ କର୍ମ ଯୋଗୁଁ ନୁହେଁ, ଜ୍ଞାନ ଯୋଗୁଁ ସମ୍ଭବ । ନିଜର ଭଲ କର୍ମ ବଳରେ ଜୀବ ଉର୍ଦ୍ଧ୍ୱଗାମୀ ହୋଇପାରେ, କିନ୍ତୁ ତଦ୍ୱାରା ଶ୍ରେଷ୍ଠତ୍ୱ

ତା ପରମାତ୍ମ ଲାଭ କରିପାରେ ନାହିଁ । ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ମୋକ୍ଷ ପ୍ରାପ୍ତି କ୍ରମରେ କର୍ମବାଦର କୌଣସି ଆବଶ୍ୟକୀୟ ପ୍ରତ୍ୟକ୍ଷ ସମ୍ପର୍କ ନାହିଁ ।

ଜୈନ ମତରେ କର୍ମ ହେଉଛି ସାକାର ବା ମୂର୍ତ୍ତି । ଦୁଗ୍ଧରେ ଘୃତ ସଦୃଶ ସମସ୍ତ କାର୍ଯ୍ୟରେ କର୍ମର ସତ୍ତା ବିଦ୍ୟମାନ । ପ୍ରକୃତି, କାଳ, ଗନ୍ଧ ଓ ସ୍ପୃହାନୁଯାୟୀ ଜୈନ କର୍ମ ଶାସ୍ତ୍ରରେ କର୍ମର ଆଠଟି ମୂଳ ପ୍ରକୃତିର ଉଲ୍ଲେଖ ରହିଛି, ଯଥା ଜ୍ଞାନାବରଣୀୟ,ଦର୍ଶନା-ବରଣୀୟ, ମୋହନୀୟ, ଅନ୍ତରାୟ, ବେଦନୀୟ, ଆୟୁ, ନାମ ଓ ଗୋତ୍ର । ଏଥିମଧ୍ୟରୁ ପ୍ରଥମ ଚାରୋଟି ଘାତକ୍ କର୍ମ ଓ ଶେଷ ଚାରୋଟି ଅଘାତକ୍ କର୍ମ ରୂପେ ପରିଚିତ ।

ଜ୍ଞାନାବରଣୀୟ କର୍ମ ଦ୍ୱାରା ମିଥ୍ୟା ଧାରଣା ଜନିତ ଜ୍ଞାନ ଜାତ ହୁଏ । ଦର୍ଶନା-ବରଣୀୟ କର୍ମ ଆତ୍ମାର ଦର୍ଶନ ଗୁଣକୁ ଆବୃତ କରିଥାଏ ଏବଂ ପ୍ରକୃତ ସତ୍ୟ ଦର୍ଶନରେ ପ୍ରତିକୂଳ ହୋଇଥାଏ । ମୋହନୀୟ କର୍ମ ଦ୍ୱାରା ବ୍ୟକ୍ତି ହିତ ଭାବନା ଓ ସତ୍ୟ କଥନରୁ ଅନ୍ତରିତ ହୁଏ । ଅନ୍ତରାୟ କର୍ମ ଦ୍ୱାରା ଦାନ-ଲାଭ, ଭୋଗ-ଉପଭୋଗ, ବୀର୍ଯ୍ୟ ଆଦି ଶକ୍ତିର ବିନାଶ ହୁଏ । ଏହି କର୍ମ ଦ୍ୱାରା ସମାଜରେ ସବୁଠାରୁ ସୁଖୀ ଏବଂ ବଳଶାଳୀ ବ୍ୟକ୍ତି ଠାରେ ପାଶବିକ ଭାବନା ଜାତ ହୋଇଥାଏ । ବେଦନୀୟ କର୍ମ ଦୁଇ ପ୍ରକାରର, ଯଥା ସାତାବେଦନୀୟ ଏବଂ ଅସାତାବେଦନୀୟ । ସାତାବେଦନୀୟ କର୍ମର ଉଦୟରେ ଜୀବକୁ ଅନୁକୂଳ ପଦାର୍ଥ ପ୍ରାପ୍ତିର ସୁଖ ଜନିତ ଆନନ୍ଦ ଅନୁଭବ ହୁଏ । ଅସାତା ବେଦନୀୟ କର୍ମର ଉଦୟରେ ପ୍ରତିକୂଳ ପଦାର୍ଥ ପ୍ରାପ୍ତିର ଦୁଃଖ ଜନିତ ବିଷାଦ ଜାତହୁଏ । ଆୟୁ କର୍ମ ଦ୍ୱାରା ପ୍ରାଣୀର ଜୀବନକାଳ ସୂଚିତ ହୁଏ । ଆୟୁ କର୍ମ ଯୋଗୁଁ ପ୍ରାଣୀ ଜୀବିତ ଥାଏ ଏବଂ ଏହି କର୍ମର କ୍ଷୟରେ ପ୍ରାଣୀର ମୃତ୍ୟୁ ହୋଇଥାଏ । ଆୟୁ କର୍ମ ଚାରି ପ୍ରକାରର, ଯଥା :—ଦେବାୟୁ, ମନୁଷ୍ୟାୟୁ, ତିର୍ଯ୍ୟକାୟୁ ଓ ନରକାୟୁ । ନାମ କର୍ମର ଏକଶହ ତିନିଗୋଟି ଉତ୍ତର ପ୍ରକୃତି ମୁଖ୍ୟତଃ ଚାରୋଟି ଶ୍ରେଣୀରେ ବିଭକ୍ତ, ଯଥା :— ପିଣ୍ଡ ପ୍ରକୃତି, ପ୍ରତ୍ୟେକ ପ୍ରକୃତି, ତ୍ରସ ଦଶକ ଏବଂ ସ୍ଥାବର ଦଶକ । ପିଣ୍ଡ ପ୍ରକୃତି ଯୋଗୁଁ ଜୀବଠାରେ ପାଞ୍ଚଜାତି, ପାଞ୍ଚଶରୀର, ପନ୍ଦରଗୋଟି ବନ୍ଧନ, ଶରୀରର ପାଞ୍ଚଟି ବର୍ଣ୍ଣ, ଦୁଇଟି ଗନ୍ଧ, ପାଞ୍ଚରସ ଆଦି ସଂଯୋଜିତ ହୋଇଥାଏ । ଜୀବ ଶ୍ରେଷ୍ଠ ଭାବନା, ଧର୍ମସ୍ଥାପନର କ୍ଷମତା ଆଦିର ଅଧିକାରୀ ହେବାର କାରଣ ପ୍ରତ୍ୟେକ ପ୍ରକୃତି କର୍ମ ଅଟେ । ତ୍ରସଦଶକ ଯୋଗୁ ଜୀବ ସୁନ୍ଦର,ମିଷ୍ଟ ଓ ସମବେଦନଶୀଳ ହୋଇଥାଏ । ସ୍ଥାବର ଦଶକ କର୍ମ ଯୋଗୁ ଜୀବ ଅସୁନ୍ଦର ଏବଂ ରୁକ୍ଷସ୍ୱଭାବଯୁକ୍ତ ହୋଇଥାଏ । ଗୋତ୍ରକର୍ମ ଦ୍ୱାରା ଜୀବର ଜାତି ଓ ପରକାଳୀନ ଜୀବନ-ଧାରା ସୂଚିତ ହୁଏ । ଗୋତ୍ର କର୍ମ ଦ୍ୱିବିଧ – ଉଚ୍ଚଗୋତ୍ର କର୍ମ ଓ ନୀଚଗୋତ୍ର କର୍ମ । ଉଚ୍ଚଗୋତ୍ର କର୍ମ ଦ୍ୱାରା ଜୀବ ଉଚ୍ଚ କୁଳରେ ଜନ୍ମଲାଭ କରି ସଦାଚାର ସମ୍ପନ୍ନ ହୋଇଥାଏ । ନୀଚଗୋତ୍ର କର୍ମ ଦ୍ୱାରା ପ୍ରାଣୀ ନୀଚ କୁଳରେ ଜନ୍ମଗ୍ରହଣ କରି ସଂସ୍କାରହୀନ ହୋଇଥାଏ ।

କାଳ ଅନୁସାରେ କର୍ମକୁ ସତ୍ତା, ବନ୍ଧ ଓ ଉଦୟ କର୍ମ ରୂପେ ତିନିଭାଗରେ ବିଭକ୍ତ କରାଯାଇଛି । ପୂର୍ବଜନ୍ମରେ ଅର୍ଜିତ କର୍ମର ସତ୍ତା ବର୍ତ୍ତମାନ ଜୀବନରେ ପ୍ରତିଫଳିତ ।

ବର୍ତ୍ତମାନ ଜୀବନର କର୍ମ ଭବିଷ୍ୟତ ଜୀବନରେ ଯେଉଁ ଫଳ ପ୍ରଦାନ କରିବ,ତାହା ବନ୍ଧ । ବର୍ତ୍ତମାନ ଭଲ ଓ ମନ୍ଦର ଯେଉଁ ଫଳାଫଳ ଅନୁଭୂତ ହେଉଛି, ତାହା ଉଦୟ କର୍ମ ରୂପେ ଅଭିହିତ ।

ଚଉଦଟି ଉପାୟରେ ଜୀବ କର୍ମବନ୍ଧନରୁ ମୁକ୍ତ ହୋଇଥାଏ । ସେଗୁଡ଼ିକ ହେଲା ମିଥ୍ୟା-ତ୍ୱଗୁଣସ୍ଥାନକ, ସାସ୍ୱାଦନ ମିଶ୍ର ଅବିରତ ସମ୍ୟକ୍ ଦୃଷ୍ଟି, ଦେଶବିରତ, ପ୍ରମତ୍ତ ଅପ୍ରମତ୍ତ ନିବୃତ୍ତବାଦର, ଅନିବୃତ୍ତବାଦର, ସୂକ୍ଷ୍ମ ପରମସପ୍ତ, ଉପଶାନ୍ତମୋହ, କ୍ଷୀଣମୋହ ଓ ଅଯୋଗୀ କେବଳ ଗୁଣସ୍ଥାନକ । ଏହା ଜୈନଦର୍ଶନରେ ଚଉଦ୍ଦଶଗୁଣ ସ୍ଥାନକ ନାମରେ ଅଭିହିତ ।

## ନିରୀଶ୍ୱରବାଦ :

ଜୈନଧର୍ମ ନିରୀଶ୍ୱରବାଦୀ ଧର୍ମ । ପ୍ରାରମ୍ଭରୁ ନିବୃତ୍ତିମାର୍ଗଗାମୀ ଥିବାରୁ ଜୈନଧର୍ମରେ ଭକ୍ତିଭାବର ଧାରା ନଥିଲା । ଜୈନଧର୍ମର ମୂଳ ସିଦ୍ଧାନ୍ତ ହେଉଛି—ସଂସାର ଆବହମାନ କାଳରୁ ଥିଲା, ରହିଛି ଏବଂ ରହିବ । ଜୈନଦାର୍ଶନିକଙ୍କ ମତରେ ଅନାଦି କାଳରୁ ବିଦ୍ୟମାନ ଏହି ବିଶ୍ୱ ଓ ତାହାର ପ୍ରତ୍ୟେକ ବସ୍ତୁର ଉତ୍ପତ୍ତି ନିମିତ୍ତ କୌଣସି ଜଣେ ସର୍ବଜ୍ଞ, ସର୍ବବ୍ୟାପୀ, ସର୍ବଶକ୍ତିମାନ ଜଗତକର୍ତ୍ତା ପୁରୁଷବିଶେଷ—ଈଶ୍ୱର ବୋଲି କେହି ନାହାନ୍ତି ବା ତାଙ୍କର ଆବଶ୍ୟକତା ନାହିଁ । ସେମାନଙ୍କ ମତରେ ଜଗତ ବାସ୍ତବ ଏବଂ ତାହା ସ୍ୱୟଂଜାତ ଓ ସନାତନ । ତାହାର ଆଦି ଅନ୍ତ କିଛି ନାହିଁ । ନିଜର ସ୍ଥିତି ପାଇଁ ତାହା କାହାରି ଉପରେ ନିର୍ଭର କରେ ନାହିଁ । ସ୍ୱାଭାବିକ ରୀତିରେ କ୍ରମ ବିକଶିତ ଏହି ସଂସାର, ବିଶ୍ୱ ଅଥବା ଜଗତର କେହି ସ୍ରଷ୍ଟା, ରକ୍ଷାବିଧାରକ କିମ୍ବା ସଂହର୍ତ୍ତା ନାହାନ୍ତି । ତେଣୁ ଜୈନମାନେ ଈଶ୍ୱରଙ୍କ ସତ୍ତାର ଆବଶ୍ୟକତା ଅନୁଭବ କରନ୍ତି ନାହିଁ । ଏହି ସଂସାର ସ୍ୱଧର୍ମ ଦ୍ୱାରା ପରିଚାଳିତ । ଜୀବ ବା ଆତ୍ମା ଯେତେବେଳେ ଏହା ବୁଝିପାରେ ସେତେବେଳେ ସେ ଅବିଦ୍ୟାରୁ ନିସ୍ତାର ବୁଦ୍ଧଜ୍ଞାନର ଅଧିକାରୀ ହୁଏ ।

ପ୍ରସିଦ୍ଧ ଦାର୍ଶନିକ ଜାକୋବିଙ୍କ ମତରେ "ଜୈନମାନେ ଯଦିଓ ନିରୀଶ୍ୱରବାଦୀ ଅଟନ୍ତି, ତଥାପି ସମ୍ଭବତଃ ନିଜକୁ ନିରୀଶ୍ୱରବାଦୀ ବୋଲି ପରିଚୟ ଦେବାକୁ ସେମାନେ ପସନ୍ଦ କରୁନଥିଲେ । ଯଦିଓ ସେମାନେ ସ୍ୱୀକାର କରୁଥିଲେ ଯେ ଏହି ଜଗତ ଅନାଦି, ଅନନ୍ତ ଏବଂ ଏହା ଈଶ୍ୱରଙ୍କ ଦ୍ୱାରା ନିର୍ମିତ ନୁହେଁ ବା ଶାସିତ ନୁହେଁ, ତଥାପି ସେମାନେ ଈଶ୍ୱରଙ୍କ ଭଳି ପୂଜନୀୟ ତୀର୍ଥଙ୍କରଙ୍କୁ ଭକ୍ତି କରୁଥିଲେ, ଯେଉଁମାନେ କି ଏହି ସଂସାରର ମାୟାଜାଲ ତଥା ସମସ୍ତ ବିକାରରୁ ପୂର୍ଣ୍ଣତଃ ମୁକ୍ତ ହୋଇ ସର୍ବଜ୍ଞ ହୋଇଥିବା ଯୋଗୁଁ ନିଜର ସମସ୍ତ ପୂର୍ବ କର୍ମକୁ ନଷ୍ଟ କରି ପରିପୂର୍ଣ୍ଣ ଅବସ୍ଥାକୁ ପ୍ରାପ୍ତ ହୋଇଛନ୍ତି ।" (୨୨) ।

ଜୈନ ସିଦ୍ଧାନ୍ତ ଅନୁସାରେ ଅଗଣିତ ଦେବଦେବୀଙ୍କ ଅବଲମ୍ବନ ତ୍ୟାଗ କରି ଆତ୍ମନିର୍ଭରଶୀଳ ହେବା ଏକାନ୍ତ ପ୍ରୟୋଜନ । ପାପ କର୍ମ ପାଇଁ ମନୁଷ୍ୟ ଯେଉଁ ଫଳ ଭୋଗ କରେ ତାହା ଦେବଦେବୀଙ୍କ ପୂଜା—ଆରାଧନା ଦ୍ୱାରା ଦୂର ହୁଏ ନାହିଁ । କେବଳ ଅନାସକ୍ତ ଏବଂ ଲୋଭ ଓ ହିଂସା ବିବର୍ଜିତ ଜୀବନ ଦ୍ୱାରା କାମ, କ୍ରୋଧ, ମୋହ, ମଦ, ମାତ୍ସର୍ଯ୍ୟ,

ଦ୍ୱେଷ ପ୍ରଭୃତି ବିକାର (ପାପ) ତ୍ୟାଗ କରିପାରିଲେ ଆତ୍ମଶୁଦ୍ଧି ହୁଏ । ଜୈନ ମତରେ ମନୁଷ୍ୟ ନିଜେ ନିଜର ରକ୍ଷାକର୍ତ୍ତା ଏବଂ ଭାଗ୍ୟନିୟନ୍ତା । ବ୍ୟକ୍ତିଗତ ଉଦ୍ୟମ ଦ୍ୱାରା ମନୁଷ୍ୟ ନୈତିକ ଏବଂ ଆଧ୍ୟାତ୍ମିକ ଉତ୍କର୍ଷ ଲାଭ କରି ନିର୍ବାଣ ପ୍ରାପ୍ତ ହୁଏ । ଆତ୍ମକଲ୍ୟାଣାର୍ଥେ କେବଳ ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଦର୍ଶନ ନୁହେଁ, ସମ୍ୟକ୍ ଚରିତ୍ରର ମଧ୍ୟ ଆବଶ୍ୟକତା ରହିଛି । ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଶୁଦ୍ଧ ଚରିତ୍ର ପ୍ରାପ୍ତ ହେବା ପାଇଁ ମନୁଷ୍ୟ କୌଣସି ଦେବଦେବୀ, କୌଣସି ବାହ୍ୟଶକ୍ତି ଅଥବା ଅନ୍ୟାନ୍ୟ ରହସ୍ୟମୟୀ ସତ୍ତ୍ୱଗୁଡ଼ିକ ଉପରେ ନିର୍ଭର କରିବା ଅନାବଶ୍ୟକ । ଗୀତା ଅନୁସାରେ 'ଉଦ୍ଧରେଦାତ୍ମନା-ତ୍ମାନାମ' ଅର୍ଥାତ୍ ମନୁଷ୍ୟ ନିଜେ ନିଜର ଉଦ୍ଧାରକର୍ତ୍ତା । ଜୈନ ସିଦ୍ଧାନ୍ତରୁ ମଧ୍ୟ ଏହି ଶିକ୍ଷା ମିଳେ (୨୩) । ଜୈନଧର୍ମ ବ୍ରାହ୍ମଣ୍ୟମତବାଦୀଙ୍କ ଅନୁସୃତ ଈଶ୍ୱରଙ୍କ ଅସ୍ୱୀକାର କରି ଆତ୍ମା ଅବଲମ୍ବନ ମୂଳକ ଈଶ୍ୱରଙ୍କ ଉପରେ ଅଧିକ ଆସ୍ଥା ସ୍ଥାପନ ପୂର୍ବକ ମନୁଷ୍ୟଙ୍କୁ ଭାଗ୍ୟବାଦୀ ହେବାର ଧ୍ୱଂସ ମୁଖରୁ ରକ୍ଷା କରେ ।

କର୍ମକ୍ଷେତ୍ରରୁ ମଧ୍ୟ ପ୍ରଥମେ ଏହି ଶିକ୍ଷା ଜ୍ଞାନ କ୍ଷେତ୍ରରେ ଆରମ୍ଭ ହୋଇଥିଲା । ସମ୍ୟକ୍ ଜ୍ଞାନ ନିମନ୍ତେ ମନୁଷ୍ୟଙ୍କୁ ଶ୍ରୁତି ଉପରେ ନିର୍ଭର କରିବାକୁ ପଡୁନଥିଲା । ଗ୍ରନ୍ଥ ବିଶେଷର ବନ୍ଧନରୁ ମୁକ୍ତି ହିଁ ଜୈନଧର୍ମ ତଥା ଅନ୍ୟାନ୍ୟ ପ୍ରଗତିଶୀଳ ଚିନ୍ତକଙ୍କ ମହତ୍ତ୍ୱପୂର୍ଣ୍ଣ ଉଦ୍ଦେଶ୍ୟ ତଥା କର୍ତ୍ତବ୍ୟ ଥିଲା । ଏତେ ପ୍ରାଚୀନ କାଳରୁ ଯଦି ଭାରତରେ ଏହି ପ୍ରକାର ଶ୍ରୁତିର ବିରୋଧ ହୋଇନଥାନ୍ତା ତେବେ ମଧ୍ୟଯୁଗୀୟ ଇଉରୋପ ପରି ଭାରତୀୟ ଦାର୍ଶନିକମାନେ ମଧ୍ୟ ସ୍ୱତନ୍ତ୍ର ତଥା ସ୍ୱାଧୀନ ଚିନ୍ତକ ହୋଇପାରିନଥାନ୍ତେ ଓ ଶ୍ରୁତି ସମ୍ମତ ସିଦ୍ଧାନ୍ତର ମଣ୍ଡନ ମଧ୍ୟରେ ଆପଣାର ତର୍କଶକ୍ତିକୁ ପ୍ରତ୍ୟର୍ପଣ କରିଥାନ୍ତେ । ଜୈନଧର୍ମ ତଥା ଅନ୍ୟାନ୍ୟ ଶ୍ରୁତିବିରୋଧୀ ସମ୍ପ୍ରଦାୟମାନଙ୍କର ପ୍ରଭାବ ଯୋଗୁଁ ଭାରତ ବର୍ଷରେ ଅନେକ ଆସ୍ତିକ (ଶ୍ରୁତି ସମ୍ମତ) ଦର୍ଶନର ଉତ୍ଥାନ ହେଲା ।

ତତ୍ତ୍ୱଦର୍ଶନ କ୍ଷେତ୍ରରେ ଏହିପରି ଜୈନଧର୍ମର ବୃଷ୍ଟ ସିଦ୍ଧାନ୍ତ ହେଲା ନିରୀଶ୍ୱରବାଦ । ପରେ ବୌଦ୍ଧଧର୍ମ ନିରୀଶ୍ୱରବାଦରେ ବିଶ୍ୱାସ ସ୍ଥାପନ କଲା । କିନ୍ତୁ ବୌଦ୍ଧଧର୍ମର ନିରୀଶ୍ୱର-ବାଦ ନୈରାତ୍ମ୍ୟବାଦର ଅଂଶ । ଜୈନଧର୍ମର ମୌଳିକତା ପ୍ରତି ଧ୍ୟାନଦେଲେ ଏହି ସିଦ୍ଧାନ୍ତର ମୂଲ୍ୟାୟନ କରିବା ସହଜ ହେବ । ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରିବା ପାଇଁ ପ୍ରାୟ ସମସ୍ତ ପ୍ରାଚୀନ ଧର୍ମର ପ୍ରବର୍ତ୍ତକମାନେ ଉପଦେଶ ଦେଇଥାନ୍ତି । ପ୍ରାକୃତିକ ଘଟଣା-ଗୁଡ଼ିକର ଅପ୍ରାକୃତିକ କାରଣରେ ବିଶ୍ୱାସ ପ୍ରାରମ୍ଭିକ ଧାର୍ମିକ ମସ୍ତିଷ୍କର ପ୍ରଧାନ ଲକ୍ଷଣ । ଏତେ ପ୍ରାଚୀନ କାଳରୁ ଯେ ଜୈନଧର୍ମ ଏହି ପକ୍ଷପାତରୁ ମୁକ୍ତ ଥିଲା ,ତାହା ବାସ୍ତବିକ୍ ପ୍ରଣିଧାନଯୋଗ୍ୟ । ବୈଜ୍ଞାନିକ ଦୃଷ୍ଟିକୋଣରୁ ପ୍ରକୃତି ଜଗତ ଏକ ସ୍ୱତନ୍ତ୍ର ସମଷ୍ଟି । ନିରବଚ୍ଛିନ୍ନ ନିୟମ ଅନୁସାରେ ଏହାର ପ୍ରତ୍ୟେକ ଘଟଣା ଘଟିଥାଏ । ଏହି ନିୟମ ଗୁଡ଼ିକରେ କୌଣସି ବାହ୍ୟଶକ୍ତି ହସ୍ତକ୍ଷେପ କରିପାରେ ନାହିଁ । ଈଶ୍ୱରଙ୍କୁ ସ୍ରଷ୍ଟା ବିବେଚନା କରିବା ଅର୍ଥ ପ୍ରକୃତିର ଅଖଣ୍ଡତା ଓ ସ୍ୱତନ୍ତ୍ରତାକୁ ଅବିଶ୍ୱାସ କରିବା । ପ୍ରକୃତି ସମ୍ବନ୍ଧୀୟ ଏହି ରହସ୍ୟ

ଜୈନଧର୍ମ ଯେ ଏତେ ପ୍ରାରମ୍ଭିକ ଅବସ୍ଥାରୁ ଉଦ୍‌ଘାଟନ କରିପାରିଥିଲା । ତାହା ଉଲ୍ଲେଖ-ଯୋଗ୍ୟ ।

ଜୈନମାନେ ନିରୀଶ୍ୱରବାଦୀ ହେଲେ ମଧ୍ୟ ତୀର୍ଥଙ୍କର ବା ଜିନ ତଥା ସେମାନଙ୍କ ଶାସନ ଦେବୀଙ୍କୁ ପୂଜା କରନ୍ତି, କିନ୍ତୁ ସେମାନଙ୍କୁ ସ୍ରଷ୍ଟା, ପାଳକ, ଅଥବା ସଂହର୍ତ୍ତା ଭାବରେ ସ୍ୱୀକାର କରନ୍ତି ନାହିଁ । ତୀର୍ଥଙ୍କରମାନେ ଆଦର୍ଶ ଏବଂ କୈବଲ୍ୟପ୍ରାପ୍ତ ପୁରୁଷୋତ୍ତମ ହୋଇଥିବା ହେତୁ ସେମାନେ ପୂଜ୍ୟ ବୋଲି ଜୈନମାନଙ୍କର ଧାରଣା । ଯଦିଓ ଜୈନ-ମାନେ ଈଶ୍ୱର ମାନନ୍ତି ନାହିଁ ସେମାନେ ତୀର୍ଥଙ୍କର ମାନଙ୍କ ଆଦର୍ଶ ଚରିତ ଓ ଉପଦେଶ ଅବଲମ୍ବନ କରି ବିଶୁଦ୍ଧ ନୀତିମୟ ଜୀବନଯାପନ କରନ୍ତି । ଏଣୁ ଆପ୍ତ ବଚନ (ତୀର୍ଥଙ୍କରଙ୍କ ବାଣୀ)କୁ ଜୈନମାନେ ପ୍ରମାଣ ସ୍ୱରୂପ ଗ୍ରହଣ କରନ୍ତି ।

ଜୈନଧର୍ମ ଦ୍ୱାରା ଜଡ଼ ଜଗତରେ ଏହି ପ୍ରକାର ନିରପେକ୍ଷତା ଉଦ୍‌ଘୋଷିତ ହେବା ସତ୍ତ୍ୱେ ଆମ ଦେଶରେ ଏପର୍ଯ୍ୟନ୍ତ ବୈଜ୍ଞାନିକ ଅନ୍ୱେଷଣ ଆରମ୍ଭ ହୋଇନାହିଁ । ଏହାର ମୁଖ୍ୟ କାରଣ ହେଲା ସମାଜର ସର୍ବଶ୍ରେଷ୍ଠ ଚିନ୍ତାଶୀଳ ବ୍ୟକ୍ତିମାନେ ମୋକ୍ଷ ଅନ୍ୱେଷଣରେ ସର୍ବଦା ରତ । ପ୍ରାକୃତିକ ରହସ୍ୟର ସତ୍ତ୍ୱ ଆବିଷ୍କାର ପୂର୍ବକ ଜଡ଼ଶକ୍ତି ଗୁଡ଼ିକ ଉପରେ ଆଧିପତ୍ୟ ବିସ୍ତାର କରିବାର ଆକାଂକ୍ଷା ସେମାନଙ୍କର ନାହିଁ । ହିନ୍ଦୁଦର୍ଶନ ପରି ଜୈନଦର୍ଶନ ମଧ୍ୟ ମୋକ୍ଷରେ ବିଶ୍ୱାସ କରେ । ମୋକ୍ଷ ଅର୍ଥ ଶରୀର ଅଥବା ଜଡ଼ ଜଗତରୁ ମୁକ୍ତି । ଅତଏବ ଏହି ମନୀଷୀ ମାନଙ୍କର ଜଡ଼ ସମ୍ବନ୍ଧୀୟ ପର୍ଯ୍ୟାଲୋଚନାରେ ବିଶେଷ ଆଗ୍ରହ ପରିଲକ୍ଷିତ ହୁଏ ନାହିଁ । କାରଣ ଯେଉଁଠାରେ ଶ୍ରୁତି ବିରୋଧୀ ଦୃଷ୍ଟିକୋଣ ଭାରତର ତର୍କ ପ୍ରଣତିକୁ ପ୍ରଭାବିତ କରିଥିଲା, ସେଠାରେ ତାହାର ନିରୀଶ୍ୱରବାଦ ଭାରତୀୟ ଦର୍ଶନ ଉପରେ ବିଶେଷ ପ୍ରଭାବ ପକାଇ ପାରିଲା ନାହିଁ । ଅପରନ୍ତୁ ଜୈନଧର୍ମର ଘୋର ଦ୍ୱୈତବାଦ ଆତ୍ମା ଓ ଅନାତ୍ମାକୁ ଅଧିକ ପ୍ରଶସ୍ତ ଓ ଗଭୀର ଭାବେ ରୂପାୟିତ କରି ଭାରତୀୟ ଚିନ୍ତାଧାରାକୁ ପ୍ରକୃତି ଠାରୁ ଅବଚ୍ଛିନ୍ନ କରିବା ପାଇଁ ସହାୟକ ହୋଇଥିଲା ।

## ସ୍ୟାଦ୍‌ବାଦ

ଯେଉଁ ବସ୍ତୁ ଯେପରି ତାକୁ ସେପରି ଭାବେ ପ୍ରଦର୍ଶନ କରିବାର ସିଦ୍ଧାନ୍ତକୁ ସ୍ୟାଦ୍‌ବାଦ କୁହାଯାଏ । ଯେଉଁ ବସ୍ତୁ ଯେଉଁ ରୂପରେ ବା ଅବସ୍ଥାରେ ଯଥାର୍ଥ, ତାକୁ ସେହି ରୂପ ବା ଅବସ୍ଥାରେ ଯଥାର୍ଥ କହିବା ଏବଂ ଅନ୍ୟରୂପ ବା ଅବସ୍ଥାରେ ଅଯଥାର୍ଥ କହିବା ହେଉଛି ସ୍ୟାଦ୍‌ବାଦ । ସ୍ୟାଦବାଦ ବା 'Theory of may be' ଅଥବା ଅନେକାନ୍ତବାଦ [illegible] ଜୈନଧର୍ମର ମହତ୍ତ୍ୱପୂର୍ଣ୍ଣ ଦର୍ଶନ । ଜୈନଦର୍ଶନ ଅନୁଯାୟୀ ବସ୍ତୁରେ ଅନନ୍ତ [illegible], ଅନନ୍ତଗୁଣ ନିହିତ । ଏହି ଦର୍ଶନରେ ବସ୍ତୁର ଅନେକ ଗୁଣ ବା ଧର୍ମ ଏବଂ ମନୁଷ୍ୟର ଜ୍ଞାନକୁ ନିର୍ଦ୍ଦିଷ୍ଟ ରୂପରେ ନିର୍ଭୁଲ ବୋଲି ସ୍ୱୀକୃତ ହୁଏନାହିଁ । ତାହା ସିଦ୍ଧ ହୋଇପାରେ, ଅସିଦ୍ଧ ହୋଇପାରେ । ବସ୍ତୁର ଗୁଣ ବା ଜ୍ଞାନ ଭିନ୍ନ ଭିନ୍ନ ଅବସ୍ଥାରେ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ଭିନ୍ନ ଭିନ୍ନ ବୋଧହୁଏ । ଉଦାହରଣ ସ୍ୱରୂପ ବୃକ୍ଷ ହିଳୁଚି କହିଲେ

ଏହା ଠିକ୍ ଏବଂ ଭୁଲ ମଧ୍ୟ । କାରଣ ବୃକ୍ଷର ଡାଳ ଓ ପତ୍ର ହଲୁଚି କିନ୍ତୁ ତା' ସହିତ ବୃକ୍ଷ ହଲୁନାହିଁ; ଯେହେତୁ ତାହା ଗୋଟିଏ ସ୍ଥାନରେ ଦଣ୍ଡାୟମାନ । "ବସ୍ତୁର ଅନେକାନ୍ତଗୁଣ ନିର୍ଦ୍ଦେଶ ପାଇଁ 'ସ୍ୟାତ୍' ଶବ୍ଦ ପ୍ରଯୁକ୍ତ ହୁଏ । 'ସ୍ୟାତ୍' ଶବ୍ଦର ଅର୍ଥ ହେଉଛି କଥଂଚିତ୍ । କୌଣସି ଏକ ଦୃଷ୍ଟିକୋଣରୁ ବସ୍ତୁର ବର୍ଣ୍ଣନା ଯେପରି ଭାବରେ କରାଯାଇଥାଏ, ଅନ୍ୟ ଏକ ଦୃଷ୍ଟିକୋଣରୁ ସେହି ବସ୍ତୁର ବର୍ଣ୍ଣନା ସମ୍ପୂର୍ଣ୍ଣ ଭିନ୍ନ ଭାବରେ କରାଯାଇପାରେ । ଯଦିଓ ବସ୍ତୁ ମଧ୍ୟରେ ଏହି ସମସ୍ତ ଗୁଣ ବିଦ୍ୟମାନ ତଥାପି ବର୍ତ୍ତମାନ ଆମର ଧ୍ୟାନ ଏହି ଗୁଣ ବା ଧର୍ମ ପ୍ରତି କେନ୍ଦ୍ରିତ ହୋଇଥିବାରୁ ବସ୍ତୁ ଏହି ଭାବରେ ପ୍ରତିଭାତ ହେଉଅଛି; କିନ୍ତୁ ବସ୍ତୁର କେବଳ ଯେ ଗୋଟିଏ ରୂପ ଅଛି ତାହା ନୁହେଁ, ଏହାର ଅନ୍ୟ ଅନେକ ରୂପ ମଧ୍ୟ ଅଛି — ଏହି ସତ୍ୟର ଅଭିବ୍ୟକ୍ତି ନିମିତ୍ତ 'ସ୍ୟାତ୍' ଶବ୍ଦର ପ୍ରୟୋଗ କରାଯାଇଛି । 'ସ୍ୟାତ୍' ଶବ୍ଦର ପ୍ରୟୋଗ ହୋଇଥିବାରୁ ଏହାକୁ 'ସ୍ୟାଦ ବାଦ' କୁହାଯାଏ । ସ୍ୟାଦବାଦକୁ ଅନେକାନ୍ତବାଦ ମଧ୍ୟ କୁହାଯାଏ, କାରଣ ବସ୍ତୁର ଗୁଣ ଅନେକାନ୍ତ ହେତୁ ସ୍ୟାଦ୍‌ବାଦ ଦ୍ୱାରା ତାହାର ବର୍ଣ୍ଣନା କରାଯାଏ ।" ( ୪) । ଅନେକାନ୍ତବାଦ ଦୃଷ୍ଟିରୁ ବିଚାର କଲେ ସ୍ୟାଦ୍‌ବାଦ ସତ୍ୟ ଏବଂ ଯଥାର୍ଥ । ସ୍ୟାଦ୍‌ବାଦ୍ ଦ୍ୱାରା ହିଁ ସତ୍ୟ ଏବଂ ଯଥାର୍ଥ ଜ୍ଞାନ ସମ୍ଭବ ।

ଜୈନ ଦର୍ଶନ ଅନୁଯାୟୀ ପ୍ରତ୍ୟେକ ଜ୍ଞାନ ଅଥବା ବସ୍ତୁର ଗୁଣ ବା ବିଭିନ୍ନ ଦୃଷ୍ଟି-କୋଣରୁ ସାତ ପ୍ରକାର ହୋଇଥାଏ । ଏହି ସାତ ପ୍ରକାର ସମ୍ଭାବନା ମାଧ୍ୟମରେ ବସ୍ତୁ ନିହିତ ଅନେକ ଧର୍ମ ବା ଗୁଣକୁ ଜୈନ ଦାର୍ଶନିକମାନେ ବ୍ୟକ୍ତ କରଥା'ନ୍ତି । ଏହା ସପ୍ତଭଙ୍ଗୀନୟ ନାମରେ ଅଭିହିତ - ସ୍ୟାତ୍ ଅସ୍ତି (It is), ସ୍ୟାତ୍‌ନାସ୍ତି (It is not) ସ୍ୟାତ୍ ଅସ୍ତି ନାସ୍ତି (It is and it is not), ସ୍ୟାତ୍ ଅବକ୍ତବ୍ୟମ (It is indescribable or unpredicable), ସ୍ୟାତ ଅସ୍ତିଚ ଅବକ୍ତବ୍ୟମ୍‌ଚ (It is not and is indescribable or unpredicable), ସ୍ୟାତ୍ ଅସ୍ତିନାସ୍ତିଚ ଅବକ୍ତବ୍ୟଂଚ (It is,is not and is indescrideble or unpredicable), ଅର୍ଥରେ ଏହା ହୋଇପାରେ, ଏହା ନହୋଇପାରେ, ହୁଏତ ଅଛି, ହୁଏତ ନାହିଁ । ଉଦାହରଣ ସ୍ୱରୂପ ଜଣେ ବ୍ୟକ୍ତି ପିତା ହୋଇପାରନ୍ତି, ନହୋଇପାରନ୍ତି । ଏକ ନିର୍ଦ୍ଦିଷ୍ଟ ବାଳକ ସହିତ ତାଙ୍କର ପିତାର ସମ୍ପର୍କ ରହିଛି, ଅନ୍ୟ ଏକ ବାଳକ ସହିତ ତାଙ୍କର ପିତାର ସମ୍ପର୍କ ରହିନାହିଁ । କିନ୍ତୁ ଦୁଇଜଣ ବାଳକଙ୍କୁ ଧରି ବିଚାର କଲେ ସେ ପିତା ଅଟନ୍ତି ଏବଂ ପିତା ନୁହନ୍ତି । ଏକ ହୋଇ ଏହି ହେବା ନହେବା କଥା ଶବ୍ଦରେ ପ୍ରକାଶ କରିହୁଏ ନାହିଁ । ଏଥିପାଇଁ ବିଶ୍ୱବାହାରର ଜୀବନ ଓ ଚିନ୍ତା ବହିର୍ଭୂତ ସଂସାରର ବିବିଧ ବସ୍ତୁକୁ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ଦେଖିଲେ ଆମର ଦୃଷ୍ଟି ପାତ ଉଦାର ହୁଏ ଏବଂ ନାନା ପ୍ରକାର ପ୍ରତିରୋଧ ଦୂରହୁଏ । ସ୍ୟାଦ୍‌ବାଦ ଏହିପରି ଭାବରେ ଅତି ବିଚକ୍ଷଣ ଓ ବିଚିତ୍ର । ଅନେକ ଭାବରେ ଏହାର ଦୃଢ଼ଭୂମି ଗଠିତ । ତେଣୁ ଏହା ଏକ ବସ୍ତୁ ହେଲେ ହେଁ ଅନେକ ଦୃଷ୍ଟିକୋଣରୁ ପରିଲକ୍ଷିତ ହୋଇପାରିବ । (୧୫) ।

ଆତ୍ମର ଜ୍ଞାନ ଅସମ୍ପୂର୍ଣ୍ଣ ବା ଆଂଶିକ ହେଉଥିବାରୁ କୌଣସି ବିଷୟ ଜାଣୁ ବୋଲି ନିର୍ଦ୍ଦିଷ୍ଟ ଭାବରେ ଆମେ କହିପାରିବା ନାହିଁ । "ଜାଣିନାହିଁ" କହିଲେ ନିର୍ଦ୍ଦିଷ୍ଟ ଅର୍ଥ ଜଣାଯାଏ କିନ୍ତୁ "ଜାଣିଅଛୁ" କହିଲି ନିର୍ଦ୍ଦିଷ୍ଟ ଅର୍ଥ ଜଣାଯାଏ ନାହିଁ । ମୁଁ ଗୋପାଳକୁ ଜାଣେ' କହିଲେ ଗୋପାଳର ବୟସ, ଯୋଗ୍ୟତା, ବୁଦ୍ଧି, ଚରିତ୍ର ପ୍ରଭୃତି ଅନେକ କଥାରୁ କେତୋଟି ଜାଣେ ତାହା କେହି ବୁଝିପାରିବେ ନାହିଁ । ଏଣୁ ବସ୍ତୁ ସତ୍ କି ଅସତ୍, ନିତ୍ୟ କି ଅନିତ୍ୟ, ଭିନ୍ନ କି ଅଭିନ୍ନ, ଭାବ କି ଅଭାବ, ବକ୍ତବ୍ୟ କି ଅବକ୍ତବ୍ୟ; ଅଭାବ ହୋଇଥିବାରୁ ଅବକ୍ତବ୍ୟ କି ଭାବ ହୋଇଥିବାରୁ ବକ୍ତବ୍ୟ, ଭାବ କି ଅଭାବ ଅବକ୍ତବ୍ୟ — ଏପରି କୌଣସି ବିଷୟ ନିର୍ଦ୍ଦିଷ୍ଟ ଭାବରେ କୁହାଯାଇନପାରେ । ପ୍ରତ୍ୟେକ ଉତ୍ତରରେ "ସ୍ୟାତ୍" ଉପସର୍ଗ ଅର୍ଥାତ୍ "କୌଣସି ପ୍ରକାରେ" ଯୋଗ କରିବାକୁ ହେବ । ଯଦି କେହି ପ୍ରଶ୍ନ କରେ "କଞ୍ଚା ଆମ୍ବ ଖଟା, ପାଚିଲା ଆମ୍ବ ମିଠା । ଆମ୍ବର ପ୍ରକୃତ ସ୍ୱାଦ କ'ଣ ? ଅବସ୍ଥା ଭେଦରେ ଆମ୍ବର ସ୍ୱାଦ ଭିନ୍ନ । ନିର୍ଦ୍ଦିଷ୍ଟ ଲକ୍ଷଣ କପରି କୁହାଯିବ ? ଆମ୍ବର କେତେକ ଲକ୍ଷଣ ଅପରିବର୍ତ୍ତିତ । କୌଣସି ପ୍ରକାରେ କଞ୍ଚା ଆମ୍ବ ଓ ପାଚିଲା ଆମ୍ବ ଏକ । କିନ୍ତୁ ସ୍ୱାଦର ବିଭିନ୍ନତା ଯୋଗୁଁ ଏକ କହିହେବ ନାହିଁ । କୌଣସି ପ୍ରକାରେ କଞ୍ଚା ଆମ୍ବ ପାଚିଲା ଆମ୍ବଠାରୁ ଭିନ୍ନ । କିନ୍ତୁ ଗୋଟିଏ ବୃକ୍ଷରେ ଫଳିଥିବା ଆମ୍ବର କେବଳ ସ୍ୱାଦ ବଦଳି ଥିବାରୁ ଭିନ୍ନ କହିହେବ ନାହିଁ । କୌଣସି ପ୍ରକାରେ ଖଟା ଓ ମିଠା ଏକ ହେଲେ, କିନ୍ତୁ ଏକ କହିହେବ ନାହିଁ । ଏହାହିଁ ସ୍ୟାଦ୍‌ବାଦ । ( ୭ ) ।

ସ୍ୟାଦ୍‌ବାଦ ଅଥବା ଅନେକାନ୍ତବାଦ ଅନୁସାରେ ଜୀବ ମୂଳତଃ ଅପରିବର୍ତ୍ତନୀୟ ହେଲେ ମଧ୍ୟ ଗୁଣତଃ ବିଭିନ୍ନ ପରିବର୍ତ୍ତନୀୟ ଅବସ୍ଥା ମଧ୍ୟରେ ଗତି କରେ । ତାହାର ସତ୍ତାରେ ଚିରନ୍ତନତା ଥାଏ ଏବଂ କ୍ଷଣିକତ୍ୱ ମଧ୍ୟ ଥାଏ । କୌଣସି ବସ୍ତୁର ନିତ୍ୟତା, ଅନିତ୍ୟତା, ଏକାତ୍ମତା ଏବଂ ବିଭିନ୍ନତା ସମ୍ବନ୍ଧରେ ଜ୍ଞାନଲାଭ କରିବା ପାଇଁ ସପ୍ତଭଙ୍ଗୀନୟର ସଂଯୋଜନା କରାଯାଇଛି । କାଳାନ୍ତରରେ ଶଙ୍କରାଚାର୍ଯ୍ୟ ଓ ରାମାନୁଜ ଏହି ସିଦ୍ଧାନ୍ତ ଖଣ୍ଡନ କରିଥିଲେ । ଶଙ୍କରାଚାର୍ଯ୍ୟ କହିଥିଲେ—' ସତ୍ ଏବଂ ଅସତ୍ ଭେଦ ଏବଂ ଅଭେଦ ଆଦି ଗୁଣ ଅନ୍ଧକାର ଏବଂ ପ୍ରକାଶ ଭଳି କୌଣସି ଏକ ବସ୍ତୁ ମଧ୍ୟରେ ଏକ ସମୟରେ ବର୍ତ୍ତମାନ ରହିପାରିବେ ନାହିଁ ।" ତାଙ୍କ ମତରେ ଯେଉଁ ବସ୍ତୁ ଅଛି ତାହା କେବେ ରହିବ ନାହିଁ— ଏପରି ମନେ କରିବା ଠିକ୍ ନୁହେଁ । ପ୍ରତ୍ୟେକ ବସ୍ତୁର ଧ୍ରୁବତ ଭାବ ଅଛି ଅଥବା ଅଭାବ ରହିଛି । କିନ୍ତୁ ପ୍ରତ୍ୟେକ ବସ୍ତୁର ଉଭୟ ଭାବ ଓ ଅଭାବ —ଏ ଦୁଇଟି ଅବସ୍ଥା ରହେନାହିଁ ।

## ସପ୍ତତତ୍ତ୍ୱ :

ଜୈନ ଧର୍ମ ମୁଖ୍ୟତଃ ସାତଗୋଟି ବାସ୍ତବତା (Seven Realities) ର ମିମାଂସା ଅଟେ । ସେଗୁଡ଼ିକ ହେଲା — ଜୀବ — ଚୈତନ୍ୟ ଗୁଣ ସମ୍ପନ୍ନ ସତ୍ତା, ଅଜୀବ— ଶରୀର ଆଦି ଜଡ଼ ପଦାର୍ଥ. ଆସ୍ରବ—ଶୁଭାଶୁଭ କର୍ମର ଦ୍ୱାର, କର୍ମ ବନ୍ଧ — ଜୀବ ବା ଆତ୍ମା ଓ କର୍ମର ପାରସ୍ପରିକ ସହଯୋଗ, କର୍ମାଶ୍ରବ ପଥର ପ୍ରତିରୋଧ, ନିର୍ଜରା—ପୂର୍ବସଞ୍ଚିତ କର୍ମର ବିନାଶ ଏବଂ ମୋକ୍ଷ— କର୍ମ ଓ ପୁନର୍ଜନ୍ମ ସମ୍ଭାବନାର ଆତ୍ମାର ମୁକ୍ତି ଅଥବା ଜୀବର

ଅଜ୍ଞାବଠାରୁ ମୁକ୍ତ । ଜୀବ ଏବଂ ଅଜୀବ ପରସ୍ପର ସଂସ୍ପର୍ଶରେ ଆସି ଯେଉଁ ଶକ୍ତି ସଞ୍ଚାର କରନ୍ତି ତାହା, ଜନ୍ମ, ମୃତ୍ୟୁ ତଥା ଜୀବନ କାଳରେ ଲବ୍ଧ ବିଭିନ୍ନ ଅନୁଭୂତ ଗୁଡ଼ିକର କାରଣ ହୋଇଥାଏ । ଏହି ପ୍ରଣାଳୀର ବିରୋଧୀକରଣ ତଥା ଏକ ଶୃଙ୍ଖଳିତ ପନ୍ଥା ଦ୍ୱାରା ସଞ୍ଚାରିତ ଶକ୍ତିର ବିନାଶ ଘଟି ମୋକ୍ଷ ପ୍ରାପ୍ତି ହୋଇଥାଏ । ଏଥିରୁ ଜୈନ ଧର୍ମରେ ନିହିତ ସାତଗୋଟି ଦାର୍ଶନିକ ତତ୍ତ୍ୱର ସୂଚନା ମିଳେ । ଏହି ସପ୍ତତତ୍ତ୍ୱ ହେଲା—୧] ଜୀବ ତତ୍ତ୍ୱ, ୨] ଅଜୀବ ତତ୍ତ୍ୱ, ୩] ଜୀବ ଓ ଅଜୀବ ପରସ୍ପର ସଂସ୍ପର୍ଶରେ ଆସନ୍ତି, ୪] ଏହି ସଂସ୍ପର୍ଶ ଶକ୍ତି ଉତ୍ପନ୍ନ କରେ, ୫] ଏହି ସଂସ୍ପର୍ଶର ନିରୋଧ କରାଯାଇପାରିବ, ୬] ସଞ୍ଚିତ ଶକ୍ତିକୁ ଧ୍ୱଂସ କରାଯାଇପାରିବ ଏବଂ ଅବଶେଷରେ ୭] ଏପରି ଜୀବନରେ ନିର୍ବାଣ ଲାଭ ହୋଇ-ପାରିବ । (୨୭) ।

## ଜୈନ ଧର୍ମର ଅନ୍ୟ କେତେକ ବିଶେଷତ୍ୱ :

ପଞ୍ଚପରମେଷ୍ଠିନଙ୍କୁ ଆରାଧନା କଲେ ଆତ୍ମା ପରମାତ୍ମା ପ୍ରାପ୍ତ ହୁଏ ବୋଲି ଜୈନମାନେ ବିଶ୍ୱାସ କରନ୍ତି । ପଞ୍ଚପରମେଷ୍ଠିନ ହେଲେ—ଅର୍ହତ (୨୪ ତୀର୍ଥଙ୍କର), ସିଦ୍ଧ (ମୋକ୍ଷପ୍ରାପ୍ତ ଆତ୍ମା), ଆଚାର୍ଯ୍ୟ (ମୋକ୍ଷମାର୍ଗ ପ୍ରଦର୍ଶକ),ଉପାଧ୍ୟାୟ (ଜ୍ଞାନ ଦାତା) ଏବଂ ସାଧୁ (ଭିକ୍ଷୁ) । ପ୍ରତ୍ୟେକ ପରମେଷ୍ଠୀଙ୍କ ନିମନ୍ତେ ସ୍ୱତନ୍ତ୍ର ମନ୍ତ୍ର ଓ ପୂଜା ପଦ୍ଧତିର ବିଧାନ ରହିଛି । ଜୈନମାନେ ଦୀପାବଳୀ, ଶାରଦ ପୂଜା, ଲକ୍ଷ୍ମୀ ପୂଜା, ଜ୍ଞାନ ପଞ୍ଚମୀ, ସିଦ୍ଧଚକ୍ର ପୂଜା, ମକର ସଂକ୍ରାନ୍ତି ପ୍ରଭୃତି ହିନ୍ଦୁ ପର୍ବପର୍ବାଣୀ ମଧ୍ୟ ପାଳନ କରନ୍ତି ।

ଜୈନ ଧର୍ମରେ ଅନୁସୃତ ବିଭିନ୍ନ ବ୍ରତ ମଧ୍ୟରେ 'ପର୍ଯ୍ୟୁଷଣ' ବ୍ରତ ଉଲ୍ଲେଖ-ଯୋଗ୍ୟ । ଏହି ବ୍ରତ ହେଉଛି ଆତ୍ମ ସ୍ୱରୂପରେ ଅଟଳ ରହିବ । 'ପର୍ଯ୍ୟୁଷଣ' ବ୍ରତର ସାର-କଥା ହେଲା— କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ, ଦ୍ୱେଷ ଆଦି ବିକାର ପରିହାର ପୂର୍ବକ ଶୁଦ୍ଧ ବୃତ୍ତ, ନିର୍ବିକାର ସଚ୍ଚିଦାନନ୍ଦ ଲାଭ । ତ୍ୟାଗ ଓ ଆତ୍ମସଂଯମ ଉପରେ ପର୍ଯ୍ୟୁଷଣ ବ୍ରତର ସାଫଲ୍ୟ ନିର୍ଭର କରେ । ଅନ୍ୟ ଏକ ବ୍ରତ ହେଲା 'ସମ୍ବତ୍ସରୀ' ବ୍ରତ । 'କ୍ଷମା ଯାଚନା' ଏହି ବ୍ରତର ପ୍ରଧାନ କର୍ମ । ଯଦି ଅନ୍ୟ ସହିତ ମନୋମାଳିନ୍ୟ ହୁଏ, ତେବେ ପରସ୍ପର ମଧ୍ୟରେ 'କ୍ଷମା ଯାଚନା' କରିବା ଉଚିତ । 'କ୍ଷମା ଯାଚନା' ଉପରେ ଜୈନ ଧର୍ମ ଶାସ୍ତ୍ରର ବ୍ୟାଖ୍ୟାନ ହେଲା— "ମୁଁ ସମସ୍ତ ଜୀବଙ୍କ ଠାରେ କ୍ଷମା ପ୍ରାର୍ଥନା କରୁଅଛି । ମୋତେ ସମସ୍ତ ଜୀବ କ୍ଷମାଦାନ କରନ୍ତୁ । ମୁଁ କାହାର ଅମଙ୍ଗଳ ଚାହିଁବି ନାହିଁ । ସମସ୍ତଙ୍କ ସହିତ ମୋର ମିତ୍ରତା ରହୁ" । [୨୮] ।

ଜୈନ ଅଷ୍ଟମଙ୍ଗଳକରୁ ହିନ୍ଦୁ ଧର୍ମର ଅଷ୍ଟମଙ୍ଗଳ ଆନୀତ ବୋଲି କେତେକ ମତ ବ୍ୟକ୍ତ କରନ୍ତି । ୨୯ । ଜୈନମାନଙ୍କର ଅଷ୍ଟମଙ୍ଗଳକ ହେଲା --ସ୍ୱସ୍ତିକ, ଶ୍ରୀବତ୍ସ, ନନ୍ଦ୍ୟାବର୍ତ୍ତ, କଳ୍ପବୃକ୍ଷ, ଭଦ୍ରାସନ, କଳଶ, ମତ୍ସ୍ୟ ଓ ଦର୍ପଣ ଅଥବା ମୃଗରାଜ, ବୃଷ, ନାଗ, କଳଶ, ବ୍ୟଜନ, ବୈଜୟନ୍ତୀ, ଭେରୀ ଓ ଦୀପ ଅଥବା ବ୍ରାହ୍ମଣ, ଗୌ ହୁତାଶନ, ହିରଣ୍ୟ, ଘୃତ, ଆଦିତ୍ୟ, ଆପ ଓ ରାଜା ।

**ଜଳଶ**, ବ୍ୟଜନ, ବୈଜୟନ୍ତ, ଭେଷ ଓ ଦୀପ ଅଥବା ବ୍ରାହ୍ମଣ, **ଗୌ**, ହୂତାଶନ, ହିରଣ୍ୟ, ଘୃତ, ଆଦିତ୍ୟ, ଆପ ଓ ରାଜା ।

ନ୍ୟାୟ ଓ ବୈଶେଷିକ ଦର୍ଶନରେ ଯଜ୍ଞ ପ୍ରଭୃତି ବୈଦିକ ଅନୁଷ୍ଠାନର ପ୍ରୟୋଜନୀୟତା ସ୍ୱୀକାର କରାଯାଇଛି । ଜୈନଧର୍ମରେ ତାହା ସ୍ୱୀକୃତ ହୋଇନାହିଁ । ତେଣୁ **ଆସ୍ତିକମାନେ ଜୈନମତକୁ ନାସ୍ତିକ କହନ୍ତି** । (୩୦) ।

ଜୈନ ଧର୍ମରେ ସାମ୍ୟ ବା ସମତା ଥିଲା ଏକ ମୁଖ୍ୟ ଅନୁଶାସନ । ଜୈନମତରେ ମନୁଷ୍ୟର ଜାତି-ବର୍ଣ୍ଣ ଜନ୍ମ ଅନୁସାରେ ନୁହେଁ, କର୍ମ ଅନୁସାରେ । ମହାବୀର ଜାତି ପ୍ରଥାର ବିରୋଧ କରିଥିଲେ । ସୋଽହଂଭାବ ବିଚାର' ସତ୍ୟର ପ୍ରଚାର କରିଥିଲେ । ନାରୀ ଜାତିର ବିକାଶ ଓ ସ୍ୱାଧୀନତା ସପକ୍ଷରେ ଏବଂ ଦାସତ୍ୱ ପ୍ରଥା ବିରୁଦ୍ଧରେ ଜୈନମାନେ ସ୍ୱର ଉତ୍ତୋଳନ କରିଥିଲେ ।

ଜୈନଧର୍ମ ସମ୍ପର୍କରେ ପ୍ରସିଦ୍ଧ ଜୈନତତ୍ତ୍ୱବିତ୍ **J.L.Jainy**ଙ୍କ ମନ୍ତବ୍ୟ ଉଲ୍ଲେଖଯୋଗ୍ୟ । ସେ କହନ୍ତି—"**Jainism more than any other creed gives absolute freedon to man.. Nothing can intervene between the actions which we do and fruits thereof. Once done,they become our masters and must fruetify, As my independence is great so my responsibility is co-extensive with it. I can live as I like,but my choice is irrevocable and I cannot forego the consequences of it. This principle distinguishes Jainism from other religions, for example, christianity, muhammadanism, Hinduism. No God, or His prophet or Deputy or Beloved can interfere with human life.The soul and it alone,is directly and necessarily responsible for all that is oes.**" ଅର୍ଥାତ୍ ଜୈନଧର୍ମ ମନୁଷ୍ୟକୁ ପୂର୍ଣ୍ଣ ସ୍ୱାଧୀନତା ଦେଇଛି । ଏହା ଅନ୍ୟ କୌଣସି ଧର୍ମରେ ନାହିଁ । ଆମେ ଯେଉଁ କର୍ମ କରୁ ଓ ସେଇ କର୍ମର ଫଳ ଏ ଦୁଇଟି ମଧ୍ୟରେ ଆଉ କିଛି ରହିନପାରେ । ଥରେ କରିହେଲେ ସେମାନେ (ସେହି କର୍ମମାନେ) ହୁଅନ୍ତି ଆମର ନିୟନ୍ତା (ପ୍ରଭୁ) । ସବୁର ଫଳ ନିଶ୍ଚୟ ଫଳିବ । ଯେପରି ମୋର ସ୍ୱାଧୀନତା ଅତି ଉଚ୍ଚ ଓ ମହତ୍ ସେଇପରି ମୋର ଦାୟିତ୍ୱ ମଧ୍ୟ ତା ସଙ୍ଗେ ସମାନ ମୂଲ୍ୟବାନ । ମୁଁ ଯେପରି ଇଚ୍ଛା ସେପରି ଜୀବନଯାପନ କରିପାରେ । କିନ୍ତୁ ଥରେ ବାଟ ବାଛି ନେଲେ ଆଉ ଫେରିବାର ଉପାୟ ନାହିଁ । ଏ ମତ ସିଦ୍ଧାନ୍ତ ଅଲଙ୍ଘ୍ୟ । ମୁଁ ଏହାର ଫଳଭୋଗ ଲଙ୍ଘି ପାରିବିନାହିଁ । ମୁଁ ସେ କର୍ମ ବାଛି ନେବାର ଫଳକୁ ଅନ୍ୟଥା କରିପାରିବି ନାହିଁ । ଏଇ ନୀତି, ଜୈନଧର୍ମକୁ ଅନ୍ୟାନ୍ୟ ଧର୍ମମାନଙ୍କ ଠାରୁ, ଯଥା :— ଖ୍ରୀଷ୍ଟଧର୍ମ, ମୁସଲମାନ ଧର୍ମ ଓ ହିନ୍ଦୁ ଧର୍ମରୁ ବାରି

ହୋଇଛି । କୌଣସି ଈଶ୍ୱର ବା ତାଙ୍କର ଅବତାର କିମ୍ବା ତାଙ୍କ ସ୍ଥଳାଭିଷିକ୍ତ କିମ୍ବା ତାଙ୍କ ପ୍ରିୟ (ପୁତ୍ର ବା ପୟଗମ୍ବର) କେହି ମାନବଜୀବନରେ ହସ୍ତକ୍ଷେପ କରିପାରିବେ ନାହିଁ । କେବଳ ଆତ୍ମା ଓ ଏହି ଆତ୍ମା ଏକା ସାକ୍ଷାତ୍ ଭାବରେ ଯେ ଯାହା କରୁଛି, ସେଥିପାଇଁ ଦାୟୀ ।" (୩୨) ।

ଏହିପରି ବିଭିନ୍ନ ତତ୍ତ୍ୱ, ଦାର୍ଶନିକ ସିଦ୍ଧାନ୍ତ, ଏବଂ ଆଦର୍ଶ ଉପରେ ଜୈନଧର୍ମ ଆଧାରିତ । ଜୈନଧର୍ମର ମୂଳତତ୍ତ୍ୱ ହେଲା—ଶାନ୍ତି,ସୌହାର୍ଦ୍ଦ୍ୟ,ତ୍ୟାଗ,ଆତ୍ମ ଅବଲମ୍ବନ, ସତ୍ୟ, ଅହିଂସା, ଜିତେନ୍ଦ୍ରିୟତା, ବ୍ରହ୍ମଚର୍ଯ୍ୟ, କଠୋର ତପଶ୍ଚରଣ, ଆତ୍ମ ସଂଯମ, ଆତ୍ମ ସମୀକ୍ଷା, ବାକ୍ ସଂଯମ, ଭାବଶୁଦ୍ଧି, ଶୃଙ୍ଖଳା, ବିନମ୍ର ସେବା, ପଠନ, ଧ୍ୟାନ,କର୍ମ ବନ୍ଧନରୁ ମୁକ୍ତି, ନିଷ୍କାମ ଜୀବନ ଯାତ୍ରା ଏବଂ ମୋକ୍ଷ ପ୍ରାପ୍ତି ନିମନ୍ତେ ଉଦ୍ୟମ । (୩୩) । ଦୟା ଓ ଅନୁକମ୍ପା ଉପରେ ଜୈନଧର୍ମ ପ୍ରତିଷ୍ଠିତ । ଧାର୍ମିକ, ଆଧ୍ୟାତ୍ମିକ, ଦାର୍ଶନିକ, ବୌଦ୍ଧିକ ଏବଂ ବ୍ୟବହାରିକ ଦୃଷ୍ଟିକୋଣରୁ ଜୈନଧର୍ମ ମାନବ ଜୀବନ ଓ ସମାଜକୁ ଏକ ସମ୍ପୂର୍ଣ୍ଣ ମୁକ୍ତ ପରିବେଶ ମଧ୍ୟରେ ସରସ କରିପାରିଛି ।

## ଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ଜୈନଧର୍ମର ଅବଦାନ :

ଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ଜୈନଧର୍ମର ଅବଦାନ ଉଲ୍ଲେଖନୀୟ । ଜୈନ ଧର୍ମର କଠୋର ଅହିଂସା ନୀତି, ପବିତ୍ର ନୈତିକମୟ ଜୀବନଯାପନ, ଜାତିଭେଦ ବିହୀନ ସମାଜ, ନାରୀ ସ୍ୱାତନ୍ତ୍ର୍ୟ ଆଦି ଆଦର୍ଶ ଏବଂ ବେଦର ଅପୌରୁଷେୟତା, ନିରୀଶ୍ୱରବାଦ, ଅନେକାନ୍ତବାଦ ଅଥବା ସ୍ୟାଦ୍‌ବାଦ, ନିବୃତ୍ତିମାର୍ଗ, ବୈରାଗ୍ୟ, ବୈଦିକ ଯାଗ-ଯଜ୍ଞ ଓ ପୂଜା ପଦ୍ଧତିର ନିଷ୍ଫଳତା, କାୟ-କ୍ଲେଶ ଆଦି ସିଦ୍ଧାନ୍ତ ଭାରତୀୟମାନଙ୍କ ଉପରେ ବହୁଳ ପ୍ରଭାବ ପକାଇ ପାରିଥିଲା । ସୃଷ୍ଟି, ଆତ୍ମା, ଜୀବ,ଅଜୀବ, କର୍ମ, ପୁନର୍ଜନ୍ମ,ନିର୍ବାଣ ଆଦି ଉପରେ ମହାବୀରଙ୍କ ଚିନ୍ତାଧାରା ଭାରତୀୟ ଦର୍ଶନକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ସେ ସମ୍ପର୍କରେ ଅଧିକ ଗବେଷଣ ଓ ଅନୁଶୀଳନ ପାଇଁ ପ୍ରୋତ୍ସାହିତ କରିଥିଲା । ଜୈନ ଦର୍ଶନ ବିଶେଷତଃ ସାଂଖ୍ୟ ଦର୍ଶନ ଓ ନ୍ୟାୟ ଶାସ୍ତ୍ରକୁ କେତେକାଂଶରେ ପ୍ରଭାବିତ କରିଥିଲା । 'ସ୍ୟାଦ୍‌ବାଦ' (Theory of may be) ଜୈନଧର୍ମର ମହତ୍ତ୍ୱପୂର୍ଣ୍ଣ ଦାନ । ଶଙ୍କରାଚାର୍ଯ୍ୟ ଓ ରାମାନୁଜାଚାର୍ଯ୍ୟ ନିଜନିଜର ବଳିଷ୍ଠ ଯୁକ୍ତିଦ୍ୱାରା ସ୍ୟାଦ୍‌ବାଦକୁ ଖଣ୍ଡନ କରିଥିଲେ । ଓଡ଼ିଶାର ଜଗନ୍ନାଥ ସଂସ୍କୃତି (୩୪), ନାଥ ଧର୍ମ (୩୫) ଏବଂ ମହିମା ଧର୍ମ (୩୬) ରେ ଜୈନ ଧର୍ମର ପ୍ରଭାବ ପରିଲକ୍ଷିତ ହୁଏ ।

ଓଡ଼ିଶାର ଜଗନ୍ନାଥ ସଂସ୍କୃତିରେ ଜୈନ ଧର୍ମ ସମେତ ଅନ୍ୟାନ୍ୟ ଧର୍ମ ଓ ସଂସ୍କୃତିର ଏକ ଅପୂର୍ବ ସମନ୍ୱୟ ହୋଇଅଛି । ଜୈନ ଧର୍ମର କେତେକ ଗବେଷକଙ୍କ ମତରେ ଜଗନ୍ନାଥ ସଂସ୍କୃତିରେ ଜୈନ ଧର୍ମର ପ୍ରଭାବ ଅନୁଭୂତ ହୁଏ । ଜଗନ୍ନାଥଙ୍କ ନାମ ଜୈନ ଧର୍ମରୁ ଉଦ୍ଭବ । ଜିନେଶ୍ୱର କିମ୍ବା ତୀର୍ଥଙ୍କରଙ୍କର ଋଷଭଙ୍କ ଅନ୍ୟନାମ ଜଗନ୍ନାଥ ବୋଲି ଅଭିଧାନ ରାଜେନ୍ଦ୍ର (୩୭)ରେ ଲିଖିତ ହୋଇଛି । ଜୈନ ଧର୍ମର ସାମ୍ୟଭାବ, ଜାତିଭେଦ

ପ୍ରଥା ବା ଜାତିଗତ ବିଦ୍ୱେଷର ବିରୋଧ,ଅହିଂସାତ୍ମକ ଯଜ୍ଞ ପଦ୍ଧତି,'ସର୍ବଜୀବଦୟାତ୍ତ୍ୱ'ର ଭାବନା ତଥା କେତେକ ପର୍ବପର୍ବାଣୀର ପ୍ରଭାବ ଜଗନ୍ନାଥ ସଂସ୍କୃତିରେ ପ୍ରତିଫଳିତ ହୋଇଥିବା ଦେଖାଯାଏ । ଜଗନ୍ନାଥଙ୍କୁ ସମର୍ପିତ ଭୋଗ ବା ମହାପ୍ରସାଦକୁ ଜାତି, ବର୍ଣ୍ଣ, ନିର୍ବିଶେଷରେ ସମସ୍ତେ ସେବନ କରିଥା'ନ୍ତି । ଜଗନ୍ନାଥ ମନ୍ଦିରର ପୂଜକ ବା ସେବାୟତ ମାନେ ବ୍ରାହ୍ମଣ ନୁହଁନ୍ତି । ଜଗନ୍ନାଥଙ୍କର ଅନବସର ସମୟରେ ଦୟିତାପତିମାନେ ପୂଜା କରନ୍ତି । ସେମାନେ ଅନାର୍ଯ୍ୟ ଗୋଷ୍ଠୀର । ଜଗନ୍ନାଥ ମନ୍ଦିରର ବିଭିନ୍ନ କାର୍ଯ୍ୟଗୁଡ଼ିକ ନାନା ଜାତି ବା ଶ୍ରେଣୀର ଲୋକମାନେ ନିର୍ବାହ କରନ୍ତି । ଜଗନ୍ନାଥଙ୍କର ରଥଯାତ୍ରା, ସ୍ନାନଯାତ୍ରା, ନବକଳେବର ଆଦି ଉତ୍ସବାନୁଷ୍ଠାନ ଜୈନଧର୍ମ ଦ୍ୱାରା ପ୍ରଭାବିତ । ଆଶାଢ଼ ଶୁକ୍ଳପକ୍ଷର ଦ୍ୱିତୀୟା ଦିନ ଋଷଭନାଥ ଭ୍ରୂଣ ରୂପରେ ତାଙ୍କ ମାତୃ ଗର୍ଭରେ ସଞ୍ଚରିତ ହୋଇଥିଲେ ବୋଲି ଜୈନମାନଙ୍କର ବିଶ୍ୱାସ । ତେଣୁ ଏହି ଦିନ ଋଷଭନାଥଙ୍କ ଚୈତ୍ୟ ଯାତ୍ରା ବା ରଥଯାତ୍ରା ଉତ୍ସବ ଜୈନ-ମାନଙ୍କ ଦ୍ୱାରା ଅନୁଷ୍ଠିତ ହୁଏ । ସେହିପରି ପାରମ୍ପରିକ ଭାବରେ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ଜଗନ୍ନାଥଙ୍କର ରଥଯାତ୍ରା ଉତ୍ସବ ପାଳନ କରାଯାଏ । ଜୈନମାନେ ଏହି ଦିବସଟିକୁ କଲ୍ୟାଣକ ଦିବସ ରୂପେ ମାନ୍ୟ କରନ୍ତି । ଓଡ଼ିଶାରେ ଏହି ଦିନଟିରେ ବାର ଓ ନକ୍ଷତ୍ର ନିର୍ବିଶେଷରେ ସମସ୍ତ ଶୁଭ କାର୍ଯ୍ୟ କରାଯାଇଥାଏ । ଚୈତ୍ର ଶୁକ୍ଳ ଅଷ୍ଟମୀ ଦିନ ଋଷଭନାଥ ଜନ୍ମଗ୍ରହଣ କରିଥିଲେ । ସେହିଦିନ ଭୁବନେଶ୍ୱରରେ ଅଶୋକାଷ୍ଟମୀରେ ରଥଯାତ୍ରା ହୁଏ । ରଥ ଗୁଡ଼ିକର ଗଢ଼ଣ ଜୈନ ଚୈତ୍ୟ ସଦୃଶ । ଜଗନ୍ନାଥଙ୍କ ପରି ଜୈନ ପ୍ରତିମା ମାନଙ୍କର ମଧ୍ୟ ସ୍ନାନ ଯାତ୍ରା ଓ ନବକଳେବର ଉତ୍ସବ ପାଳନ କରାଯାଏ । ଜୈନ ତ୍ରିରତ୍ନ (ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର) କୁ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ତ୍ରିମୂର୍ତ୍ତି ଉଦ୍ଭବ ବୋଲି କେତେକ ମତ ବ୍ୟକ୍ତ କରନ୍ତି । ଶ୍ରୀଜଗନ୍ନାଥଙ୍କ ମନ୍ଦିର ମଧ୍ୟରେ ନବକଳେବର ସ୍ଥାନ କୋଇଲି ବୈକୁଣ୍ଠ ବା କୈବଲ୍ୟ ବୈକୁଣ୍ଠ ରୂପେ ପରିଚିତ । ଜୈନମାନଙ୍କର ସାଧନାର ଉଦ୍ଦେଶ୍ୟ କୈବଲ୍ୟ । ଜଗନ୍ନାଥଙ୍କର ମହାପ୍ରସାଦ କୈବଲ୍ୟ ରୂପେ ସମ୍ମାନିତ । ଏହି ମହାପ୍ରସାଦ ସେବନ କଲେ ଭକ୍ତମାନେ କେବଳ ଜ୍ଞାନ ବା ମୋକ୍ଷ ଲାଭ କରନ୍ତି ବୋଲି ବିଶ୍ୱାସ ରହିଛି । ଏଥିରୁ ଜୈନ କେବଳ ଜ୍ଞାନର ପ୍ରଭାବ ସୂଚିତ ହୁଏ । ଋଷଭନାଥଙ୍କ ଲାଞ୍ଛନ ଧର୍ମଚକ୍ର । ଏହା ସହିତ ଜଗନ୍ନାଥଙ୍କ ନୀଳଚକ୍ରର ସମ୍ପର୍କ ରହିଛି । ରାଜସ୍ଥାନର ମାଉଣ୍ଟ ଆବୁ ଏବଂ ଓଡ଼ିଶାର କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଉପଖଣ୍ଡ ଅନ୍ତର୍ଗତ ପୋଡ଼ାସିଙ୍ଗିଡ଼ି ସମେତ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଋଷଭଦେବଙ୍କ ମୂର୍ତ୍ତି ପୂଜା ପୀଠ ଚକ୍ରକ୍ଷେତ୍ର ନାମରେ ଖ୍ୟାତ । ଶ୍ରୀଜଗନ୍ନାଥଙ୍କ ପୀଠ ପୁରୀ ମଧ୍ୟ ଚକ୍ରକ୍ଷେତ୍ର ନାମରେ ପ୍ରସିଦ୍ଧ ।

ନାଥ ଧର୍ମରେ ଜୈନଧର୍ମର ପ୍ରଭାବ ପରିଲକ୍ଷିତ ହୁଏ । ନାଥ ଧର୍ମର ପ୍ରଧାନ ଉପାସନା ମାର୍ଗ ହେଉଛି ଯୋଗ । ଜୈନ ତୀର୍ଥଙ୍କରଙ୍କ ପରି ନାଥଧର୍ମର ସିଦ୍ଧସାଧକମାନେ ନିଜ ନିଜର କୌଳିକ ଉପାଧି ପରିବର୍ତ୍ତେ 'ନାଥ' ଉପାଧିରେ ଭୂଷିତ ହୋଇଥାନ୍ତି । ନାଥ ଧର୍ମରେ ଜାତି ବା ବର୍ଣ୍ଣର ବିଚାର ନାହିଁ ।

ସତ୍ୟ, ଅହିଂସା, ବ୍ରହ୍ମଚର୍ଯ୍ୟ, ନିଷ୍କାମ, ଭକ୍ତି, ତ୍ୟାଗ, ପବିତ୍ରତା, ସର୍ବଜୀବ କଲ୍ୟାଣ, ସମତା, ଶାନ୍ତି, ଶୀଳ, ଦୟା,କ୍ଷମା ଆଦି ଜୈନ ଧର୍ମରେ ଆଚରିତ ମାର୍ଗ ମହିମା ଧର୍ମରେ ପ୍ରତିଫଳିତ । ଜୈନଧର୍ମ ସଦୃଶ ମହିମା ଧର୍ମ ଏକ ଜାତିହୀନ ସମାଜରେ ବିଶ୍ୱାସ କରେ । ମହିମା ଧର୍ମାବଲମ୍ବୀମାନେ କୌପୀନ ପରିଧାନ କରିଆନ୍ତି । ମହିମା ଧର୍ମରେ କଠୋର ଆତ୍ମ ସଂଯମ, ଯୌନ ଲାଳସାର ଦମନ, ସେବା-ଶୁଶ୍ରୂଷା, ସ୍ୱଳ୍ପ ପୋଷାକ ପରିଧାନ, ସୂର୍ଯ୍ୟାସ୍ତ ପରେ ଭୋଜନ ନିଷେଧ, ମୃତ ଦେହକୁ କବର ଦେବା ଆଦି ଉପରେ ଗୁରୁତ୍ୱ ଦିଆଯାଇଛି । ଏଥିରୁ ମହିମା ଧର୍ମରେ ଜୈନଧର୍ମର ପ୍ରଭାବ ବିଦିତ ହୁଏ । (୩୮)

ଭାଷା, ସାହିତ୍ୟ ଓ କଳା କ୍ଷେତ୍ରରେ ଜୈନଧର୍ମର ଅବଦାନ ମହତ୍ତ୍ୱପୂର୍ଣ୍ଣ । ପ୍ରାଚୀନ ଭାରତର ଇତିହାସ, ପରମ୍ପରା, ସଂସ୍କୃତି, ଦର୍ଶନ, ଭୂଗୋଳ ଗଣିତ, ଜ୍ୟୋତିଷ, ବିଜ୍ଞାନ ଆଦି ବହୁ ବିଷୟ ଜୈନ ସାହିତ୍ୟରୁ ଜ୍ଞାତ ହୁଏ । ବହୁ ଜୈନ ବିଦ୍ୱାନ , ଦାର୍ଶନିକ ଓ ସାହିତ୍ୟିକ ପ୍ରାକୃତ ଓ ଅପଭ୍ରଂଶ ଭାଷାରେ ଚୌପାଇ ଓ ଦୋହା ଶୈଳୀରେ ଗ୍ରନ୍ଥମାନ ରଚନା କରିଥିଲେ । ସେମାନଙ୍କ ମଧ୍ୟରେ ହେମଚନ୍ଦ୍ର ପ୍ରଧାନ । ତାଙ୍କ ପ୍ରଣୀତ ଗ୍ରନ୍ଥ ଗୁଡ଼ିକ ମଧ୍ୟରେ 'ସିଦ୍ଧ ହେମ ଶବ୍ଦାନୁଶାସନ' 'ଛନ୍ଦାନୁଶାସନ' 'ପରିଶିଷ୍ଟ ପର୍ବନ୍' ଆଦି ଉଲ୍ଲେଖ-ଯୋଗ୍ୟ । କ୍ରମଶଃ ଅପଭ୍ରଂଶରୁ ହିନ୍ଦୀ, ମରାଠୀ, ଗୁଜରାଟୀ ଆଦି ଭାଷାର ବିକାଶ ହୋଇଥିଲା । ମହାବୀର ଅର୍ଦ୍ଧମାଗଧୀ ଭାଷାରେ ଧର୍ମ ପ୍ରଚାର କରିଥିଲେ । ତାହା ସରଳ ତଥା ଲୌକିକ ଭାଷା ଥିବାରୁ ଜନସାଧାରଣଙ୍କ ପାଇଁ ମହାବୀରଙ୍କ ଧର୍ମମତ ବୋଧଗମ୍ୟ ହୋଇପାରିଲା । ଏହାର ପ୍ରଭାବରେ ହିନ୍ଦୁଧର୍ମକୁ ମଧ୍ୟ ସରଳ ଭାଷାରେ ବୁଝାଇବାର ଉଦ୍ୟମ ଆରମ୍ଭ ହେଲା । ମହାବୀରଙ୍କ ଧର୍ମମତ ଅର୍ଦ୍ଧମାଗଧୀ ଭାଷାରେ ୧୨ଟି ଗ୍ରନ୍ଥରେ ସଙ୍କଳିତ ହୋଇଥିଲା । ସେହି ଗ୍ରନ୍ଥ ଗୁଡ଼ିକୁ ସୂତ୍ରାଙ୍ଗ କୁହାଯାଏ । ତା'ଛଡ଼ା ସଂସ୍କୃତ ଭାଷାରେ ମଧ୍ୟ କେତେକ ଜୈନ ଗ୍ରନ୍ଥ ରଚିତ ହୋଇଥିଲା । ଜିନସେନ, ଗୁଣଭଦ୍ର, ପୁଷ୍ପଦନ୍ତ, ସୋମଦେବ ଆଦି ପ୍ରତିଷ୍ଠିତ ଆଚାର୍ଯ୍ୟ ଗଣ ସଂସ୍କୃତ, ପ୍ରାକୃତ, ଅପଭ୍ରଂଶ ଓ କନ୍ନଡ଼ ଭାଷାରେ ବହୁ ଉଚ୍ଚ-କୋଟୀର ସାହିତ୍ୟ ରଚନା କରିଥିଲେ । ଦକ୍ଷିଣ ଭାରତରେ ଜୈନ ବିଦ୍ୱାନ୍‌ମାନେ ତାମିଲ୍ ଓ କନ୍ନଡ଼ ଭାଷାରେ ବହୁ ଗ୍ରନ୍ଥ ରଚନା କରିଥିଲେ । ତାମିଲ୍ ଭାଷାରେ ରଚିତ ଜୀବକ ଚିନ୍ତାମଣି, ପଞ୍ଚନେକ୍କିଲ୍‌କନକ୍‌କ ପ୍ରଭୃତି ଗ୍ରନ୍ଥରେ ଜୈନ ଧର୍ମର ପ୍ରଭାବ ପଡ଼ିଛି । କନ୍ନଡ଼ ଭାଷାର ପ୍ରଥମ ଏବଂ ସର୍ବଶ୍ରେଷ୍ଠ କବି ପମ୍ପ ଖ୍ରୀ:ଅ ୯୪୧ ରେ ଆଦି ପୁରାଣ ରଚନା କରିଥିଲେ । ଆଦି ପୁରାଣରେ ପ୍ରଥମ ଜୈନ ତୀର୍ଥଙ୍କର ଋଷଭନାଥଙ୍କ ସମ୍ପର୍କରେ ବହୁ କିମ୍ବଦନ୍ତୀ ରହିଛି । ଦ୍ୱିତୀୟ ତୀର୍ଥଙ୍କର ଅଜିତନାଥଙ୍କ ଜୀବନୀ ଉପରେ 'ଅଜିତ ପୁରାଣ'ନାମକ ଏକ ରନ୍ନ ରଙ୍କ ଦ୍ୱାରା ପ୍ରଣୀତ ହୋଇଥିଲା । ଚାମୁଣ୍ଡରାୟ ୨୪ ତୀର୍ଥଙ୍କର ଓ ୬୪ ଜଣ ଜୈନ ସିଦ୍ଧପୁରୁଷଙ୍କ ଜୀବନୀ ସମ୍ପର୍କରେ ଏକ ପୁରାଣ ପ୍ରଣୟନ କରିଥିଲେ । ଏତଦ୍-ବ୍ୟତୀତ ଗଣିତ ଓ ଜ୍ୟୋତିର୍ବିଜ୍ଞାନ ବିଷୟରେ ମଧ୍ୟ ବହୁ ଜୈନ ଗ୍ରନ୍ଥ ରଚିତ ହୋଇଥିଲା ।

ସେଗୁଡ଼ିକ ମଧ୍ୟରେ 'ସୂର୍ଯ୍ୟ ପ୍ରଜ୍ଞପ୍ତି' 'ଚନ୍ଦ୍ର ପ୍ରଜ୍ଞପ୍ତି' 'ତ୍ରିଲୋକ ପ୍ରଜ୍ଞପ୍ତି' 'ତ୍ରିଲୋକ ସାର' 'ଲୋକ ବିଭାଗ', 'ଜମ୍ବୁଦ୍ୱୀପ-ପ୍ରଜ୍ଞପ୍ତି' ପ୍ରସିଦ୍ଧ । ମହାବୀରାଚାର୍ଯ୍ୟଙ୍କ ଦ୍ୱାରା ପ୍ରଣୀତ 'ଗଣିତ ସାରସଂଗ୍ରହ' ଗଣିତ ଶାସ୍ତ୍ରର ଅନ୍ୟତମ ପ୍ରସିଦ୍ଧ ଗ୍ରନ୍ଥ । ଶ୍ରୀଧରାଚାର୍ଯ୍ୟଙ୍କ ରଚିତ 'ଜ୍ୟୋତିଷ ତିଲକ' ଜ୍ୟୋତିଷ ଶାସ୍ତ୍ରର ଏକ ପ୍ରସିଦ୍ଧ ଗ୍ରନ୍ଥ । ଗଙ୍ଗ ରାଜା ଦୁର୍ବିନୀତ ଏବଂ ତୁମ୍ବୁଲୁରର ବର୍ଦ୍ଧଦେବ, ଶ୍ୟାମ କୁଣ୍ଡାଚାର୍ଯ୍ୟ ପ୍ରଭୃତି ଜୈନ ବିଦ୍ୱାନ୍‌ମାନେ କନ୍ନଡ଼ ଭାଷାରେ ବହୁ ଗ୍ରନ୍ଥ ରଚନା କରି-ଥିଲେ । ପ୍ରସିଦ୍ଧ ଜୈନ ଭିକ୍ଷୁ ସିଦ୍ଧସେନ ପ୍ରାକୃତ ଭାଷାରେ ଜୈନ ଦର୍ଶନ ଉପରେ 'ସମ୍ମତି ତର୍କ ସୂତ୍ର' ନାମକ ଗ୍ରନ୍ଥ ସଙ୍କଳନ କରିଥିଲେ । ଏଥିରେ ତିନୋଟି ଅଧ୍ୟାୟରେ ୧୬୭ଟି ଗାଥା ରହିଛି । କଳ୍ପସୂତ୍ର, ଭଗବତୀ ସୂତ୍ର, ଉତ୍ତରାଧ୍ୟୟନ ସୂତ୍ର, ଆବଶ୍ୟକ ନିର୍ଯ୍ୟୁକ୍ତି, ଜମ୍ବୁ-ଦ୍ୱୀପ ପଣ୍ଣତ୍ତି ପ୍ରଭୃତି ଜୈନ ଗ୍ରନ୍ଥରୁ ପ୍ରାଚୀନ ଭାରତ ତଥା କଳିଙ୍ଗର ଇତିହାସ ପ୍ରଣୟନ ପାଇଁ ବହୁ ମୌଳିକ ତଥ୍ୟ ଓ ଉପାଦାନ ମିଳିଥାଏ ।

ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ଚିତ୍ରକଳା କ୍ଷେତ୍ରରେ ମଧ୍ୟ ଜୈନ ଧର୍ମର ଅବଦାନ ମହାର୍ଘ । ଜୈନ ନିର୍ଗ୍ରନ୍ଥ ଓ ସନ୍ନ୍ୟାସୀଙ୍କ ତପଶ୍ଚର୍ଯ୍ୟାସ୍ଥଳୀ ରୂପେ ଖ୍ୟାତ ଓଡ଼ିଶାର ଉଦୟଗିରି ଓ ଖଣ୍ଡଗିରି, ରାଜସ୍ଥାନର ଆବୁପର୍ବତ (ଦିଲ୍‌ୱାରା) ଯୋଧପୁର ନିକଟବର୍ତ୍ତୀ ରଣକପୁର, ଆନ୍ଧ୍ରପ୍ରଦେଶର ମୁକ୍ତଗିରି, ଗୁଜରାଟର ପଲିଟାନା ଓ ଜୁନାଗଡ, ମହାରାଷ୍ଟ୍ରର ଏଲୋରା, ମଧ୍ୟପ୍ରଦେଶର ଖଜୁରାହୋ ଏବଂ ବିଦିଶା ନିକଟବର୍ତ୍ତୀ ଉଦୟଗିରି, ବିହାରର ପାବାପୁରୀ ଓ ରାଜଗିର୍ ଆଦି ସ୍ଥାନର ଗୁମ୍ଫା, ମନ୍ଦିର ଓ ମୂର୍ତ୍ତି ଜୈନ କଳାର ଉତ୍କୃଷ୍ଟ ନିଦର୍ଶନ । ଗୁଜରାଟର ପଲିଟାନା ଜୈନମାନଙ୍କର ଏକ ପ୍ରସିଦ୍ଧ ଧର୍ମକ୍ଷେତ୍ର । ପଲିଟାନା ଠାରୁ ୧୨ କି.ମି. ଦୂର ସେତ୍ରୁଞ୍ଜି (ସତ୍ରୁଞ୍ଜୟ) ପର୍ବତ ଉପରେ ଏକ ଜୈନ ମନ୍ଦିରରେ ମହାବୀରଙ୍କ ଏକ ପ୍ରକାଣ୍ଡ ମୂର୍ତ୍ତି ରହିଛି । ସମଗ୍ର ମନ୍ଦିରଟି ଧଳା ଓ ଗୋଲାପି ମାର୍ବଲ୍ ପଥରରେ ନିର୍ମିତ । ଦୁଇ ହଜାର ଏକ ପ୍ରସ୍ତରର ପାହାଚ ଚଢ଼ି ଏହି ମନ୍ଦିରକୁ ଯିବାକୁ ହୁଏ । ଏହି ମନ୍ଦିରଟି ଭାରତର ଉତ୍ତମ ଜୈନ ମନ୍ଦିର ରୂପେ ବିବେଚିତ ।

ମଥୁରାର ସ୍ତୂପ ଓ ଜୈନ ମୂର୍ତ୍ତି ଅତ୍ୟନ୍ତ ଚିତ୍ତାକର୍ଷକ । ମଥୁରାର ଜୈନ ସ୍ତୂପଗୁଡ଼ିକ ମଧ୍ୟରେ କଙ୍କାଳିଟିଲା ସ୍ତୂପ ବିଶେଷ ପ୍ରସିଦ୍ଧ । ଏହି ପୁରାତନ ସ୍ତୂପଟି କଙ୍କାଳି ପର୍ବତ ନାମରେ ବିଦ୍ୟମାନ । ଏଠାରେ ପ୍ରାପ୍ତ କନିଷ୍କଙ୍କ ଶିଳାଲେଖରୁ ଏହି ସ୍ଥାନ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ଜୈନମାନଙ୍କର ଏକ ପ୍ରଧାନ ପୀଠ ଥିବା ଜଣାଯାଏ । ମାଉଣ୍ଟ ଆବୁ (ଆବୁ ପର୍ବତ) ଠାରେ ବିମଲଶାହ ଓ ତେଜପାଲଙ୍କ ଦ୍ୱାରା ମାର୍ବଲ୍ ନିର୍ମିତ ଆଦିନାଥ ଓ ନେମିନାଥଙ୍କର ମନ୍ଦିର ପୃଥିବୀ ପ୍ରସିଦ୍ଧ ।

ମହୀଶୂରର ଶ୍ରବଣ ବେଲଗୋଲାଠାରେ ଗୋଟିଏ ମାତ୍ର ପ୍ରସ୍ତର ଖଣ୍ଡରେ ନିର୍ମିତ ବିଶାଳ ଗୋମଟେଶ୍ୱର ମୂର୍ତ୍ତି ପୃଥିବୀର ଆଶ୍ଚର୍ଯ୍ୟମାନଙ୍କ ମଧ୍ୟରେ ଅନ୍ୟତମ । ଏହି ମୂର୍ତ୍ତିର ଉଚ୍ଚତା ୧୯.୫ ମିଟର । ୯୮୪ ଖ୍ରୀ ଅ.ରେ ତାହା ଗଙ୍ଗରାଜା ରାଚମଲ୍ଲଙ୍କ ମନ୍ତ୍ରୀ ଚାମୁଣ୍ଡରାୟଙ୍କ ଦ୍ୱାରା

ନିର୍ମିତ ହୋଇଥିଲା । ମହାବୀରଙ୍କ ଏକ ପ୍ରକାଣ୍ଡ ମୂର୍ତ୍ତି ମଧ୍ୟପ୍ରଦେଶର ଇନ୍ଦୋର ଠାରୁ ୧୧୫ କି.ମି. ଦୂରରେ ବରଓ୍ୱାନ ଠାରେ ଦେଖିବାକୁ ମିଳେ । ଓଡ଼ିଶାର ଉଦୟଗିରି ଓ ଖଣ୍ଡଗିରିର ବିଭିନ୍ନ ଗୁମ୍ଫା ଗାତ୍ରରେ ଖୋଦିତ ତୀର୍ଥଙ୍କର ମୂର୍ତ୍ତି ଓ ବହୁ ଜୈନ ପ୍ରତୀକ ଉତ୍କଳୀୟ ସ୍ଥାପତ୍ୟକଳା ଓ ଭାସ୍କର୍ଯ୍ୟର ଉତ୍କର୍ଷ ପ୍ରମାଣିତ କରେ । ତେଣୁ ପୃଥିବୀର ବିଭିନ୍ନ ଦେଶର ଅସଂଖ୍ୟ ପର୍ଯ୍ୟଟକ ଉଦୟଗିରି ଓ ଖଣ୍ଡଗିରି ପରିଦର୍ଶନ କରନ୍ତି । ଭାରତ ବାହାରେ ମଧ୍ୟ ତୁର୍କିସ୍ତାନର ଗୁମ୍ଫା ଗୁଡ଼ିକରେ ଜୈନ ଚିତ୍ର କଳାର ନିଦର୍ଶନ ମିଳେ । [୩୧] ।
ଜୈନମାନେ ଅନେକ ବିହାର [Monastery] ପ୍ରତିଷ୍ଠା କରିଥିଲେ । ତାହା ଜୈନ ଭିକ୍ଷୁମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ହିନ୍ଦୁ ଧର୍ମ ଉପରେ ଏହି ବିହାର ଗୁଡ଼ିକର ଯଥେଷ୍ଟ ପ୍ରଭାବ ପଡ଼ିଥିଲା । ଫଳରେ ହିନ୍ଦୁ ଧର୍ମାବଲମ୍ବୀମାନେ ସେମାନଙ୍କର ସାଧୁ ଓ ସନ୍ନ୍ୟାସୀଙ୍କ ପାଇଁ ବିଭିନ୍ନ ସ୍ଥାନରେ ମଠମାନ ନିର୍ମାଣ କରିଥିଲେ ।

ଜୈନ କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ମାଧ୍ୟମରେ ମହାବୀରଙ୍କ ଧର୍ମବାଣୀ ଚତୁର୍ଦ୍ଦିଗରେ ପ୍ରଚାରିତ ହୋଇପାରିଛି । ଭାରତୀୟ ଶିଳ୍ପକଳା ଓ ଚିତ୍ର ବିଦ୍ୟା ଜୈନ କଳା ଦ୍ୱାରା ପରିବର୍ଦ୍ଧିତ ହୋଇପାରିଛି । ମହାବୀରଙ୍କ ମୃତ୍ୟୁ ପରେ ଜୈନ ଧର୍ମ ବିଭିନ୍ନ ରାଜା ମହାରାଜା ମାନଙ୍କ ପୃଷ୍ଠପୋଷକତାରେ ସମସ୍ତ ଭାରତରେ ବ୍ୟାପ୍ତ ହୋଇଗଲା । ସେମାନଙ୍କ ମଧ୍ୟରେ ମହାପଦ୍ମ ନନ୍ଦ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟ, ଖାରବେଳ, ରାଷ୍ଟ୍ରକୂଟ ରାଜା ଅମୋଘ ବର୍ଷ ଏବଂ ଚତୁର୍ଥ ଇନ୍ଦ୍ର, ଚାଲୁକ୍ୟବଂଶୀୟ ରାଜା ସୋମଦେବ, ସିଦ୍ଧରାଜ ଏବଂ କୁମାରପାଳ ପ୍ରମୁଖ ପ୍ରସିଦ୍ଧ ।

ଜୈନଧର୍ମକୁ ସୁସଂଗଠିତ କରିବା ନିମନ୍ତେ ସମୟେ ସମୟେ ଜୈନ ସମ୍ମିଳନୀ ଆହୂତ ହେଉଥିଲା । ପ୍ରଥମ ମହାସଭା ବା ଜୈନ ସମ୍ମିଳନୀ ଖ୍ରୀ.ପୂ.୩୦୦ରେ ପାଟଳୀପୁତ୍ର ଠାରେ ଅନୁଷ୍ଠିତ ହୋଇଥିଲା । ଲୁପ୍ତ ପ୍ରାୟ ପ୍ରାଚୀନ ପବିତ୍ର ଜୈନ ଗ୍ରନ୍ଥଗୁଡ଼ିକର ପୁନରୁଦ୍ଧାର କରି ସେଗୁଡ଼ିକର ସଙ୍କଳନ କରିବା ଏହି ସମ୍ମିଳନୀର ଲକ୍ଷ୍ୟ ଥିଲା । ଫଳରେ ୧୨ଟି ଅଙ୍ଗ ଗ୍ରନ୍ଥ ସଙ୍କଳିତ ହୋଇଥିଲା । ଏହି ସମୟରେ ଜୈନ ଧର୍ମ ଦିଗାମ୍ବର ଓ ଶ୍ୱେତାମ୍ବର—ଏପରି ଦୁଇଟି ସମ୍ପ୍ରଦାୟରେ ବିଭକ୍ତ ହେଲା । ମହାବୀରଙ୍କ ମୃତ୍ୟୁର ୮୨୭ ଅଥବା ୮୪୦ ବର୍ଷପରେ ଉତ୍ତର ପ୍ରଦେଶର ମଥୁରା ଏବଂ ଗୁଜରାଟର ବଲଭି ଠାରେ ଏପରି ଦୁଇଟି ସ୍ଥାନରେ ଦ୍ୱିତୀୟ ଜୈନ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ମଥୁରା ଜୈନ ସଭାର ଅଧ୍ୟକ୍ଷ ଥିଲେ ଆର୍ଯ୍ୟ ସ୍କନ୍ଦିଲ ଏବଂ ନାଗାର୍ଜୁନ ସୁରି ଥିଲେ ବଲଭି ଜୈନ ସଭାର ଅଧ୍ୟକ୍ଷ। ଏହି ସମୟରେ ଜୈନ ଧର୍ମରେ ଅନେକ ମତଭେଦର ସୂତ୍ରପାତ ହୋଇଥିଲା । ସେ ସବୁର ସମାଧାନ ପାଇଁ ଦେବର୍ଦ୍ଧି କ୍ଷମଣ ଶର୍ମଣଙ୍କ ସଭାପତିତ୍ୱରେ ବଲଭି ଠାରେ ତୃତୀୟ ଜୈନ ସଭା ମହାବୀରଙ୍କ ମୃତ୍ୟୁର ୯୮୦ କିମ୍ବା ୯୯୩ ବର୍ଷପରେ ଅନୁଷ୍ଠିତ ହୋଇଥିଲା । ଏହି ଜୈନ ମହାସଭା ଗୁଡ଼ିକର ପରିଣାମ ସ୍ୱରୂପ ଜୈନ ଆଗମ [ଧର୍ମ ଗ୍ରନ୍ଥ] ସଙ୍କଳିତ, ସଂଶୋଧିତ ଏବଂ ସମୃଦ୍ଧ ହୋଇପାରିଥିଲା ।

ଜୈନ ଧର୍ମ ବାହ୍ୟ କର୍ମକାଣ୍ଡର ବରୋଧ କରି ଅନ୍ତଃ ଶୁଦ୍ଧି ଉପରେ ଗୁରୁତ୍ୱାରୋପ କରିବା ଦ୍ୱାରା ଦେଶରେ ନୈତିକତା, ସାଧୁତା ତଥା ଅହିଂସା ଆଦି ସଦ୍‌ଗୁଣ ଉଦ୍‌ବୃଦ୍ଧ ହୋଇଲା ।

ଏକ ଅତି କଠୋର ଓ ତ୍ୟାଗପୂର୍ଣ୍ଣ ଧର୍ମ ହୋଇଥିଲେ ମଧ୍ୟ ଜୈନ ଧର୍ମ ପ୍ରାଚୀନ କାଳରେ ଜନ ସାଧାରଣଙ୍କୁ ଆକୃଷ୍ଟ କରିପାରିଥିଲା । ଏକଦା ପୂର୍ବ ଭାରତରେ ତାହା ବ୍ୟାପି ଯାଇଥିଲା । କିନ୍ତୁ ଜୈନ ଧର୍ମ ସ୍ୱୀୟ ତତ୍ପରତା ଦେଖି ବୌଦ୍ଧ ଧର୍ମ ସଦୃଶ ବହୁ ଲୋକଙ୍କୁ ଆକୃଷ୍ଟ କରିପାରିଲା ନାହିଁ । ତଥାପି ଜୈନମାନେ ଏବେ ମଧ୍ୟ ରାଜସ୍ଥାନ ଗୁଜରାଟ,ମହାରାଷ୍ଟ୍ର, ମଧ୍ୟ ପ୍ରଦେଶ, ଉତ୍ତର ପ୍ରଦେଶ ଏବଂ ପଶ୍ଚିମ ବଙ୍ଗ ଅଞ୍ଚଳରେ ବହୁ ସଂଖ୍ୟାରେ ବାସ କରନ୍ତି । ବୌଦ୍ଧ ଧର୍ମ ଅନୁରୂପ ଜୈନଧର୍ମ ଭାରତ ବାହାରେ ପ୍ରସାର ଲାଭ କରିବ ପାରିଲେ ମଧ୍ୟ ତାହା ଆମ ଦେଶରେ ଏକ ପ୍ରଭାବଶାଳୀ ଧର୍ମ ରୂପେ ବିଦ୍ୟମାନ । ଅଧୁନା ପୃଥିବୀର ପ୍ରଧାନ ଧର୍ମ ମାନଙ୍କ ମଧ୍ୟରେ ଜୈନଧର୍ମ ଅନ୍ୟତମ ଏବଂ ଭାରତ ତଥ ବିଶ୍ୱ ଇତିହାସରେ ତାହାର ସ୍ଥାନ ଅତୀବ ମହତ୍ତ୍ୱପୂର୍ଣ୍ଣ ।

**ପାଦଟୀକା :**

୧. H Jacobi,Sacred Books of the East, XLV, PP.XX XXIII, H.Zimmer,Philosophy of India, PP 217-227

୨. J. Marshall. Mohenjodaro and Indus civilization, plate XII. Figures 13, 14,15, 19 and 22. G.C.Pandey studies in the origin of Buddhism M. P. 314.

୩. Sir Mortimore wheeler, Civilization of Indus valley and beyond,PP 40.44.

୪. ମୁଣ୍ଡକ ଉପନିଷଦ, ୧.୨.୭; Sacred Books of the East, The Upanishadas,Part II,P,31.

୫. ଅଶୋକକୁମାର ରଥ, 'ଉପନିଷଦର ଧର୍ମ ଓ ଆଧୁନିକ ଦୃଷ୍ଟିକୋଣ', ଉତ୍ତର. ୨୭ ବର୍ଷ, ୧୦ମ ସଂଖ୍ୟା, ଏପ୍ରିଲ ୧୯୭୫, ପୃ ୨୧-୨୨

୬. S. Radhakrishna, Indian Philosophy, vol. I, P. 148 and P. 361, (Allen, 1922).

୭. ଭଗବତ ଦଶା ଓ, ଦ୍ୱିତୀୟ ଅଧ୍ୟାୟ, ସୂ. ୪;
ଭଗବତୀ ସୂତ୍ର, ୨୫.୧.

୮. B. M. Barua, A history of Pre-Buddhist Indian Philosophy, P.279, ସୂତ୍ରକୃତାଙ୍ଗ ୧.୧. ୧୮

୯ H Jacobi, Sacred Books of the East, vol.xlv, P. 341.

୧୦. ସାମନ୍ନଫଳ ସୁତ୍ର, ଦଘ୍ନିକାୟ,ପ୍ରଥମ ଅଧ୍ୟାୟ ପୃ ୪୪.
୧୧. ସୂତ୍ରକୃତାଙ୍ଗ, ପ୍ରଥମ ଅଧ୍ୟାୟ, ପୃ ୧୫-୧୬
୧୨. ସୂତ୍ର କୃତାଙ୍ଗ (ସୂତ୍ରକୃତାଙ୍ଗ) ୨, ୭. ୩୯; ଉତ୍ତରାଧ୍ୟୟନ ସୂତ୍ର, ୧୩. ୧୨.
୧୩. ତତ୍ତ୍ୱାର୍ଥ ସୂତ୍ର, ଅ ୬. ୮.
୧୪. ଉତ୍ତରାଧ୍ୟୟନ ସୂତ୍ର, ୮. ୧୦.
୧୫. ତତ୍ତ୍ୱାର୍ଥ ସୂତ୍ର, ୧. ୧.
୧୬. ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଓଡ଼ିଶାରେ ଜୈନ ଧର୍ମ, ପୃ ୯.
୧୭. ଡ଼କ୍ଟର ନୃସିଂହ ଚରଣ ପଣ୍ଡା, ଜୈନ ଧର୍ମରେ ଈଶ୍ୱର ପ୍ରତୀତି', ସମ୍ବାଦ ୧୧. ୮. ୧୯୮୭.
୧୮. ଉତ୍ତରାଧ୍ୟୟନ ସୂତ୍ର, ୨୮. ୧୧.
୧୯. ତତ୍ତ୍ୱାର୍ଥ ସୂତ୍ର, ୧୧.
୨୦. ଉତ୍ତରାଧ୍ୟୟନ ସୂତ୍ର, ୨୮. ୪.
୨୧. ଅନୁରାଙ୍ଗ ସୂତ୍ର, ୨,୧୫. ୨୩.୨୫; B.C.Bhattacharya 'The Jaina Iconography, P.7
୨୨. Encyclopaedia of Religion and Ethics, Part II, P. 187.
୨୩. T.G. Kalghatgi,Jaina view of life, Chapter 'Men or Gods' (Jivaraja – Granthamala)
୨୪ ଶରତଚନ୍ଦ୍ର ପାଣିଗ୍ରାହୀ, ମହାବୀର ଓ ଜୈନ ଦର୍ଶନ ପୃ ୧୧୯ ।
୨୫. Archie J.Bahm, "An appreciation of Syadabada Logic", Philosophy,East and West, vol. I, No 1 1951, PP-15 ff; Cultural Heritage of India, vol-I, P-228
୨୬. ପଣ୍ଡିତ ବନାୟକ ମିଶ୍ର, ଭାରତୀୟ ଦର୍ଶନ ପ୍ରବେଶିକା, ପୃ ୨୨-୨୩ (କଟକ. ୧୯୬୭)
୨୭. ତତ୍ତ୍ୱାର୍ଥ ସୂତ୍ର, ୧-୪; Umasvati, Ed. Samghavi Sukhalal, Second Edition, Banaras 1952.
୨୮. ଡ଼: କେଶବଚନ୍ଦ୍ର ସାହୁ, ଧର୍ମ, ସଂସ୍କୃତି, ଦର୍ଶନ ଓ ବିଜ୍ଞାନ ପୃ ୮୭-୮୮ (ଏସ. ପ୍ରତାପ, କଟକ ୧୯୭୭)
୨୯. ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଓଡ଼ିଶାରେ ଜୈନଧର୍ମ ପୃ
୩୦ ପଣ୍ଡିତ ବନାୟକ ମିଶ୍ର, ଭାରତୀୟ ଦର୍ଶନ ପ୍ରବେଶିକା, ପୃ ୧୬
୩୧. J.L. Jainy, out lines of Jainism. P.P. ୩-୪.

୩୨. ପଣ୍ଡିତ ନୀଳକଣ୍ଠ ଦାସ,ପ୍ରଭୁ ଶ୍ରୀଜଗନ୍ନାଥ ଦର୍ଶନ ତତ୍ତ୍ୱ,' ସମାଜ, ୧୭. ୭.୮୮.ପୃ ୨; ଲକ୍ଷ୍ମୀକାନ୍ତ ସମ୍ପୂର୍ଣ୍ଣ ସାହୁ, ଓଡ଼ିଶାରେ ଜୈନ ଧର୍ମ,ପୃ ୧୩।

୩୩. B.C. Law, Mahavira, his life and teachings, P.P. 106-107.

୩୪. Nilakantha Dash, Orissa Historical Research Journal, vol. VII NO 1, P.7;'ଆଦିନାଥ ଋଷଭ କି ଜଗନ୍ନାଥ',ନବ ଭାରତ, ୨.୮ ପୃ ୧୪୫–୧୪୬, (୧୯୫୦).

୩୫ ସାରଳା ମହାଭାରତ ସଭାପର୍ବ;
ଓଡ଼ିଶାରେ ନାଥ ସମ୍ପ୍ରଦାୟ ଓ ନାଥ ସାହିତ୍ୟ, ପୃ ୧୪୨.

୩୬. B.C, Majumdar, Sonepur is Sambalpur Tract, P.P. 126-136; L.S.S. O'Malley Bengal District Gazetters singhbhum, P.P. 23-25.

୩୭. Abhidhana Rajendra, vol. IV, P. 138.

୩୮. M.Mansingh, The saga of the land of Jagannath, P175

୩୯. Hema chandra, parisistaparvan, Ed, by H. Jacobi, PP-69, 282; N.C. Mehta, Studies in Indian Painting, P-2.



---

"ସର୍ବମଙ୍ଗଳ ମାଙ୍ଗଲ୍ୟମ୍ ସର୍ବକଲ୍ୟାଣ କାରକମ୍ ।
ପ୍ରଧାନଂ ସର୍ବଧର୍ମାଣାଂ, ଜୈନଂ ଜୟତୁ ଶାସନଂ ॥"

(କଳ୍ପସୂତ୍ର)

# ଦ୍ୱିତୀୟ ଅଧ୍ୟାୟ

## ପାର୍ଶ୍ୱନାଥ

ଜୈନଧର୍ମରେ ୨୪ଜଣ ତୀର୍ଥଙ୍କର ବା ପଥପ୍ରଦର୍ଶକଙ୍କ ଉପାସନାର ବିଧାନ ରହିଛି । ଏହି ୨୪ଜଣ ତୀର୍ଥଙ୍କରଙ୍କ ନାମ ତଥା ସେମାନଙ୍କର ଲାଞ୍ଛନ ନିମ୍ନରେ ପ୍ରଦତ୍ତ ହେଲା—

| ତୀର୍ଥଙ୍କର | ଶାସନ ଦେବୀ | ଲାଞ୍ଛନ |
|---|---|---|
| ୧ । ଋଷଭନାଥ | ଚକ୍ରେଶ୍ୱରୀ | ବୃଷ ବା ଧର୍ମଚକ୍ର |
| ୨ । ଅଜିତନାଥ | ରୋହିଣୀ | ଗଜ |
| ୩ । ସମ୍ଭବନାଥ | ପ୍ରଜ୍ଞପ୍ତି | ତୁରଙ୍ଗ ବା ଅଶ୍ୱ |
| ୪ । ଅଭିନନ୍ଦନ ନାଥ | ବଜ୍ରଶୃଙ୍ଖଳା | କପି |
| ୫ । ସୁମତିନାଥ | ପୁରୁଷ ଦତ୍ତା | କ୍ରୌଞ୍ଚ |
| ୬ । ପଦ୍ମପ୍ରଭ | ମନୋବେଗା | ରକ୍ତ କମଳ |
| ୭ । ସୁପାର୍ଶ୍ୱନାଥ | କାଳୀ | ସ୍ୱସ୍ତିକ ଓ ସର୍ପ |
| ୮ । ଚନ୍ଦ୍ରପ୍ରଭ | ଜ୍ୱାଳାମାଳିନୀ | ଚନ୍ଦ୍ର |
| ୯ । ସୁବିଧିନାଥ ବା ପୁଷ୍ପଦନ୍ତ | ମହାକାଳୀ | ମକର ବା କଙ୍କଡ଼ା |
| ୧୦ । ଶୀତଳନାଥ | ମାନବୀ | ଅଶ୍ୱତ୍ଥ |
| ୧୧ । ଶ୍ରେୟାଂଶନାଥ | ଗୌରୀ | ଖଡ୍‌ଗ |
| ୧୨ । ବାସୁପୂଜ୍ୟ | ଗାନ୍ଧାରୀ | ମହିଷୀ |
| ୧୩ । ବିମଳନାଥ | ବୈରୋଟୀ | ବରାହ |
| ୧୪ । ଅନନ୍ତନାଥ ବା ଅନନ୍ତଜିତ୍ | ଅନନ୍ତମତୀ | ଭଲ୍ଲୁକ |
| ୧୫ । ଧର୍ମନାଥ | ମାନସୀ | ବଜ୍ରଦଣ୍ଡ |
| ୧୬ । ଶାନ୍ତିନାଥ | ମହାମାନସୀ | ମୃଗ |
| ୧୭ । କୁନ୍ଥୁନାଥ | ଜୟା ବା ବିଜୟା | ଅଜ |
| ୧୮ । ଅରନାଥ | ତାରା | ନନ୍ଦ୍ୟାବର୍ତ୍ତ ବା ମୀନ |
| ୧୯ । ମଲ୍ଲିନାଥ | ଅପରାଜିତା | କଳସ |
| ୨୦ । ମୁନିସୁବ୍ରତ | ବହୁରୂପିଣୀ | କୂର୍ମ |

| | | |
|---|---|---|
| ୨୧ । ନମୀନାଥ | ଚାମୁଣ୍ଡା | ନୀଳୋତ୍ପଳ |
| ୨୨ । ନେମୀନାଥ | ଅମ୍ବିକା | ଶଂଖ |
| ୨୩ । ପାର୍ଶ୍ୱନାଥ | ପଦ୍ମାବତୀ | ସର୍ପ |
| ୨୪ । ମହାବୀର | ସିଦ୍ଧାର୍ଥିକା | ସିଂହ |

ଋଷଭନାଥଙ୍କ ଠାରୁ ନେମୀନାଥଙ୍କ ପର୍ଯ୍ୟନ୍ତ ୨୨ ଜଣ ତୀର୍ଥଙ୍କର କାଳ୍ପନିକ ଅଥବା ପୌରାଣିକ ମହାପୁରୁଷ ରୂପେ ପରିଗଣିତ । କେବଳ ପାର୍ଶ୍ୱନାଥ ଓ ମହାବୀର ଐତିହାସିକ ମହାପୁରୁଷ ରୂପେ ସ୍ୱୀକୃତ (୧)। ପାର୍ଶ୍ୱନାଥ ଓ ମହାବୀର ଜୈନଧର୍ମର ଯଥାକ୍ରମେ ତ୍ରୟୋବିଂଶ ଏବଂ ଚତୁର୍ବିଂଶତିତମ ତୀର୍ଥଙ୍କର । ମହାବୀରଙ୍କ ଜନ୍ମର ୨୫୦ ବର୍ଷ ପୂର୍ବରୁ ପାର୍ଶ୍ୱନାଥଙ୍କ ଆବିର୍ଭାବ ହୋଇଥିଲା । ପାର୍ଶ୍ୱନାଥଙ୍କ ପ୍ରବର୍ତ୍ତିତ ଧର୍ମ 'ଚତୁର୍ଯ୍ୟାମ ଧର୍ମ' ନାମରେ ଖ୍ୟାତ । ମହାବୀର 'ଚତୁର୍ଯ୍ୟାମ ଧର୍ମ'କୁ 'ପଞ୍ଚଯ୍ୟାମ ଧର୍ମ'ରେ ପରିଣତ କରିଥିଲେ । ଭଦ୍ରବାହୁଙ୍କ ରଚିତ 'କଳ୍ପସୂତ୍ର'ରେ (୨ ପାର୍ଶ୍ୱନାଥଙ୍କ ଜୀବନୀ ତଥା ଧର୍ମ ନୀତିର ଉଲ୍ଲେଖ ରହିଛି ।

ପାର୍ଶ୍ୱନାଥ ଖ୍ରୀ.ପୂ. ୮୭୭ ରେ ବାରାଣସୀ ଠାରେ ଇକ୍ଷ୍ୱାକୁ କ୍ଷତ୍ରିୟ ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଅଶ୍ୱସେନ ବାରାଣସୀର ରାଜା ଥିଲେ । ତାଙ୍କ ମାତାଙ୍କ ନାମ ଥିଲା ବାମା ଦେବୀ । ପାର୍ଶ୍ୱନାଥ ନିଜ ଜୀବଦଶାରେ ସର୍ପ ସଂସ୍ପର୍ଶରେ ଆସିଥିବାର ବହୁ ଘଟଣା ଜନଶ୍ରୁତି ଓ କିମ୍ବଦନ୍ତୀରୁ ଜଣାଯାଏ । ବାଲ୍ୟକାଳରେ ସେ ଏକଦା ମାତାଙ୍କ ନିକଟରେ ଶୟନ କରିଥିବା ବେଳେ ସର୍ପଟିଏ ତାଙ୍କ ମସ୍ତକ ଉପରେ ଫଣା ବିସ୍ତାର କରିଥିଲା । ଯୌବନାବସ୍ଥାରେ ସେ ଏକ ସର୍ପକୁ ବିପଦରୁ ରକ୍ଷା କରିଥିଲେ । ଥରେ ଏକ କାଠ ଗଦାରେ ସାପଟିଏ ଅଗ୍ରସ୍ର ନେଇଥିବା ବେଳେ ଜଣେ ବ୍ରାହ୍ମଣ ସେଥିରେ ଅଗ୍ନି ସଂଯୋଗ କରିଥିଲେ । ଦୈବାତ୍ ପାର୍ଶ୍ୱନାଥ ସେଠାରେ ପହଞ୍ଚି ଆସନ୍ନ ମୃତ୍ୟୁ ମୁଖରୁ ସର୍ପଟିକୁ ରକ୍ଷା କରିଥିଲେ । କାଳାନ୍ତରରେ ଉକ୍ତ ସର୍ପଟି ମୃତ୍ୟୁ ବରଣ କଲେ ଏବଂ ଭଗବାନ ଧରଣେନ୍ଦ୍ର ରୂପରେ ପାର୍ଶ୍ୱନାଥଙ୍କ ମସ୍ତକ ଉପରେ ଫଣା ବିସ୍ତାର କରି ଆବିର୍ଭୂତ ହେଲେ ସେ ହେଲେ ପାର୍ଶ୍ୱନାଥଙ୍କ ଲାଞ୍ଛନ ।

ଜୈନମାନଙ୍କ ମତରେ ଦେବତାମାନେ ମର୍ତ୍ତ୍ୟଭୁବନରେ ସାଧାରଣ ମନୁଷ୍ୟ ଠାରୁ କିଞ୍ଚିତ୍ ଅଧିକ କର୍ମ କରିଥିବାରୁ ଦେବତ୍ୱ ଲାଭ କରି ସ୍ୱର୍ଗାଦିରେ ଅଧିଷ୍ଠାନ କରନ୍ତି । ପରେ କର୍ମ ଫଳ ସମାପ୍ତ ହୋଇଗଲା ମାତ୍ରେ ମର୍ତ୍ତ୍ୟକୁ ପ୍ରତ୍ୟାବର୍ତ୍ତନ କରନ୍ତି । କିନ୍ତୁ ସେମାନଙ୍କ ମତରେ ସ୍ୱର୍ଗ ଗୋଟିଏ ନୁହେଁ ଅନନ୍ତ । ଏ ବିଷୟ ପାର୍ଶ୍ୱନାଥଙ୍କ ଜୀବନୀରୁ ଜ୍ଞାତ ହୁଏ । କଥିତ ଅଛି, ପାର୍ଶ୍ୱନାଥ ଥିଲେ ତ୍ରୟୋଦଶ ସ୍ୱର୍ଗର ଇନ୍ଦ୍ର । ତାଙ୍କ ଜୀବନୀ ଚରିତ ସମ୍ପର୍କରେ କାହାଣୀଟିଏ ଅଛି । ତାହା ହେଲା —"ପୂର୍ବେ ପାର୍ଶ୍ୱନାଥ ତ୍ରୟୋଦଶ ସ୍ୱର୍ଗର ଇନ୍ଦ୍ରଥିଲେ । ତାଙ୍କର କର୍ମ ଫଳ ପୂର୍ଣ୍ଣ ହୋଇଯିବାରୁ ସେ ପୁନଶ୍ଚ ମର୍ତ୍ତ୍ୟଲୋକରେ ଅବତାରଣ କଲେ । ସେ ରାଜା ଅଶ୍ୱସେନଙ୍କ ଔରସରେ ତାଙ୍କର ଦ୍ୱିତୀୟ ପୁତ୍ର ମରୁ-ଭୂତ ରୂପେ ରାଣୀ ବାମା

ଦେବୀଙ୍କ ଗର୍ଭରୁ ଜନ୍ମ ଲାଭ କଲେ । କମଠ ଥିଲେ ରାଜା ଅଶ୍ୱସେନଙ୍କ ପ୍ରଥମ (ଜ୍ୟେଷ୍ଠ) ପୁତ୍ର । ସେ ଦୁଷ୍ଟ ପ୍ରକୃତିର ତଥା କୃଷ୍ଣକାୟ ଥିଲେ । କିନ୍ତୁ ମରୁଭୂତି (ପାର୍ଶ୍ୱନାଥ) ଥିଲେ ଶାନ୍ତ ଶିଷ୍ଟ ଓ ଶ୍ୱେତକାୟ । ସେ ତିରିଶି ବର୍ଷ ବୟସରେ ସନ୍ନ୍ୟାସ ଗ୍ରହଣ କରି ଅହିଂସା ଧର୍ମର ପ୍ରଚାର କଲେ । ସେଥିରେ କମଠ ଈର୍ଷାନ୍ୱିତ ହୋଇ ତାଙ୍କର ସ୍ତ୍ରୀ ପ୍ରତି ଅତ୍ୟାଚାର କରିବାରୁ ଅଶ୍ୱସେନ କ୍ରୁଦ୍ଧ ହୋଇ ତାଙ୍କୁ ରାଜ୍ୟରୁ ବହିଷ୍କାର କଲେ । ତହୁଁ କମଠ ଅରଣ୍ୟକୁ ଯାଇ ସେଠାରେ ତପସ୍ୱୀମାନଙ୍କ ସହିତ ଜୀବନ ଅତିବାହିତ କଲେ । କିଛିକାଳ ପରେ ମରୁଭୂତି (ପାର୍ଶ୍ୱନାଥ) ଜ୍ୟେଷ୍ଠ ଭ୍ରାତାଙ୍କ ମତ ପରିବର୍ତ୍ତିତ ହୋଇଥିବ ଭାବି ତାଙ୍କୁ ଗୃହକୁ ଫେରାଇ ଆଣିବା ନିମନ୍ତେ ଅରଣ୍ୟକୁ ଗଲେ । ସେ କମଠଙ୍କ ନିକଟକୁ ଯାଇ ତାଙ୍କ ପାଦରେ ପ୍ରଣାମ କରିବା ସମୟରେ କମଠ ପୂର୍ବ କ୍ରୋଧର ପ୍ରତିହିଂସା ସ୍ୱରୂପ ଏକ ପ୍ରସ୍ତର ଅସିରେ ତାଙ୍କୁ ଆଘାତ କଲେ । ମରୁଭୂତି ଇହଲୋକରୁ ବିଦାୟ ନେଲେ ଥିବା ପରେ ତାହାଙ୍କୁ ମୁକ୍ତି ଦେଲେ । କିନ୍ତୁ ସେଠାରେ ଧ୍ୟାନରତ ଋଷିମାନେ ଏହା ଜାଣିପାରି କମଠଙ୍କୁ ନିଜ ଗୋଷ୍ଠୀରୁ ବାସନ୍ଦ କଲେ । ଅତଏବ କମଠ ସେଠାରୁ ଆସି 'ଭିଲ'ମାନଙ୍କ ସହିତ ଅବଶିଷ୍ଟ ଜୀବନଯାପନ କଲେ" (୩) ।

ପାର୍ଶ୍ୱନାଥଙ୍କ ଜୀବନୀ ଚରିତ ସମ୍ବଳିତ ଉଲ୍ଲିଖିତ କାହାଣୀରୁ ଜୈନମାନଙ୍କର ଜନ୍ମାନ୍ତର ଗ୍ରହଣ ସମ୍ବନ୍ଧରେ ବିଶ୍ୱାସ ଧାରଣା ଥିଲା ବୋଲି ବିଦିତ ହୁଏ । ଏହି କାହାଣୀରୁ ଆହୁରି ଜଣାପଡ଼େ ଯେ ଜୈନମାନେ ଦେବତାମାନଙ୍କୁ ମନୁଷ୍ୟ ରୂପରେ ଧାରଣା କରୁ-ଥିଲେ । ଏହି ଦେବତ୍ୱ ଲାଭ କରୁଥିବା ମନୁଷ୍ୟମାନେ କର୍ମଫଳ ସମ୍ପୂର୍ଣ୍ଣ ହୋଇଯିବା ମାତ୍ରେ ସ୍ୱଇଚ୍ଛାରେ ମର୍ତ୍ତ୍ୟ ଲୋକରେ ପୁନଶ୍ଚ ଅବତୀର୍ଣ୍ଣ ହୋଇ ମନୁଷ୍ୟ ଗର୍ଭରେ ଜନ୍ମଗ୍ରହଣ କରୁଥିଲେ । ପାର୍ଶ୍ୱନାଥଙ୍କ ଏହି ଆଖ୍ୟାନରୁ ଆହୁରି ମଧ୍ୟ ଜ୍ଞାତ ହୁଏ ଯେ ତାଙ୍କର ଅଗ୍ରଜ (କମଠ ଦୁଷ୍ଟ, ପାପୀ ଓ ଅତ୍ୟାଚାରୀ ଥିଲେ ମଧ୍ୟ ସେ (ପାର୍ଶ୍ୱନାଥ) ଅନୁଜ ରୂପରେ ନିଜର ଉଦାରତା, ଦୟାଳୁତା ଓ ଧାର୍ମିକତା ଦ୍ୱାରା ଅଗ୍ରଜର ସମସ୍ତ ଅପରାଧ ନିରାତଙ୍କ ଭାବେ ମାର୍ଜନା କରି ଅସୀମ ମହାନତାର ପରିଚୟ ଦେଇଛନ୍ତି । ପାର୍ଶ୍ୱନାଥ ଥିଲେ ଅହିଂସା, ସହିଷ୍ଣୁତା ଓ ନମ୍ରତାର ପ୍ରତୀକ ।

ପାର୍ଶ୍ୱନାଥଙ୍କ ବିବାହ ସମ୍ପର୍କରେ ଭବଦେବ ସୁରୀଙ୍କ ପାର୍ଶ୍ୱନାଥ ଚରିତ (୪) ରୁ ନିମ୍ନୋକ୍ତ ଆଖ୍ୟାନଟି ମିଳେ ।

ଏକଦା କୁଶସ୍ଥଳପୁର (କାନ୍ୟକୁବ୍ଜ) (୫) ର ରାଜା ପ୍ରସେନଜିତଙ୍କର ପ୍ରଭାବତୀ ନାମ୍ନୀ ପରମା ସୁନ୍ଦରୀ କନ୍ୟାଟିଏ ଥିଲା । ପ୍ରଭାବତୀ ବିବାହଯୋଗ୍ୟା ହେବାରୁ ପ୍ରସେନଜିତ୍ ବରପାତ୍ର ଅନ୍ୱେଷଣରେ ତତ୍ପର ହେଲେ । କିନ୍ତୁ ବହୁ ଚେଷ୍ଟା ସତ୍ତ୍ୱେ ତାଙ୍କୁ ଉପଯୁକ୍ତ ବର ପାତ୍ରଟିଏ ମିଳିଲା ନାହିଁ । ଦିନେ ରାଜୋଦ୍ୟାନରେ ବିହାର କଲାବେଳେ କିନ୍ନରୀମାନେ ପାର୍ଶ୍ୱନାଥଙ୍କ ଗୁଣଗାନ କରୁଥିବାର ପ୍ରଭାବତୀ ଶୁଣିବାକୁ ପାଇଲେ । ପ୍ରଭାବତୀଙ୍କୁ

ପାର୍ଶ୍ୱନାଥଙ୍କ ଭଳି ପତ୍ନୀ ତଥା ତାଙ୍କଠାରୁ ଭାଗ୍ୟବତୀ ଆଉ କେହି ନାହିଁ ବୋଲି କନ୍ୟାଗା-ମାନେ ପରସ୍ପର ମଧ୍ୟରେ ଆଲାପ ଆଲୋଚନା କରିବାର ଶୁଣାଗଲା । କନ୍ୟାମାନଙ୍କ ମୁଖରୁ ପାର୍ଶ୍ୱନାଥଙ୍କ ସଦ୍‌ଗୁଣ ଓ ବୀରତ୍ୱ ଗାନ ଶୁଣି ପ୍ରଭାବତୀ ତାଙ୍କୁ ବିବାହ କରିବାକୁ ମନସ୍ଥ କଲେ । କ୍ରମେ ରାଜା ପ୍ରସେନଜିତ୍ ଏ ଖବର ଶୁଣିଲେ । ସେ ତତ୍‌କ୍ଷଣାତ୍ ରାଜା ଅଶ୍ୱସେନଙ୍କ ନିକଟକୁ ବିବାହ ପ୍ରସ୍ତାବ ପ୍ରେରଣ କଲେ । ଇତ୍ୟବସରରେ କଳିଙ୍ଗର ରାଜା, ଯବନ, ଏହି ସମ୍ବାଦ ଶୁଣିବାକୁ ପାଇଲେ । ପ୍ରଭାବତୀଙ୍କୁ ବିବାହ କରିବାକୁ ତାଙ୍କର ଇଚ୍ଛା ଥିଲା । ସୁତରାଂ ପ୍ରଭାବତୀଙ୍କୁ ହରଣ କରିବା ଉଦ୍ଦେଶ୍ୟରେ ଯବନ ରାଜ କୁଶସ୍ଥଳପୁର ଆକ୍ରମଣ କଲେ । ଏହି ଆକ୍ରମଣକୁ ପ୍ରତିହତ କରିବା ନିମନ୍ତେ ପ୍ରସେନ୍‌ଜିତ୍ ଅଶ୍ୱସେନଙ୍କ ସାହାଯ୍ୟ ଲୋଡ଼ିଲେ । ଅଶ୍ୱସେନ ପ୍ରସେନ୍‌ଜିତ୍‌ଙ୍କୁ ସାହାଯ୍ୟ କରିବାକୁ ସମ୍ମତି ପ୍ରଦାନ କଲେ । ସେ ପାର୍ଶ୍ୱନାଥଙ୍କୁ ବିପୁଳ ସୈନ୍ୟ ସହ ଅବିଳମ୍ବେ ପ୍ରସେନ୍‌ଜିତ୍‌ଙ୍କ ନିକଟକୁ ପ୍ରେରଣ କଲେ । ପାର୍ଶ୍ୱନାଥ କୁଶସ୍ଥଳପୁରରେ ପହଞ୍ଚିବା ମାତ୍ରେ କଳିଙ୍ଗ ରାଜ, ଯବନ, ଭୟଭୀତ ହୋଇ ସ୍ୱଦେଶକୁ ପଳାୟନ କଲେ । ଏହାପରେ ପାର୍ଶ୍ୱନାଥଙ୍କ ସହିତ ପ୍ରଭାବତୀଙ୍କର ବିବାହ ସମ୍ପନ୍ନ ହୋଇ-ଥିଲା । ଏହି ଘଟଣାଟି ଉଦୟଗିରିସ୍ଥ ରାଣୀଗୁମ୍ଫାର ଉପର ମହଲରେ ଚିତ୍ରାକାରରେ ଖୋଦିତ ହୋଇଛି । (୬ ।

ରାଜପୁତ୍ର ହେଲେ ହେଁ ପାର୍ଶ୍ୱନାଥ ରାଜକୀୟ ଭୋଗବିଳାସ ପ୍ରତି ଅନାସକ୍ତ ଥିଲେ । ୩୦ ବର୍ଷ ବୟସ ପର୍ଯ୍ୟନ୍ତ ଗୃହସ୍ଥ ଜୀବନ ଯାପନ କଲାପରେ ସଂସାର ପ୍ରତି ତାଙ୍କର ବିତୃଷ୍ଣା ଜାତ ହେଲା । ତେଣୁ ସେ ସଂସାରିକ ମାୟା ବନ୍ଧନ ଛିନ୍ନ କରି ଗୃହତ୍ୟାଗ କଲେ । ପ୍ରଥମେ ସେ ବିଶାଳା ନାମକ ପାଲିଙ୍କି ଆରୋହଣ କରି ବହୁ ପାର୍ଶ୍ୱଚରଙ୍କ ସହ ଆଶ୍ରମ ପାଦ ଉଦ୍ୟାନରେ ପଦାର୍ପଣ କଲେ । ସେଠାରେ ତିନ ଦିନ ଏବଂ ଓଳିଏ ଉପବାସ ବ୍ରତ ପାଳନ ପୂର୍ବକ ସନ୍ନ୍ୟାସ ଗ୍ରହଣ କରିଥିଲେ । ତାପରେ ସେ ବାରାଣସୀ ନିକଟସ୍ଥ ଏକ ଧାତକୀ ବୃକ୍ଷ ମୂଳରେ ୪ ଦିନ ଧ୍ୟାନମଗ୍ନ ହୋଇ ସିଦ୍ଧି ଜ୍ଞାନ ବା କୈବଲ୍ୟ ପ୍ରାପ୍ତ ହେଲେ । ପ୍ରଥମେ ନିଜର ମାତା ଓ ସହଧର୍ମିଣୀଙ୍କୁ ସେ ପ୍ରବଚନ ଦେଇଥିଲେ । ତାପରେ ଦୀର୍ଘ ୭୦ ବର୍ଷ କାଳ ବିଭିନ୍ନ ରାଜ୍ୟ ଯଥା—ଅହିଛତ୍ର, ଆମଲକପପା, ଶ୍ରାବସ୍ତୀ, କାମ୍ପିଲ୍ୟ-ପୁର, ସାକେତ, କୌଶାମ୍ବୀ, ରାଜଗୃହ ଓ କଳିଙ୍ଗରେ ଧର୍ମ ପ୍ରଚାର କରିଥିଲେ । ପରିଶେଷରେ ୧୦୦ ବର୍ଷ ବୟସରେ ଖ୍ରୀ.ପୂ. ୭୭୨ରେ ବିହାର ପ୍ରଦେଶ ଅନ୍ତର୍ଗତ ପାଟନା ନିକଟବର୍ତ୍ତୀ ସମ୍ମେଦ ଶିଖର ଶୃଙ୍ଗରେ ଦେହ ତ୍ୟାଗ କରି ନିର୍ବାଣ ପ୍ରାପ୍ତ ହୋଇଥିଲେ । (୭) । ଏହି ସମ୍ମେଦ ଶିଖର ଅଧୁନା ତାଙ୍କ ନାମାନୁସାରେ ପାର୍ଶ୍ୱନାଥ ପର୍ବତ ନାମରେ ଅଭିହିତ ।

ସାଂସାରିକ ଗ୍ରନ୍ଥି ଅଥବା ବନ୍ଧନ ଛିନ୍ନ କରିଥିବାରୁ ପାର୍ଶ୍ୱନାଥଙ୍କ ଅନୁଗାମୀମାନେ ନିର୍ଗ୍ରନ୍ଥ ନାମରେ କଥିତ ହେଲେ । ପାର୍ଶ୍ୱନାଥଙ୍କ ଅନୁଗାମୀମାନେ 'ଜିନ କଳ୍ପ' ଅଭ୍ୟାସ କରୁଥିଲେ (୮) ସେମାନେ ଶ୍ୱେତବର୍ଣ୍ଣର ଏକ ଅଧୋବସ୍ତ୍ର ଓ ଏକ ଉତ୍ତରୀୟ ବ୍ୟବହାର

କରିବାରୁ ଶ୍ୱେତାମ୍ବର ନାମରେ ଅଭିହିତ ହେଲେ । କଳିଙ୍ଗର ରାଜା କରକଣ୍ଡୁ, ବିଦେହର ରାଜା ନମି, ପାଞ୍ଚାଳର ରାଜା ଦୁର୍ମୁଖ, ଏବଂ ବିଦର୍ଭ ନରେଶ ଭୀମ ପାର୍ଶ୍ୱନାଥଙ୍କ ଦ୍ୱାରା ଜୈନ ଧର୍ମରେ ଦୀକ୍ଷିତ ହୋଇଥିଲେ । (୯) ।

ପାର୍ଶ୍ୱନାଥ ବାସ୍ତବବାଦୀ ଥିଲେ । ଜୈନଧର୍ମର ପ୍ରଚାର ନିମନ୍ତେ ସେ ଜୈନ ସଂଘ ସଂଗଠନ କରିଥିଲେ । ତାଙ୍କ ସଂଘରେ ଉଭୟ ନାରୀ ଓ ପୁରୁଷ ଯୋଗ ଦେଇଥିଲେ । ପ୍ରଥମେ ଯେଉଁ ଆଠ ଜଣ ବ୍ୟକ୍ତି ତାଙ୍କର ଦୀକ୍ଷା ଗ୍ରହଣ କରିଥିଲେ ସେମାନେ ଗଣଧର ନାମରେ ଅଖ୍ୟାତ । (୧୦) । ଏହି ଅଷ୍ଟଗଣଧର ହେଲେ--ଶୁଭ, ଆର୍ଯ୍ୟଘୋଷ, ବଶିଷ୍ଠ, ବ୍ରହ୍ମଚାରିନ୍, ସୌମ୍ୟ, ଶ୍ରୀଧର, ବୀରଭଦ୍ର ଏବଂ ଯଶସ୍ । ପାର୍ଶ୍ୱନାଥଙ୍କ ଦ୍ୱାରା ପ୍ରତିଷ୍ଠିତ ଜୈନ ସଂଘର ସୁପରିଚାଳନା କ୍ଷେତ୍ରରେ ଏହି ଗଣଧରମାନଙ୍କ ଭୂମିକା ମହତ୍ତ୍ୱପୂର୍ଣ୍ଣ । କ୍ରମଶଃ ପାର୍ଶ୍ୱନାଥଙ୍କ ଅନୁଗାମୀମାନଙ୍କ ସଂଖ୍ୟା ବୃଦ୍ଧି ପାଇଲା ଏବଂ ସେମାନେ ନିଜ ନିଜର ସଂଘ ମଧ୍ୟ ଗଠନ କଲେ । ସେମାନଙ୍କ ମଧ୍ୟରେ ଥିଲେ ଆର୍ଯ୍ୟଦତ୍ତଙ୍କ ନେତୃତ୍ୱରେ ୧୬,୦୦୦ ଜଣ ଶ୍ରମଣ, ପୁଷ୍ପଚୂଳାଙ୍କ ନେତୃତ୍ୱରେ ୩୮,୦୦୦ ଜଣ ଭିକ୍ଷୁଣୀ, ସୁବ୍ରତଙ୍କ ନେତୃତ୍ୱରେ ୧,୬୪,୦୦୦ ଜଣ ସାଧାରଣ ଉପାସକ ତଥା ସୁନନ୍ଦାଙ୍କ ନେତୃତ୍ୱରେ ୩,୨୭,୦୦୦ ଜଣ ସାଧାରଣ ଉପାସିକା । ସେମାନେ ନିଜ ନିଜର ସଂଘକୁ ସୁସଂଗଠିତ କରିଥିଲେ । ଏତଦ୍ ବ୍ୟତୀତ ୧୪,୦୦୦ ଅବଧି ଜ୍ଞାନ ଓ ୧,୦୦୦ କେବଳ ଜ୍ଞାନପ୍ରାପ୍ତ ସାଧୁ ଓ ସନ୍ଥ ମଧ୍ୟ ପାର୍ଶ୍ୱନାଥଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । (୧୧) ।

ପାର୍ଶ୍ୱନାଥ ମହାବୀରଙ୍କ ପରି ଜଣେ ଦାର୍ଶନିକ ନଥିଲେ । ସେ ଥିଲେ ପ୍ରାଚୀନ ମୁନିଋଷିଙ୍କ ଭଳି ଜଣେ ସିଦ୍ଧ ପୁରୁଷ । ତାଙ୍କ ପ୍ରବର୍ତ୍ତିତ ଜୈନଧର୍ମ 'ଚାତୁର୍ଯ୍ୟାମ ଧର୍ମ' ନାମରେ ଖ୍ୟାତ । ତାହା ଚାରୋଟି ନୀତି ଉପରେ ଆଧାରିତ ଅହିଂସା (ଜୀବ ହତ୍ୟା ଅଥବା ଜୀବକୁ ଆଘାତ ନକରିବା),ସତ୍ୟ (ମିଥ୍ୟା ନ କହିବା),ଅସ୍ତେୟ (ଚୋରି ନକରିବା), ଏବଂ ଅପରିଗ୍ରହ (କୌଣସି ପାର୍ଥିବ ଦ୍ରବ୍ୟ ତଥା ଧନ ସମ୍ପତ୍ତି ଭୋଗ ନକରିବା) । ମହାବୀର ପାର୍ଶ୍ୱନାଥଙ୍କ 'ଚାତୁର୍ଯ୍ୟାମ ଧର୍ମ'ର ସଂସ୍କାର ସାଧନ କରି ଉହିଁରେ ପଞ୍ଚମ ନୀତି, ବ୍ରହ୍ମଚର୍ଯ୍ୟ, ଯୋଗ କରିଥିଲେ । ଫଳରେ ପାର୍ଶ୍ୱନାଥଙ୍କ 'ଚାତୁର୍ଯ୍ୟାମ ଧର୍ମ' ମହାବୀରଙ୍କ ଦ୍ୱାରା 'ପଞ୍ଚଯାମ ଧର୍ମ'ରେ ପରିଣତ ହୋଇଥିଲା ।

ପାର୍ଶ୍ୱନାଥଙ୍କ ମତରେ ଜୀବ ଛଅ ପ୍ରକାର । ଏହି ଷଡ଼୍ ଜୀବନିକାୟରୁ ହିଁ ମହାବୀରଙ୍କ 'ଷଡ଼ଲେଶ୍ୟାତତ୍ତ୍ୱ' ଆନୀତ । (୧୨) । ପାର୍ଶ୍ୱନାଥ ଅହିଂସା ନୀତି ଉପରେ ଗୁରୁତ୍ୱାରୋପ କରିଥିଲେ । ବ୍ରାହ୍ମଣ୍ୟଧର୍ମର ବେଦବାଦ, ଅନେକେଶ୍ୱର ବାଦ, ଯଜ୍ଞବାଦ, ପୂଜାପଦ୍ଧତି, କର୍ମ କାଣ୍ଡ ତଥା ବର୍ଣ୍ଣବ୍ୟବସ୍ଥାଦିର ସେ ବିରୋଧ କରିଥିଲେ । ନାରୀ ଏବଂ ଶୂଦ୍ରମାନେ ମଧ୍ୟ ମୋକ୍ଷ ଲାଭ କରିପାରିବେ ବୋଲି ସେ ମତ ବ୍ୟକ୍ତ କରିଛନ୍ତି । ସାମାଜିକ ଦୃଷ୍ଟିକୋଣରୁ

ତାହା ମହତ୍ତ୍ୱ ପୂର୍ଣ୍ଣ ଥିଲା । ମୋକ୍ଷ ପ୍ରାପ୍ତି ନିମନ୍ତେ କଠୋର ଆତ୍ମ ସଂଯମ, ତାପସ ଏବଂ ନୈତିକ ଆଚରଣ ଏକାନ୍ତ ବିଧେୟ ବୋଲି ସେ ପ୍ରତିପାଦନ କରିଥିଲେ ।

ଜୈନ ପରମ୍ପରାନୁଯାୟୀ ପାର୍ଶ୍ୱନାଥଙ୍କ ସମୟରୁ ପ୍ରଚଳିତ ପବିତ୍ର ଜୈନଗ୍ରନ୍ଥ ପୂର୍ବାଗମ ନାମରେ ଅଭିହିତ । ତାହା ମୂଳତଃ ପୂର୍ବ (ପୂର୍ବ ଓ ଅଙ୍ଗ-ଏହିପରି ଦୁଇ ଭାଗରେ ବିଭକ୍ତ । ସର୍ବମୋଟ ୪ଟି ପୂର୍ବ ଏବଂ ୧୨ଟି ଅଙ୍ଗ ଗ୍ରନ୍ଥ ଥିଲା । ୧୪ଟି ପୂର୍ବଗ୍ରନ୍ଥ ହେଲା—ଉତ୍ପାଦ-ପୂର୍ବ, ଅଗ୍ରବାଣୀୟ-ପୂର୍ବ, ବୀର୍ଯ୍ୟ ପ୍ରବାଦ-ପୂର୍ବ, ଅସ୍ତିନାସ୍ତି ପ୍ରବାଦ-ପୂର୍ବ, ଜ୍ଞାନ ପ୍ରବାଦ-ପୂର୍ବ, ସତ୍ୟ ପ୍ରବାଦ-ପୂର୍ବ, ଆତ୍ମପ୍ରବାଦ ପୂର୍ବ, କର୍ମ ପ୍ରବାଦ-ପୂର୍ବ ପ୍ରତ୍ୟାଖ୍ୟାନ ପ୍ରବାଦ ପୂର୍ବ, ବିଦ୍ୟାନୁ ପ୍ରବାଦ-ପୂର୍ବ, ଅବନ୍ଧ୍ୟ ପୂର୍ବ, ପ୍ରାଣାୟୁ-ପ୍ରବାଦ-ପୂର୍ବ, କ୍ରିୟା-ବିଶାଲ -ପୂର୍ବ ଏବଂ ଲୋକ ବିନ୍ଦୁସାର ପୂର୍ବ । ଏହି ପୂର୍ବ ଗ୍ରନ୍ଥ ବୃତ୍ତିରୁ ହିଁ ଆଜୀବକ ସମ୍ପ୍ରଦାୟର ମୁଖ୍ୟ ଗୋଶାଳ ମଂଖଲିପୁତ୍ର ପ୍ରେରଣା ପାଇଥିଲେ । ଆଠଟି ମହାନିମିତ୍ତ ଏବଂ ଦୁଇଟି ମାର୍ଗକୁ ନେଇ ଆଜୀବକ ଧର୍ମ ଗ୍ରନ୍ଥ ପୂର୍ବ ଗ୍ରନ୍ଥ ଉପରେ ଆଧାରିତ । ଏଗାରଟି ଅଙ୍ଗଗ୍ରନ୍ଥ ହେଲା—ଆଚାରାଙ୍ଗ ସୂତ୍ର,ସୂତ୍ର କୃତାଙ୍ଗ, ସ୍ଥାନାଙ୍ଗ, ସମବାୟ, ଭଗବତୀ, ଜ୍ଞାତା ଧର୍ମ କଥା, ଉପାଶକ ଦଶା, ଅନ୍ତକୃଦଶା, ଅନୁତ୍ତରୌପପାତିକ ଦଶା, ପ୍ରଶ୍ନ ବ୍ୟାକରଣ, ବିପାକ (ଦୃଷ୍ଟିବାଦ) । ଏହି ସବୁ ଗ୍ରନ୍ଥ ଗୁଡ଼ିକ ଅର୍ଦ୍ଧମାଗଧୀ ଭାଷାରେ ରଚିତ ।

ଜୈନ ସାହିତ୍ୟରେ ପାର୍ଶ୍ୱନାଥଙ୍କ ଅନୁଗାମୀ ତଥା ଶିଷ୍ୟମାନଙ୍କ ସମ୍ପର୍କରେ ବହୁ ଉଲ୍ଲେଖ ରହିଛି । ମହାବୀରଙ୍କ ସମୟରେ ପାର୍ଶ୍ୱନାଥଙ୍କ ବହୁ ଅନୁଗାମୀ ମଗଧ ଅଞ୍ଚଳରେ ବସବାସ କରୁଥିଲେ । ବର୍ଦ୍ଧମାନ ମହାବୀରଙ୍କ ପିତା ସିଦ୍ଧାର୍ଥ ଓ ମାତା ତ୍ରିଶଳା ପାର୍ଶ୍ୱନାଥଙ୍କୁ ଉପାସନା କରୁଥିଲେ । ସେମାନେ ପାର୍ଶ୍ୱନାଥଙ୍କ ଧର୍ମମତରେ ଅନୁପ୍ରାଣିତ ହୋଇ ପରିଣତ ବୟସରେ ଅନଶନ ପୂର୍ବକ ଦେହତ୍ୟାଗ କରିଥିଲେ । (୧୩) । ଭଗବତୀ ସୂତ୍ର (୧୪) ରେ କାଳାସ ବେସିୟ ପୁତ୍ର ନାମକ ପାର୍ଶ୍ୱନାଥଙ୍କର ଜଣେ ଶିଷ୍ୟ ଓ ମହାବୀରଙ୍କ ଜନୈକ ଅନୁଗାମୀଙ୍କ ମଧ୍ୟରେ ତାତ୍ତ୍ୱିକ ତର୍କ ବିତର୍କ ହୋଇଥିବାର ଉଲ୍ଲେଖ ରହିଛି । ବିଜୟା ଏବଂ ପଭଗା ନାମ୍ନୀ ପାର୍ଶ୍ୱନାଥଙ୍କ ଦୁଇଜଣ ଶିଷ୍ୟା ମହାବୀର ଓ ଗୋଶାଳଙ୍କୁ କୂପିୟ ସନ୍ନିବେଶଠାରେ ବିପଦରୁ ରକ୍ଷା କରିଥିଲେ । (୧୫) । ତୁଙ୍ଗିୟ ନଗରରେ ପାର୍ଶ୍ୱନାଥଙ୍କ ଶିଷ୍ୟଙ୍କ ସଂଖ୍ୟା ୫୦୦ ଥିଲାବୋଲି ଭଗବତୀ ସୂତ୍ର (୧୬)ରୁ ବିଦିତ ହୁଏ । ପାର୍ଶ୍ୱନାଥ ଓ ମହାବୀରଙ୍କ ଅନୁଗାମୀମାନେ ଯଥାକ୍ରମେ ନିଗଣ୍ଠ କୁମାର ପୁତ୍ର ଓ ନିଗଣ୍ଠ ନାଥପୁତ୍ର ନାମରେ ଅଭିହିତ । ତାହା ଉଦେକ ନାମକ ପାର୍ଶ୍ୱନାଥଙ୍କ ଜଣେ ଶିଷ୍ୟ ଏବଂ ଗୌତମବୁଦ୍ଧଙ୍କ ମଧ୍ୟରେ ହୋଇଥିବା ଆଲୋଚନାରୁ ଜ୍ଞାତହୁଏ । (୧୭) ।

ପାର୍ଶ୍ୱନାଥ ଥିଲେ ସତ୍ୟ, ଶାନ୍ତି, ଦୟା ଓ ଅହିଂସାର ପ୍ରତୀକ ତଥା ଆଦର୍ଶ ଓ ମୁକ୍ତ ପୁରୁଷ ଏବଂ ଶ୍ରେଷ୍ଠ ପୂଜ୍ୟ । ସେ ସର୍ବସାଧାରଣଙ୍କର ଏକାନ୍ତ ପ୍ରିୟ ହୋଇ 'ପୁରୁଷ-

ଦାକ୍ଷ୍ୟ' ନାମରେ ଖ୍ୟାତ ଲାଭ କରିଥିଲେ । ଭାରତୀୟ ଧର୍ମ, ସଂସ୍କୃତି ତଥା ଐତିହ୍ୟକୁ ପାର୍ଶ୍ୱନାଥଙ୍କ ଅବଦାନ ଉଲ୍ଲେଖନୀୟ ।

ପାଦଟୀକା :

୧. H.Jacobi : Sacred Books of the East (oxford) XLV, pp. xx—xxiii; Indian. Antiquary vol IX, pp-162 ff, R.C-Majumdar, Age of Imperial unity (Edited), p 411, Bharatiya vidya Bhavan, Bombay.

୨. Kalpasutra, pp. 149-169, Translation by H.Jacobi, sacred Books of the East, XXII, 2nd Reprint, Delhi, 1968.

୩. H. Zimmer, philosophies of India, Edited by Joseph campbell, pp 181-193. (Bollingen series, xxvi).

୪. Parsvanath charita of Sri Bhavadeva Suri, Edited by Pandit Haragovinda and pandit Becharadasa, pp 269-70, slokas. 155 f.

୫. ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ମତରେ ଏହି କୁଶସ୍ଥଳ ପୁର ଗୁପ୍ତ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଆଲହାବାଦ ସ୍ତମ୍ଭଲିପିରେ ଲିଖିତ କୁସ୍ଥଳପୁର (C. III, vol-III, p.7) ଏବଂ ଅଧୁନା ତାହା ଗଞ୍ଜାମ ଜିଲ୍ଲାର 'କୋଥଳୀ' ବା 'କୁଶ ସ୍ଥଳୀ' ସହିତ ଚିହ୍ନିତ ହୋଇପରେ । ଦ୍ରଷ୍ଟବ୍ୟ —ଓଡ଼ିଶା ଇତିହାସ, ପ୍ରଥମ ଖଣ୍ଡ, ପୃ-୫୭ (ଗ୍ରନ୍ଥମନ୍ଦିର) ।

୬. O' Malley and Man Mohan Chakravarty, Bengal District Gazetteers, Puri (1908) p.256.

୭. କଳ୍ପ ସୂତ୍ର, ପୃ ୧୬୮-'୬୯; ଉତ୍ତରାଧ୍ୟୟନ ସୂତ୍ର, ଅଧ୍ୟାୟ ୧୩ ।

୮. J C. Jain, Life in Ancient India as described by Jaina cannons, p 27.

୯. ଉତ୍ତରାଧ୍ୟୟନ ସୂତ୍ର, ଅଧ୍ୟାୟ ୧୮, ଶ୍ଳୋକ ୪୫-୪୭; Herman Jacobi, sacred Books of the East, XIV, p.87.

୧୦. ସମବାୟାଙ୍ଗ ପୃ ୧୪୭. A. M. Ghatage, The Age of Imperial unity, Edited by R.C. Majumdar, pp-416-417.

୧୧. କଳ୍ପସୂତ୍ର, ପୃ ୧୬୦-୧୬୪ ଏବଂ ୧୬୬ ; Cowell, Jataka, vol-III, p.228.

୧୨. Hoernle, Encyclopaedia of Religion and Ethics, vol-I, pp 259 ff.

୧୩. ଆଚାରାଙ୍ଗ ସୂତ୍ର, ୧୧, ୧୫-୧୬ ।

୧୪. ଭଗବତୀ ସୂତ୍ର, ପୃ ୧, ୭୨ ।

୧୫ ଆବଶ୍ୟକ ଚୂର୍ଣ୍ଣି, ୨୯୮ ।

୧୬. ଭଗବତୀ ସୂତ୍ର, ୨-୫ ।

୧୭. କଳ୍ପସୂତ୍ର, ପୃ ୧୪୯ ଏବଂ ୧୫୫ ।

—o—

"ଉତ୍ପାଦ ବ୍ୟୟ ଧ୍ରୌବ୍ୟ ଯୁକ୍ତମ୍ ସତ୍"

(ତତ୍ତ୍ୱାର୍ଥାଧିଗମ ସୂତ୍ର)

# ତୃତୀୟ ଅଧ୍ୟାୟ

## ବର୍ଦ୍ଧମାନ ମହାବୀର

**ଜୀବନୀ :**

ବର୍ଦ୍ଧମାନ ମହାବୀର ଜୈନ ଧର୍ମର ଚତୁର୍ବିଂଶ ତଥା ସର୍ବଶେଷ ଓ ଶ୍ରେଷ୍ଠ ତୀର୍ଥଙ୍କର ରୂପେ ବର୍ଣ୍ଣିତ । ମହାବୀର ହିଁ ଜୈନ ଧର୍ମର ପ୍ରକୃତ ସଂସ୍ଥାପକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କୁ ଜୈନମାନେ ଦେବତାଙ୍କ ଠାରୁ ଶ୍ରେଷ୍ଠ, ମୁକ୍ତିଦାତା ଓ ସର୍ବଦୋଷ ଖାଳକ ବୋଲି ମାନ୍ୟ କରନ୍ତି । ତାଙ୍କର ବାଲ୍ୟନାମ ଥିଲା ବର୍ଦ୍ଧମାନ । ସେ ନିଗଣ୍ଠନାତ-ପୁତ୍ର ନାମରେ ମଧ୍ୟ ଅଭିହିତ । ନାତ' ଅଥବା 'ଜ୍ଞାତ୍ରିକ' କୁଳ ସମ୍ଭୂତ ହେତୁ ତାଙ୍କୁ 'ନାତ ପୁତ୍ର' କୁହାଯାଏ । ଉତ୍ତର ବିହାର ଅନ୍ତର୍ଗତ ବିଦେହ ରାଜ୍ୟର ରାଜଧାନୀ ବୈଶାଳୀ ଉପକଣ୍ଠବର୍ତ୍ତୀ କୁଣ୍ଡଗ୍ରାମ ଅଥବା କୁଣ୍ଡପୁର (ଆଧୁନିକ ବସୁକୁଣ୍ଡ) ଠାରେ ଖ୍ରୀ.ପୂ. ୬୧୮ ରେ ଜ୍ଞାତ୍ରିକ' ନାମକ ଏକ ସମ୍ଭ୍ରାନ୍ତ କାଶ୍ୟପଗୋତ୍ରି କ୍ଷତ୍ରିୟ କୁଳରେ ବର୍ଦ୍ଧମାନ ମହାବୀର ଜନ୍ମଗ୍ରହଣ କରିଥିଲେ । ତେଣୁ ଜୈନ ଗ୍ରନ୍ଥ 'ସୂତ୍ର କୃତାଙ୍ଗ' (୧) ରେ ମହାବୀର ବୈଶାଳିକ ନାମରେ କଥିତ । 'ଆଚାରଙ୍ଗ ସୂତ୍ରରେ (୨) କୁଣ୍ଡପୁର ଏକ ସନ୍ନିବେଶ ଅଥବା ପାନ୍ଥମାନଙ୍କର ସାମୟିକ ନିବାସ ସ୍ଥାନ ରୂପେ ମଧ୍ୟ ବର୍ଣ୍ଣିତ ହୋଇଛି ।

ମହାବୀରଙ୍କ ଜନ୍ମ ସ୍ଥାନ ସମ୍ପର୍କରେ ଦିଗମ୍ବର ଓ ଶ୍ୱେତାମ୍ବର ପନ୍ଥିଙ୍କ ମଧ୍ୟରେ ମତ ଦ୍ୱୈଧ ରହିଛି । ଦିଗମ୍ବର ଜୈନମାନଙ୍କ ମତରେ ବିହାର ଅନ୍ତର୍ଗତ ନାଳନ୍ଦା ଠାରୁ ଚାରି କି.ମି. ଦୂରରେ ଅବସ୍ଥିତ ଆଧୁନିକ କୁଣ୍ଡଳପୁର ହେଉଛି ମହାବୀରଙ୍କ ଜନ୍ମସ୍ଥାନ । କିନ୍ତୁ ଶ୍ୱେତାମ୍ବର ଜୈନ ସମ୍ପ୍ରଦାୟ ଅନୁସାରେ ତାହା ହେଉଛି ଦକ୍ଷିଣ ମୁଂଘେର ଅନ୍ତର୍ଗତ ଲଛୁଆଡ଼୍ ଗ୍ରାମ ସନ୍ନିକଟ ଆଧୁନିକ କ୍ଷତ୍ରିୟ କୁଣ୍ଡ । ତେଣୁ ଉଭୟ ସମ୍ପ୍ରଦାୟର ସ୍ତୂପ ମନ୍ଦିର, ବିହାର ଓ ପାନ୍ଥଶାଳାମାନ ଉକ୍ତ ଦୁଇଟି ସ୍ଥାନରେ ନିର୍ମିତ ହୋଇଛି । ଉଭୟ ସ୍ଥାନକୁ ଜୈନମାନେ ମହାବୀରଙ୍କ ଜନ୍ମ ସ୍ଥାନ ଭାବି ସେଠାକୁ ବହୁ ସଂଖ୍ୟାରେ ତୀର୍ଥଯାତ୍ରା କରନ୍ତି । ଏହିଭଳି ଭ୍ରମ ଧାରଣାର ବଶବର୍ତ୍ତୀ ହୋଇ ଜୈନମାନେ ମହାବୀରଙ୍କ ପ୍ରକୃତ ଜନ୍ମସ୍ଥାନ ବୈଶାଳୀ ନିକଟବର୍ତ୍ତୀ କୁଣ୍ଡଗ୍ରାମକୁ କୌଣସି ଗୁରୁତ୍ୱ ଦେଉନଥିଲେ ।

ଅଧୁନା ଐତିହାସିକ ଗବେଷଣା ଫଳରେ ଉପରୋକ୍ତ ମତ ଦ୍ୱୟ ଭ୍ରମାତ୍ମକ ବୋଲି ପ୍ରମାଣିତ ହୋଇଛି । ବର୍ତ୍ତମାନର ନାଳନ୍ଦା ନିକଟବର୍ତ୍ତୀ କୁଣ୍ଡପୁର କିମ୍ବା ଲଛୁଆଡ଼ ସମୀପସ୍ଥ କ୍ଷତ୍ରିୟକୁଣ୍ଡ ମହାବୀରଙ୍କ ଜନ୍ମସ୍ଥାନ ରୂପେ ବିବେଚିତ ହେବା ଯୁକ୍ତି ଯୁକ୍ତ ମନେ ହୁଏ ନାହିଁ । କାରଣ ଉଭୟ ସ୍ଥାନ ଅଞ୍ଚଳରେ ବିଦେହ ପରିବର୍ତ୍ତେ ଅଙ୍ଗରାଜ୍ୟ ଅନ୍ତର୍ଭୁକ୍ତ

ଥିଲା । ଦ୍ୱିତୀୟତଃ 'ନାତ' ବା 'ଜ୍ଞାତୃକ' କ୍ଷତ୍ରିୟମାନେ ବହୁ ସଂଖ୍ୟାରେ ବୈଶାଳୀ ଓ ତନ୍ନିକଟସ୍ଥ କୁଣ୍ଡଗ୍ରାମ ଅଥବା କୁଣ୍ଡପୁର, ବାଣିଜ୍ୟ ଗ୍ରାମ ଓ କୋଲ୍ଲାଗ ଆଦି ସ୍ଥାନ ଗୁଡ଼ିକରେ ବାସ କରୁଥିଲେ । ତୃତୀୟତଃ ଆଧୁନିକ କ୍ଷତ୍ରିୟ କୁଣ୍ଡ ଏକ ପାର୍ବତ୍ୟ ଅଞ୍ଚଳରେ ଅବସ୍ଥିତ ଏବଂ ତାହା ନିକଟରେ କୌଣସି ନଦୀ ପ୍ରବାହିତ ହେଉନାହିଁ । କିନ୍ତୁ ଜୈନଗ୍ରନ୍ଥରେ ଉଲ୍ଲିଖିତ ମହାବୀରଙ୍କ ପ୍ରକୃତ ଜନ୍ମସ୍ଥାନ କୁଣ୍ଡପୁରର ପୂର୍ବପାର୍ଶ୍ୱରେ ଗଣ୍ଡକୀ ନଦୀ ପ୍ରବାହିତ ହେଉଥିଲା । ଚତୁର୍ଥରେ ମହାବୀରଙ୍କ ଜନ୍ମଭୂମି ବିଦେହ ଅଥବା ବୈଶାଳୀରେ ଅବସ୍ଥିତ କୁଣ୍ଡଗ୍ରାମ ଅଥବା କୁଣ୍ଡପୁର ବୋଲି ଜୈନ ସାହିତ୍ୟରେ ସ୍ପଷ୍ଟ ଭାବରେ ଉଲ୍ଲିଖିତ ହୋଇଛି । ତେଣୁ ବିଦେହ ଅନ୍ତର୍ଗତ ବୈଶାଳୀ ନିକଟବର୍ତ୍ତୀ କୁଣ୍ଡପୁର ହିଁ ମହାବୀରଙ୍କ ଜନ୍ମସ୍ଥାନ ବୋଲି ଯୁକ୍ତିସଙ୍ଗତ ମନେହୁଏ । (୩) । ସେ ପ୍ରସଙ୍ଗରେ ଦିଗମ୍ବର ଜୈନ ସାହିତ୍ୟରୁ କେତେକ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା—

କ) 'ସିଦ୍ଧାର୍ଥ ନୃପତି ତନୟୋ ଭାରତ ବାସ୍ୟେ
ବିଦେହ କୁଣ୍ଡପୁରେ ।
ଦେବ୍ୟାଂ ପ୍ରିୟ କାରିଣ୍ୟାଂ ସୁସ୍ୱପ୍ନାନ୍
ସଂପ୍ରଦର୍ଶ୍ୟ ବିଭୁଃ ।।" (୪)

ଖ) 'ତସ୍ମିନ୍ ଷଣ୍ମାସଶେଷା ୟୁଷ୍ୟାନାକାଦା ଗମିଷ୍ୟତି ।
ଭରତେସ୍ମିନ୍ ବିଦେହାଖ୍ୟେବିଷୟେ ଭବନାଂଗଣେ ।।୨୫୧।।
ରାଜ୍ଞଃ କୁଣ୍ଡପୁରେଶସ୍ୟ ବସୁଧାରାପ ତତ୍ପୃଥୁ ।
ସପ୍ତକୋଟୀ ମଣୀଃ ସାର୍ଦ୍ଧାଃ ସିଦ୍ଧାର୍ଥସ୍ୟ ଦିନଂ ପ୍ରତି ।।'୫'।। (୫)

ଗ) 'ଅଥ ଦେଶୋ ଅସ୍ତି ବିସ୍ତାରୀ ଜମ୍ବୁଦ୍ୱୀପସ୍ୟ ଭାରତେ ।
ବିଦେହ ଇତି ସ୍ୱର୍ଗଖଣ୍ଡ ସମଃ ଶ୍ରିୟଃ ।।୧।।
ତତ୍ରାଖଣ୍ଡଲ ନେତ୍ରାଳୀ ପଦ୍ମିନୀ ଖଣ୍ଡମଣ୍ଡନଂ ।
ସୁଖାଂଭଃ କୁଣ୍ଡମାଭାତି ନାମ୍ନା କୁଣ୍ଡପୁରଂ ।।୨।। (୬)

ଘ) 'ଅଥାସ୍ମିନ୍ ଭାରତବର୍ଷେ ବିଦେହେଷୁ ମହର୍ଦ୍ଧିଷୁ ।
ଆସୀତ୍ କୁଣ୍ଡପୁରଂ ନାମ୍ନା ପୁରଂ ସୁରପୁରୋପମମ୍ ।।୧।। (୭)

ଙ) 'ଅଥେହ ଭାରତେ କ୍ଷେତ୍ରେ ବିଦେହାବିଧ ଉର୍ଜିତଃ ।
ଦେଶଃ ସଦ୍ଧର୍ମସଂପଦା ଦ୍ୟୈଃ ବିଦେହ ଇବ ରାଜତେ ।।
ଇତ୍ୟାଦି ବର୍ଣ୍ଣନୋପେତ ଦେଶସ୍ୟାଭ୍ୟନ୍ତରେ ପୁରଂ ।
ରାଜତେ କୁଣ୍ଡଲା ଭିଖ୍ୟଂ..............." (୮)

'ଆଚାରାଙ୍ଗ ସୂତ୍ର' (ii, ୧୫.୧୫., ୧୭), 'ସୂତ୍ର କୃତାଙ୍ଗ' (୧.୨, ୩.୨୨), 'କଳ୍ପସୂତ୍ର' (୧୧୦, ୧୧୨, ୧୨୮), ଉତ୍ତରାଧ୍ୟୟନ ସୂତ୍ର (୬·୧୭),ଭଗବତୀସୂତ୍ର ଟୀକା

(୨· ୯· ୧୨· ୨) ଇତ୍ୟାଦି ଶ୍ୱେତାମ୍ବର ଜୈନଗ୍ରନ୍ଥ ଗୁଡ଼ିକରେ ମଧ୍ୟ ମହାବୀରଙ୍କ ଜନ୍ମସ୍ଥାନ ବିଦେହ ଅନ୍ତର୍ଗତ ବୈଶାଳୀ ନିକଟ କୁଣ୍ଡପୁର ବୋଲି ଲିଖିତ ହୋଇଛି । (୯) । ଅତଏବ ଉପରୋକ୍ତ ଜୈନଗ୍ରନ୍ଥ ଓ ପ୍ରାତ୍ନତାତ୍ତ୍ୱିକ ଖନନରୁ ପ୍ରାପ୍ତ କେତେକ ଉପାଦାନରୁ (୧୦) ମହାବୀରଙ୍କ ଜନ୍ମସ୍ଥାନ ବିଦେହ ରାଜ୍ୟ ଅନ୍ତର୍ଗତ ବୈଶାଳୀ ନିକଟବର୍ତ୍ତୀ କୁଣ୍ଡପୁର ଅଥବା କୁଣ୍ଡଗ୍ରାମ ବୋଲି ସ୍ପଷ୍ଟ ପ୍ରମାଣିତ ହୁଏ । ଏହି କୁଣ୍ଡପୁର ଆଧୁନିକ ବସୁକୁଣ୍ଡ ସହିତ ଚିହ୍ନିତ ହୋଇଛି । S. Stevension (୧୧), B C.Law (୧୨), N L Dey (୧୩) ପ୍ରଭୃତି ଐତିହାସିକମାନେ ମଧ୍ୟ ଏହି ମତ ପୋଷଣ କରନ୍ତି ।

ମହାବୀରଙ୍କ ଜନ୍ମ ଓ ମୃତ୍ୟୁ କାଳ ସମ୍ପର୍କରେ ମଧ୍ୟ ଐତିହାସିକମାନେ ବିଭିନ୍ନ ମତ ବ୍ୟକ୍ତ କରନ୍ତି । H. Jacobi (୧୪), J. Charpentier (୧୫) ଏବଂ N .A Sastri (୧୬) ପ୍ରଭୃତିଙ୍କ ମତରେ ଖ୍ରୀ ପୂ. ୫୦୦ରେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ଜୈନ ପରମ୍ପରାନୁସାରେ ରାଜା ବିକ୍ରମଙ୍କ ଜନ୍ମର ୪୭୦ ବର୍ଷ ପୂର୍ବରୁ ମହାବୀରଙ୍କ ମୃତ୍ୟୁ ହୋଇ-ଥିଲା । ରାଜା ବିକ୍ରମ ଖ୍ରୀ.ପୂ. ୭୬ରେ ଜନ୍ମଗ୍ରହଣ କରିଥିଲେ । ଏବଂ ତାଙ୍କର ଅଠ ୮ ବର୍ଷ ପରେ ଅର୍ଥାତ୍ ଖ୍ରୀ.ପୂ. ୫୮ରେ ପ୍ରଚଳିତ ହୋଇଥିଲା । ଅତଏବ ମହାବୀରଙ୍କ ମୃତ୍ୟୁ ୪୭୦ + ୫୮ + ୧୮ = ଖ୍ରୀ.ପୂ. ୫୪୬ରେ ହୋଇଥିଲା । ମହାବୀର ୭୨ବର୍ଷ ବୟସରେ ଇହଲୀଳା ସାଙ୍ଗ କରିଥିଲେ । ତେଣୁ ତାଙ୍କର ଜନ୍ମ ୫୪୬ + ୭୨ = ଖ୍ରୀ.ପୂ. ୬୧୮ ରେ ହୋଇଥିବା ନିଶ୍ଚିତ । (୧୭) । କୋଶଳର ରାଜା ପ୍ରସେନଜିତ ଏବଂ ବୌଦ୍ଧ ଧର୍ମର ପ୍ରବର୍ତ୍ତକ ଗୌତମ ବୁଦ୍ଧଙ୍କର ଅଗ୍ରଜ ଥିଲେ ମହାବୀର । (୧୮ ସୁତରାଂ ବୁଦ୍ଧଦେବଙ୍କ ଜନ୍ମ ଖ୍ରୀ.ପୂ. ୫୬୭) ପୂର୍ବରୁ ମହାବୀର ଅବତୀର୍ଣ୍ଣ ହୋଇଥିବା ନିଶ୍ଚିତ । ଅତଏବ ମହାବୀରଙ୍କ ଜନ୍ମ ଖ୍ରୀ.ପୂ. ୫୪୦ ରେ ହୋଇଥିଲା ବୋଲି ଉପରୋକ୍ତ ଐତିହାସିକମାନ ମତ ଗ୍ରହଣୀୟ ନୁହେଁ ।

ମହାବୀରଙ୍କ ପିତା କ୍ଷତ୍ରିୟ ସିଦ୍ଧାର୍ଥ କୁଣ୍ଡପୁର ଅଥବା କୁଣ୍ଡଗ୍ରାମସ୍ଥ 'ନାତ' ଅଥବା 'ଜ୍ଞାତ୍ରିକ' କ୍ଷତ୍ରିୟମାନଙ୍କର କୁଳ ମୁଖ୍ୟ ତଥା କୁଣ୍ଡପୁରର ରାଜା ଥିଲେ । ସିଦ୍ଧାର୍ଥଙ୍କର ଅନ୍ୟ ଦୁଇଟି ନାମ ହେଲା ଶ୍ରେୟାଂସ ଓ ଯଶାଂସ । ସେ କାଶ୍ୟପଗୋତ୍ରୀ କ୍ଷତ୍ରିୟ ଥିଲେ । ମହାବୀରଙ୍କ ମାତାଙ୍କ ନାମ ଥିଲା କ୍ଷତ୍ରିୟାଣୀ ତ୍ରିଶଳା । ତ୍ରିଶଳାଙ୍କର ଅନ୍ୟ 'ଦୁଇଟି ନାମ ଥିଲା ବିଦେହଦତ୍ତା ଓ ପ୍ରିୟକାରିଣୀ । ତାଙ୍କ ପିତୃ କୁଳର ଗୋତ୍ର ଥିଲା ବଶିଷ୍ଠ । ସେ ବିଦେହର ଲିଚ୍ଛବି ବଂଶୀୟ ରାଜା ଚେଟକଙ୍କର ଭଗିନୀ ଥିଲେ । ଚେଟକଙ୍କର ପାଞ୍ଚଟି କନ୍ୟା— ଚେଲ୍ଲନା, ପ୍ରଭାବତୀ, ପଦ୍ମାବତୀ, ମୃଗାବତୀ ଏବଂ ଶିବା ଯଥାକ୍ରମେ ମଗଧର ରାଜା ବିମ୍ବିସାର, ସିନ୍ଧୁ ସୌଭିରର ରାଜା ଉଦୟନ, ଚମ୍ପାର ନରପତି ଦଧିବାହନ, କୌଶାମ୍ବୀ ନରେଶ ଶତା-ନିକର ଏବଂ ଅବନ୍ତୀ ନୃପ ଚଣ୍ଡ ପ୍ରଦ୍ୟୋତଙ୍କୁ ବିବାହ କରିଥିଲେ । ଏହିଭଳି ତତ୍-କାଳୀନ କେତେକ ପ୍ରତିଷ୍ଠିତ ରାଜବଂଶ ସହିତ ମାତୃକୁଳ ପକ୍ଷରୁ ମହାବୀରଙ୍କ ପାରିବାରିକ ସମ୍ପର୍କ ସ୍ଥାପିତ ହୋଇଥିଲା । ମହାବୀରଙ୍କ ପିତା ଓ ମାତା ଜୈନଧର୍ମର ତ୍ରୟୋବିଂଶତିତମ ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ଉପାସକ ଥିଲେ ।

ମହାବୀରଙ୍କ ଜନ୍ମ ସମ୍ପର୍କରେ ଜୈନମାନଙ୍କ ମଧ୍ୟରେ ପ୍ରଚଳିତ ଏକ କିମ୍ବଦନ୍ତୀରୁ ଜଣାଯାଏ, ମହାବୀର ପ୍ରଥମେ ଋଷଭଦତ୍ତ ନାମକ ଜଣେ ବ୍ରାହ୍ମଣଙ୍କ ସ୍ତ୍ରୀ ଦେବାନନ୍ଦାଙ୍କ ଜଠରରେ ସଞ୍ଚରିତ ହୋଇଥିଲେ । ଭ୍ରୂଣ ସଞ୍ଚାରର ଦୁଇମାସ ତେଇଶ ଦିନ ପରେ ଦେବାନନ୍ଦାଙ୍କ ଗର୍ଭକୁ ଦେବରାଜ ସନ୍ତ ଇନ୍ଦ୍ର ତାହା ଜାଣିବା ପରେ ମହାବୀରଙ୍କୁ କ୍ଷତ୍ରିୟାଣୀ ତ୍ରିଶଲାଙ୍କ ଗର୍ଭାଶୟକୁ ସ୍ଥାନାନ୍ତରିତ କରିଥିଲେ । ଏହାର ପ୍ରମାଣ ମଥୁରାରୁ ପ୍ରାପ୍ତ ଜୈନ ସ୍ତୁପଗୁଡ଼ିକରୁ ମିଳେ । ୧୯) । ସେଥିରେ ଉକ୍ତ କିମ୍ବଦନ୍ତୀଟି ଚିତ୍ରାକାରରେ ଖୋଦିତ ହୋଇଛି । ଏହି କିମ୍ବଦନ୍ତୀଟି ଶ୍ୱେତାମ୍ବର ସମ୍ପ୍ରଦାୟ ମଧ୍ୟରେ ପ୍ରଚଳିତ ଥିବାବେଳେ ଦିଗମ୍ବର ଜୈନମାନେ ତାହା ବିଶ୍ୱାସ କରନ୍ତି ନାହିଁ । ପୂର୍ବବର୍ତ୍ତୀ ଜିନମାନେ କ୍ଷତ୍ରିୟ କୁଳରେ ଜନ୍ମଗ୍ରହଣ କରିଥିଲେ । ତେଣୁ ମହାବୀର ବ୍ରାହ୍ମଣ କୁଳରେ ଭୂମିଷ୍ଠ ହେବା ପୂର୍ବରୁ ଇନ୍ଦ୍ର ତାଙ୍କୁ କ୍ଷତ୍ରିୟ କୁଳରେ ଜନ୍ମଗ୍ରହଣ କରାଇଲେ ବୋଲି ମଧ୍ୟ କେତେକ ମତ ବ୍ୟକ୍ତ କରନ୍ତି । (୨୦) ଏହିଭଳି ପୁରାଣରେ ମଧ୍ୟ ଦେବକୀଙ୍କ ଜରାୟୁରୁ ରୋହିଣୀଙ୍କ ଗର୍ଭକୁ ଶ୍ରୀକୃଷ୍ଣଙ୍କ ସ୍ଥାନାନ୍ତରଣର ଦୃଷ୍ଟାନ୍ତ ରହିଛି । ବ୍ରାହ୍ମଣ କୁଳରେ ଜନ୍ମଲାଭ କରୁ କରୁ କ୍ଷତ୍ରିୟ କୁଳରେ ମହାବୀର ଜନ୍ମଗ୍ରହଣ କଲେ । ସୁତରାଂ ଅନେକ ବ୍ରାହ୍ମଣ ତାଙ୍କର ଶିଷ୍ୟ ହୋଇଥିଲେ ବୋଲି ଅନୁମାନ କରାଯାଏ । ମହାବୀରଙ୍କ ଜନ୍ମପୂର୍ବରୁ ତାଙ୍କର ମାତା ଚଉଦଟି ସ୍ୱପ୍ନ ଦେଖିଥିଲେ ବୋଲି ପ୍ରବାଦ ଅଛି । ସେହି ସ୍ୱପ୍ନଗୁଡ଼ିକ ହେଲା—ହସ୍ତୀ, ବୃଷଭ, ସିଂହ, ଦେବୀଶ୍ରୀ ପୁଷ୍ପମାଳ, ଚନ୍ଦ୍ର, ସୂର୍ଯ୍ୟ, ଧ୍ୱଜ, କଳସ, କମଳ ହ୍ରଦ, ସମୁଦ୍ର ସ୍ୱର୍ଗଲୋକର କୌଣସି ଏକ ସ୍ଥାନ, ମଣିମୁକ୍ତା ଏବଂ ଅଗ୍ନିଶିଖା ।

ମହାବୀରଙ୍କ ଜନ୍ମୋତ୍ସବ ଦଶଦିନ ଧରି ମହା ଆଡ଼ମ୍ବରରେ ଅନୁଷ୍ଠିତ ହୋଇଥିଲା । ତାଙ୍କ ଜନ୍ମ ଦିବସରେ କୁଣ୍ଡ ଗ୍ରାମର ସୁଶୋଭିତ ଏବଂ ସୁସଜ୍ଜିତ ହେଲା । ରାଜ ବନ୍ଦୀମାନେ କାରାଗାରରୁ ମୁକ୍ତିଲାଭ କରିଥିଲେ । ବିଭିନ୍ନ ଦେବ ଦେବୀଙ୍କୁ ନୈବେଦ୍ୟ ଅର୍ପଣ କରାଯାଇଥିଲା । କର ହାର କେତେକାଂଶରେ ହ୍ରାସ ପାଇଥିଲା । ଜନ ସାଧାରଣ ନୃତ୍ୟ, ସଙ୍ଗୀତ ପାନ, ଭୋଜନ ଆଦିରେ ଆପ୍ୟାୟିତ ହୋଇଥିଲେ । (୨୧) । ମହାବୀରଙ୍କ ଜନ୍ମପରେ ଜ୍ଞାତ୍ରିକ କ୍ଷତ୍ରିୟ କୁଳରେ ଧନ ଧାନ୍ୟ ଓ ଯଶ ସଙ୍ଗେସଙ୍ଗେ ମାନବୀୟ ସ୍ନେହ-ସୌହାର୍ଦ୍ଦ୍ୟ ବୃଦ୍ଧି ପାଇବାରୁ ତାଙ୍କର ନାମ ରଖାଗଲା ବର୍ଦ୍ଧମାନ । ଶୈଶବାବସ୍ଥାରୁ ହିଁ ବର୍ଦ୍ଧମାନ ସତତ ଚିନ୍ତାଶୀଳ ଥିଲେ । ରାଜ ବିଭବ ପ୍ରତି ତାଙ୍କର ଆସକ୍ତି ରହିଲା ନାହିଁ । ବିଭିନ୍ନ ଶାସ୍ତ୍ର ଅଧ୍ୟୟନ କଲାପରେ ତ୍ରୟୋଦଶ ବର୍ଷ ବୟସରେ ବୈରାଗ୍ୟ ମନୋଭାବ ସତ୍ତ୍ୱେ ପିତାମାତାଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ସେ ଯଶୋଦା ନାମ୍ନୀ ଏକ ରୂପବତୀ କ୍ଷତ୍ରିୟ କନ୍ୟାଙ୍କ ପାଣିଗ୍ରହଣ କରିଥିଲେ । ଯଶୋଦାଙ୍କ ପିତାଙ୍କ ନାମ ଥିଲା ଜିତଶତ୍ରୁ । କ୍ରମେ ତାଙ୍କର ଅଣୋଜ୍ଜା (ଅନ୍ୟ ନାମ ପ୍ରିୟଦର୍ଶନା) ନାମକ ଏକ କନ୍ୟା ଜାତ ହୋଇଥିଲା । ବର୍ଦ୍ଧମାନଙ୍କ ଭଗିନୀ ପୁତ୍ର ଜମାଲିଙ୍କୁ ଅଣୋଜ୍ଜା ବିବାହ କରିଥିଲେ । ଜମାଲି ପ୍ରଥମେ ବର୍ଦ୍ଧମାନ ମହାବୀରଙ୍କ ଶିଷ୍ୟ ଥିଲେ । କିନ୍ତୁ ପରେ ଜମାଲି ଜୈନ ସମ୍ପ୍ରଦାୟ ମଧ୍ୟରେ ପ୍ରଥମ ବିଭେଦ ସୃଷ୍ଟି କରିବାର ନେତୃତ୍ୱ ନେଇଥିଲେ ।

ଗୃହସ୍ଥ ହୋଇ ମଧ୍ୟ ବର୍ଦ୍ଧମାନଙ୍କର ସାଂସାରିକ ମୋହମାୟା ପ୍ରତି କ୍ରମଶଃ ବିତୃଷ୍ଣା ଜାତ ହେଲା । ସର୍ବଦା ସେ ଗଭୀର ଚିନ୍ତାରେ ମନୋନିବେଶ କରୁଥିଲେ । ଜୀବନ ଓ ମରଣ ସମ୍ପର୍କରେ ତାଙ୍କ ମନରେ ନାନା ପ୍ରଶ୍ନ ଜାଗି ଉଠିଲା । ତାଙ୍କର ଦୃଢ଼ବୋଧ ହେଲା ଯେ ଏ ଯୌବନ କ୍ଷଣସ୍ଥାୟୀ ଏବଂ ଏ ସଂସାର ଦୁଃଖ ଦୁର୍ଦ୍ଦଶାମୟ । ଏହି ଦୁଃଖ ଦୁର୍ଦ୍ଦଶାରୁ ମନୁଷ୍ୟ କିପରି ତ୍ରାହି ପାଇବ ଏବଂ ମୋକ୍ଷ ଲାଭ କରିବାର ଉପାୟ କ'ଣ ?—ଏସବୁ ବିଷୟ ତାଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲା । ତେଣୁ ୩୦ ବର୍ଷକାଳ ଗୃହସ୍ଥ ଜୀବନ ଯାପନ କଲାପରେ ସେ ସନ୍ନ୍ୟାସ ଗ୍ରହଣ କରିବାକୁ ସ୍ଥିର କଲେ । ମୋକ୍ଷ ମାର୍ଗର ଅନୁସନ୍ଧାନ ତଥା ପ୍ରେମ ଓ ମୈତ୍ରୀ ଭାବ ସମନ୍ୱିତ ଏବଂ ଜାତିଭେଦ ବିହୀନ ଏକ ସାର୍ବଜନୀନ ଧର୍ମ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ସେ ପ୍ରତିଜ୍ଞା କଲେ । ଇତି ମଧ୍ୟରେ ତାଙ୍କର ପିତା ମାତାଙ୍କର ମୃତ୍ୟୁ ହୋଇଯାଇଥିଲା । ତେଣୁ ସଂସାର ବିରାଗୀ ବର୍ଦ୍ଧମାନ ତାଙ୍କର ଜ୍ୟେଷ୍ଠ ଭ୍ରାତା ନନ୍ଦିବର୍ଦ୍ଧନ, ଭ୍ରାତୃଜାୟା ଜ୍ୟେଷ୍ଠା, ଅନ୍ୟାନ୍ୟ ଗୁରୁଜନ ଓ ରାଜ୍ୟ ମୁଖ୍ୟଙ୍କ ସମ୍ମତିରେ ୩୦ ବର୍ଷ ବୟସରେ ଗୃହ ସଂସାର ତ୍ୟାଗ କରି ସନ୍ନ୍ୟାସ ବ୍ରତ ଅବଲମ୍ବନ କଲେ ।

ଗୃହତ୍ୟାଗ କଲାପରେ ବର୍ଦ୍ଧମାନ ପ୍ରଥମେ ନାୟସଣ୍ଡବଣ (ଜ୍ଞାତଷଣ୍ଡ) ନାମକ ଉଦ୍ୟାନରେ ପ୍ରବେଶ କଲେ । ସେଠାରେ ଏକ ଅଶୋକ ବୃକ୍ଷ ମୂଳେ ସେ ଅଢ଼େଇ ଦିନ (ଦୁଇଦିନ ଓଳିଏ) ଅତିବାହିତ କରି ନିଜର ଆହାର, ପରିଧେୟ ତଥା ଆଭରଣ ପରିତ୍ୟାଗ କଲେ ଏବଂ ମୁଣ୍ଡିତ ହୋଇଥିଲେ । ତା'ପରେ ସେ ଭିକ୍ଷୁ ବେଶରେ ବିଚରଣ କରି କୁମ୍ମାର ନାମକ ଏକ ଗ୍ରାମରେ ପହଞ୍ଚିଲେ । ସେଠାରେ ସେ ନିଜର ଶରୀରକୁ ଅବହେଳା କରି ୧୩ ମାସ କାଳ ଧ୍ୟାନମଗ୍ନ ହେଲେ । ତା'ପରେ ବର୍ଦ୍ଧମାନ ସମସ୍ତ ଆବଶ୍ୟକୀୟ ପଦାର୍ଥ ଏପରିକି ନିଜର ଏକ-ମାତ୍ର ପରିଧେୟ ସୁବର୍ଣ୍ଣବାଳୁକା ନଦୀରେ ନିକ୍ଷେପ କରି ଦିଗମ୍ବର ହୋଇଗଲେ । ଏହାପରେ ସେ ଭିକ୍ଷା ସଂଗ୍ରହ ତଥା ଧର୍ମ ସମ୍ପର୍କୀୟ ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିବା ଉଦ୍ଦେଶ୍ୟରେ ଉଲଗ୍ନ ହୋଇ ପୂର୍ବ-ଭାରତର ବିଭିନ୍ନ ସ୍ଥାନ ପରି-ବ୍ରଜନ କଲେ । ଏହି ସମୟରେ ସେ ଅରଣ୍ୟ, ବୃକ୍ଷମୂଳ, ପଥପ୍ରାନ୍ତର ବା ଶ୍ମଶାନ ଭୂମିରେ ଅବସ୍ଥାନ କରୁଥିଲେ । ଉଲଗ୍ନ ଭାବରେ ଭ୍ରମଣ କଲାବେଳେ ସେ ନାନା ବିଦ୍ରୂପ, କ୍ଲେଶ ଓ ନିର୍ଯ୍ୟାତନାର ସମ୍ମୁଖୀନ ହୋଇଥିଲେ । କେତେକ ସ୍ଥାନରେ ଲୋକେ ତାଙ୍କୁ ପାଗଳ ମନେକରି ପ୍ରହାର କରିଥିଲେ । ଅନ୍ୟ କେତେକ ସ୍ଥାନରେ ଲୋକେ ତାଙ୍କ ଉପରକୁ ମାଟି ପଥର ଆଦି ନିକ୍ଷେପ କରିଥିଲେ । ରାଢ଼ (ଦକ୍ଷିଣ ପଶ୍ଚିମବଙ୍ଗ) ଅଞ୍ଚଳର ଲୋକେ ତାଙ୍କ ପଛରେ କୁକୁର ଲଗାଇ ଦେଇଥିଲେ ଏବଂ ତାଙ୍କୁ ଗାଳି ଗୁଲଜ କରିଥିଲେ । ଆହୁ କେତେକ ତାଙ୍କର ତପସ୍ୟା ଭଗ୍ନ କରିବା ନିମନ୍ତେ ନାନା ବାଧାବିଘ୍ନ ସୃଷ୍ଟି କରୁଥିଲେ । (୨୨) । ଏସବୁ ସତ୍ତ୍ୱେ ବର୍ଦ୍ଧମାନ ଅବିଚଳିତ ଓ ଅଟଳ ଭାବେ ନିଜର ଲକ୍ଷ୍ୟ ସାଧନ ଦିଗରେ ଆଗେଇଥିଲେ । ସନ୍ନ୍ୟାସ ଜୀବନର ଦ୍ୱିତୀୟ ବର୍ଷରେ ନାଳନ୍ଦା ପରିଦର୍ଶନ କଲାବେଳେ ଗୋଶାଳ ମଙ୍ଖଲିପୁତ୍ର ନାମକ ଜଣେ ସନ୍ନ୍ୟାସୀଙ୍କ ସହିତ ବର୍ଦ୍ଧମାନଙ୍କର ସାକ୍ଷାତ ହୋଇଥିଲା । ଉଭୟେ ମିଳିତ ଭାବରେ କିଛି କାଳ ଯୋଗ ସାଧନା କରିଥିଲେ । କିନ୍ତୁ କ୍ରମେ ଉଭୟଙ୍କ

ମଧ୍ୟରେ ମେତେକ ମତଭେଦ ହେବା ଯୋଗୁଁ ଗୋଶାଳ ବର୍ଦ୍ଧମାନଙ୍କ ସାନ୍ନିଧ୍ୟ ତ୍ୟାଗ କରିଥିଲେ । ତା'ପରେ ଗୋଶାଳ 'ଆଜିବକ' ନାମକ ଏକ ସ୍ୱତନ୍ତ୍ର ସମ୍ପ୍ରଦାୟ ଗଠନ କରିଥିଲେ ।

ମୋକ୍ଷ ପ୍ରାପ୍ତି ଉଦ୍ଦେଶ୍ୟରେ ବର୍ଦ୍ଧମାନ ଦୀର୍ଘ ୧୨ ବର୍ଷ କାଳ କଠୋର ଆତ୍ମ ସଂଯମ ଓ ତାପସ ବ୍ରତ ପାଳନ କରିଥିଲେ । ଏହି ସମୟ ମଧ୍ୟରେ ସେ ଦନ୍ତମାର୍ଜନ, ସ୍ନାନ, ପାନ, ଭୋଜନାଦି ପରିହାର କରିଥିଲେ । ଗ୍ରୀଷ୍ମ ଋତୁରେ ପ୍ରଚଣ୍ଡ ରୌଦ୍ର ତାପରେ ଏବଂ ଶୀତ ଋତୁରେ ବୃକ୍ଷ ଛାୟା ତଳେ ସେ ତପସ୍ୟା କରିଥିଲେ । ନିବିଷ୍ଟ ଭାବରେ ପଦ୍ମାସନ, ବୀରାସନ, ଗୋଦୋହିକ ଆଦି ବିଭିନ୍ନ ଆସନ ଓ କାୟୋତ୍ସର୍ଗ ମୁଦ୍ରାରେ ଧ୍ୟାନମଗ୍ନ ଥିବା-ବେଳେ ତାଙ୍କ ଶରୀରରେ କୀଟ ପତଙ୍ଗାଦି ଚଳ ପ୍ରଚଳ କରୁଥିଲେ ମଧ୍ୟ ତାହା ସେ ଅନୁଭବ କରିପାରୁନଥିଲେ । ଅହର୍ନିଶ ଅନଶନ ଓ କଠୋର ତପସ୍ୟା ଦ୍ୱାରା ତାଙ୍କର ଶରୀର ଅସ୍ଥି କଙ୍କାଳ ସାର ହୋଇ କ୍ଷୟ ପ୍ରାପ୍ତ ହେବାକୁ ଲାଗିଲା । କିନ୍ତୁ ନିର୍ବିକାର ଭାବରେ ସେ ନିଜର ଲକ୍ଷ୍ୟ ସାଧନ ଦିଗରେ ଆଗେଇ ଚାଲିଲେ । (୧୩) ତାଙ୍କର ଧ୍ୟାନ, ଧ୍ୟେୟ, ତଥା ଧ୍ୟାନ ପ୍ରାପ୍ତିର ଏକମାତ୍ର ଲକ୍ଷ୍ୟ ଥିଲା ଆତ୍ମୋପଲବ୍ଧି ।

ଏହିପରି ଭାବରେ ଦୀର୍ଘ ୧୨ ବର୍ଷର ତପଶ୍ଚରଣ ପରେ ତ୍ରୟୋଦଶ ବର୍ଷରେ ବୈଶାଖ ମାସର ଶୁକ୍ଳ ଦଶମୀ ଦିନ ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ରରେ ଜୃମ୍ଭିକା ଗ୍ରାମ ଉପ-କଣ୍ଠରେ ପ୍ରବାହିତ ଋଜୁପାଳିକା ନଦୀତଟସ୍ଥ ଏକ ଶାଳବୃକ୍ଷ ମୂଳେ ଖ୍ରୀ.ପୂ. ୫୫୭ରେ ବର୍ଦ୍ଧମାନ କେବଳ ଜ୍ଞାନ ବା ଦିବ୍ୟ ଜ୍ଞାନ ଲାଭ କରିଥିଲେ । (୧୪) । ତତ୍ପରେ ସେ କେବଳୀନ୍, ସର୍ବଜ୍ଞ, ସର୍ବଦ୍ରଷ୍ଟା ଓ ଅର୍ହତ ନାମରେ ପରିଚିତ ହେଲେ । ସେତେବେଳେ ତାଙ୍କୁ ୪୨ ବର୍ଷ ବୟସ ହୋଇଥିଲା । ସାଂସାରିକ ଶୃଙ୍ଖଳ ବା ବନ୍ଧନ (ଗ୍ରନ୍ଥି)କୁ ଛିନ୍ନ କରିଥିବାରୁ ସେ ନିର୍ଗ୍ରନ୍ଥ [ସଂସାର ବନ୍ଧନ ମୁକ୍ତ ବା ସଂସାର ଆସକ୍ତି ଶୂନ୍ୟ] ନାମରେ ମଧ୍ୟ ଅଭିହିତ ହେଲେ । ଅତିଶୟ କାୟିକ କ୍ଲେଶ ଦ୍ୱାରା ସମସ୍ତ ଇନ୍ଦ୍ରିୟ ବା କାମନାକୁ ଦମନ ବା ଜୟ କରି ବର୍ଦ୍ଧମାନ ଆଧ୍ୟାତ୍ମିକ ପରାକାଷ୍ଠା ତଥା ବୀରତ୍ୱର ପରିଚୟ ଦେଇଥିଲେ । ତେଣୁ ସେ 'ଜିନ' ଅଥବା ରିପୁଜୟୀ ଏବଂ ମହାବୀର ନାମରେ ଖ୍ୟାତ ହେଲେ । ଜିନ୍ ଶବ୍ଦର ଅର୍ଥ 'ରାଗ ଦ୍ୱେଷାନ୍ ବା କର୍ମ ଶତ୍ରୂନ୍ ଜୟତିତି ଜିନଃ'-ରାଗ ଦ୍ୱେଷ ପ୍ରଭୃତି ଓ କର୍ମ ଶତ୍ରୁକୁ ଜୟ କରିଥିବା ବ୍ୟକ୍ତି ହିଁ ଜିନ ପଦବାଚ୍ୟ । ଏହି ଜିନତ୍ୱ ଲାଭ କରିବା ଯେଉଁ ଧର୍ମର ଲକ୍ଷ୍ୟ ତାହାହିଁ ଜୈନ ଧର୍ମ । ଦୀର୍ଘ ୧୨ ବର୍ଷ ତପସ୍ୟା କରିବା ଫଳରେ ମହାବୀରଙ୍କର ଆତ୍ମା କର୍ମମଳରୁ ମୁକ୍ତି ଲାଭ କରିଥିଲା । ତାଙ୍କର ଅବିଦ୍ୟା ଦୂର ହେଲା । ସେ ସର୍ବଜ୍ଞ, ସର୍ବଦର୍ଶୀ ପରମାତ୍ମା ହେଲେ । ଏପରିକି ବୌଦ୍ଧ ଗ୍ରନ୍ଥରେ ମଧ୍ୟ ତାଙ୍କୁ ସର୍ବଜ୍ଞ, ସର୍ବଦର୍ଶୀ, ଲୋକପ୍ରିୟ ଏବଂ ଅନୁଭବୀ ଲୋକନେତା ଭାବେ ବର୍ଣ୍ଣନା କରା-ଯାଇଛି । (୧୫) ।

ଜିନ ହେବା ପରେ ବର୍ଦ୍ଧମାନ ମହାବୀର ଦୀର୍ଘ ୩୦ ବର୍ଷକାଳ ବିଭିନ୍ନ ସ୍ଥାନରେ ଅର୍ଦ୍ଧ ମାଗଧୀ ଭାଷାରେ ଧର୍ମବାଣୀ ପ୍ରଚାର କରିଥିଲେ । ଏହି ସମୟ ମଧ୍ୟରେ ସେ ମଗଧ,

ଅଙ୍ଗ, ବୈଶାଳୀ, ରାଜଗୃହ, ଚମ୍ପା, ମିଥିଳା, ବଦେହ, ଶ୍ରାବସ୍ତୀ, ପାପା (ପାବା) ପ୍ରଭୃତି ସ୍ଥାନରେ—ଧର୍ମପ୍ରଚାର କରିଥିଲେ । (୨୬), ଏହା ବ୍ୟତୀତ କଳିଙ୍ଗର କୋଶଳ ଓ ମୋଶଲରେ ଧର୍ମ ପ୍ରଚାର କରିଥିବାର ପ୍ରମାଣ ମିଳେ । (୨୭) । ଏହି ସମସ୍ତ ମଧ୍ୟରେ, ଅର୍ଥାତ୍ ଖ୍ରୀ ପୂ ୫୬୭ ରୁ ୫୪୭ ମଧ୍ୟରେ ପ୍ରତ୍ୟେକ ବର୍ଷ ବର୍ଷାଋତୁର ଚାରିମାସ (ଚାତୁର୍ମାସ୍ୟା) ବ୍ୟତୀତ ଅବଶିଷ୍ଟ ଆଠମାସ ସେ ଧର୍ମ ପ୍ରଚାରରେ ବ୍ୟାପୃତ ରହୁଥିଲେ ।

କଳ୍ପସୂତ୍ର (୨୮)ରୁ ଜଣାଯାଏ ଯେ ଗୃହତ୍ୟାଗ ଠାରୁ (ଖ୍ରୀ ପୂ ୫୮୮) ମୁକ୍ତି ପର୍ଯ୍ୟନ୍ତ (ଖ୍ରୀ ପୂ ୫୪୭) ତାଙ୍କର ଦୀର୍ଘ ୪୨ ବର୍ଷର ସନ୍ନ୍ୟାସ ଜୀବନକାଳ ମଧ୍ୟରେ ମହାବୀର ୪୨ଟି ବର୍ଷାଋତୁ (ଚାତୁର୍ମାସ୍ୟା) ନିମ୍ନଲିଖିତ ସ୍ଥାନମାନଙ୍କରେ ଯାପନ କରିଥିଲେ—

୧ । ଅସ୍ଥି ଗ୍ରାମ — ପ୍ରଥମ ବର୍ଷାଋତୁ
୨ । ଚଂପା ଏବଂ ପୃଷ୍ଠି ଚଂପା — ପରବର୍ତ୍ତୀ ତିନୋଟି ବର୍ଷାଋତୁ
୩ । ବୈଶାଳି ଏବଂ ବାଣିଜ୍ୟ ଗ୍ରାମ — ପରବର୍ତ୍ତୀ ବାରଟି ବର୍ଷାଋତୁ
୪ । ରାଜଗୃହ ଏବଂ ନାଳନ୍ଦା — ପରବର୍ତ୍ତୀ ଚଉଦଟି ବର୍ଷାଋତୁ
୫ । ମିଥିଳା — ପରବର୍ତ୍ତୀ ଛଅଟି ବର୍ଷାଋତୁ
୬ । ଭଦ୍ରିକା — ପରବର୍ତ୍ତୀ ଦୁଇଟି ବର୍ଷାଋତୁ
୭ । ଆଲଭିକା — ପରବର୍ତ୍ତୀ ଗୋଟିଏ ବର୍ଷାଋତୁ
୮ । ପଣିତ ଭୂମି — ପରବର୍ତ୍ତୀ ଗୋଟିଏ ବର୍ଷାଋତୁ
୯ । ଶ୍ରାବସ୍ତି — ପରବର୍ତ୍ତୀ ଗୋଟିଏ ବର୍ଷାଋତୁ
୧୦ । ପାପା (ପାବା) — ଶେଷ ବର୍ଷାଋତୁ

ଉପରୋକ୍ତ ୧୦ଟି ସ୍ଥାନରେ ଭୌଗୋଳିକ ସ୍ଥିତି ଓ ଆଧୁନିକ ନାମ ଏଠାରେ ଉଲ୍ଲେଖ କରିବା ସମୀଚୀନ ମନେହୁଏ । ଅସ୍ଥି ଗ୍ରାମ ହେଉଛି ଆଧୁନିକ ପଶ୍ଚିମ ବଙ୍ଗର ବର୍ଦ୍ଧମାନ ବା ବର୍ଦ୍ଧମାନ (୨୯) । କିନ୍ତୁ ଐତିହାସିକ B.C. Law (୩୦)ଙ୍କ ମତରେ ତାହା ବୈଶାଳି ଠାରୁ ପାବା ମଧ୍ୟବର୍ତ୍ତୀ ମୁଖ୍ୟ ସଡ଼କ ପାର୍ଶ୍ୱରେ ଅବସ୍ଥିତ ଆଧୁନିକ ହାଣିଆ ସହ ସମାନ । ଚଂପା ଥିଲା ଅଙ୍ଗ ରାଜ୍ୟର ରାଜଧାନୀ ଏବଂ ତାହା ବିହାର ପ୍ରଦେଶର ଭାଗଲପୁର ନିକଟବର୍ତ୍ତୀ ଆଧୁନିକ ଚଂପାନଗର ବା ଚଂପାପୁର । ପୃଷ୍ଠି ଚମ୍ପା ହେଉଛି ଚଂପା ସନ୍ନିକଟ ଏକ ସ୍ଥାନ । ବିହାର ପ୍ରଦେଶ ଅନ୍ତର୍ଗତ ବୈଶାଳି ଜିଲ୍ଲାର ବସ୍ରାହ ସହିତ ବୈଶାଳି ଚିହ୍ନିତ ହୋଇଛି । ବାଣିଜ୍ୟ ଗ୍ରାମ ହେଉଛି ବସ୍ରାହ ନିକଟବର୍ତ୍ତୀ ଆଧୁନିକ ବନିଆ । (୩୧) । ମହାବୀରଙ୍କ ସମୟରେ ରାଜଗୃହ ମଗଧ ରାଜ୍ୟର ରାଜଧାନୀ ଥିଲା । ଅଧୁନା ତାହା ହେଉଛି ବିହାରର ଆଧୁନିକ ରାଜଗିର୍ । ନାଳନ୍ଦା ରାଜଗୃହ ଠାରୁ ଉତ୍ତର ପଶ୍ଚିମରେ ୧୦ କି.ମି ଦୂରରେ ବିହାର ସରିଫ ସମୀପବର୍ତ୍ତୀ ବରଗାଓଁ ସହିତ ଚିହ୍ନିତ ହୋଇଛି । (୩୨), ମିଥିଳା ହେଉଛି ମୋଜାଫରପୁର ଓ ଦରଭଙ୍ଗା ଜିଲ୍ଲା ଏବଂ ନେପାଳ ସୀମାରେ ଅବସ୍ଥିତ ଆଧୁନିକ ଜନକପୁର (୩୩) । ପ୍ରାଚୀନ ଅଙ୍ଗରାଜ୍ୟ ଅନ୍ତର୍ଗତ ଭଦ୍ରିକା ବିହାର ଆଧୁନିକ ମୋଙ୍ଗେର

ସହ ସମାନ । ୩୪) A Cunningham ଏବଂ A.F.R,Hoernle ଆଲଭିଡାକୁ ଉତ୍ତର ପ୍ରଦେଶ ଅନ୍ତର୍ଗତ ଉନାଓ ଜିଲ୍ଲାର ନେଓ୍ବଲ ସହିତ ଚିହ୍ନିତ କରିଛନ୍ତି । କିନ୍ତୁ N.L. Dey ତାହା ଉତ୍ତର ପ୍ରଦେଶର ଇଟାଓ୍ବା ଠାରୁ ୪° କିଲୋମିଟର ଉତ୍ତର ପଶ୍ଚିମରେ ଅବସ୍ଥିତ ଅଭିଓ୍ବ ବୋଲି ମତବ୍ୟକ୍ତ କରିଛନ୍ତି । (୩୫) ପଣିତ ଭୂମି ଅଥବା ପଣିସ୍ୱ ଭୂମି ରାଢ଼ ବା ଦକ୍ଷିଣ ପଶ୍ଚିମ ବଙ୍ଗରେ ଅବସ୍ଥିତ ଏକ ଅଞ୍ଚଳ । (୩୬ । ଶ୍ରାବସ୍ତି ମହାବୀରଙ୍କ ସମୟରେ କୋଶଳ ରାଜ୍ୟର ରାଜଧାନୀ ଥିଲା । ତାହା ରାପ୍ତୀ ନଦୀ କୂଳରେ ଅବସ୍ଥିତ ଆଧୁନିକ ସହେତ - ମହେତ ସହିତ ଚିହ୍ନିତ ହୋଇଛି । ୩୭ ପାପା (ପାବା) ହେଉଛି ବିହାର ସରିଫ୍ ଠାରୁ ୧° କିଲୋମିଟର ଦୂରରେ ଅବସ୍ଥିତ ପାଟଣା ଜିଲ୍ଲାର ଆଧୁନିକ ପାବା ବା ପାବାପୁରୀ । (୩୮) । ଉପରୋକ୍ତ ସ୍ଥାନ ଗୁଡ଼ିକର ଭୌଗଳିକ ଅବସ୍ଥିତିରୁ ଜଣାଯାଏ ଯେ ମହାବୀର ଉତ୍ତର ପ୍ରଦେଶ, ବିହାର ଓ ପଶ୍ଚିମ ବଙ୍ଗର ବିଭିନ୍ନ ସ୍ଥାନରେ ଚତୁର୍ମାସ୍ୟା ଅତିବାହିତ କରିଥିଲେ ।

ଜୃମ୍ଭିକା ଗ୍ରାମ ଠାରେ କେବଲୀନ୍ ଅଥବା ଜିନ ହେବାପରେ ମହାବୀର ମୌନ-ବ୍ରତ ପାଳନ ପୂର୍ବକ ଛ'ଅଠି ଦିନ ବିଭିନ୍ନ ସ୍ଥାନରେ ପରିଭ୍ରମଣ କରିଥିଲେ । ତା'ପରେ ସେ ମଗଧର ରାଜଧାନୀ ରାଜଗୃହରେ ପ୍ରବେଶ କରିଥିଲେ । ରାଜଗୃହ ଉପକଣ୍ଠସ୍ଥ ବିପୁଳାଚଳରେ ସେ ନିଜର ମୌନବ୍ରତ ଉଦ୍ଯାପନ କରିଥିଲେ । ସେଠାରେ ଏକ 'ସମବଶରଣ' (ଧର୍ମ ସଭା) ଅନୁଷ୍ଠିତ ହୋଇଥିଲା । ସେହି 'ସମବଶରଣ'ରେ ସେ ତାଙ୍କର ପ୍ରଥମ ଧର୍ମବାଣୀ ପ୍ରଚାର କରିଥିଲେ । ସେଠାରେ ସେ ଏଗାର ଜଣ ଜ୍ଞାନୀ ବ୍ରାହ୍ମଣଙ୍କୁ ଜୈନ ଧର୍ମରେ ଦୀକ୍ଷିତ କରାଇଥିଲେ । ଏହି ଏଗାର ଜଣ ବ୍ରାହ୍ମଣ ହିଁ ହେଲେ ତାଙ୍କର ପ୍ରଥମ ଓ ମୁଖ୍ୟ ଶିଷ୍ୟ । ସେମାନେ ଗଣଧର ବା ଗାନ୍ଧାର ନାମରେ ଖ୍ୟାତ । ସେମାନଙ୍କର ନାମ ହେଲା ଇନ୍ଦ୍ରଭୂତି, ଅଗ୍ନିଭୂତି, ବାୟୁଭୂତି, ବ୍ୟକ୍ତ, ସୁଧର୍ମା, ମଣ୍ଡିକତ, ମୟୂର ପୁତ୍ର, ଅକମ୍ପିତ, ଅଚଳ ଭ୍ରାତା, ମେତାର୍ଯ୍ୟ ଏବଂ ପ୍ରଭାସ । ଇନ୍ଦ୍ରଭୂତି ଓ ସୁଧର୍ମାଙ୍କ ବ୍ୟତୀତ ଅନ୍ୟ ସମସ୍ତେ ମହାବୀରଙ୍କ ଜୀବଦ୍ଦଶାରେ ହିଁ ମୃତ୍ୟୁବରଣ କରିଥିଲେ । ମହାବୀରଙ୍କ ପ୍ରତିଷ୍ଠିତ ଜୈନ ସଙ୍ଘର ସୁପରିଚାଳନା କ୍ଷେତ୍ରରେ ଏହି ଗଣଧରମାନଙ୍କ ଭୂମିକା ମହତ୍ତ୍ୱପୂର୍ଣ୍ଣ । ୧୨ଟି ଅଙ୍ଗ, ୧୪ଟି ପୂର୍ବ ଏବଂ ସମସ୍ତ ଗଣିପିଡ଼ଗ ପ୍ରଭୃତି ଜୈନ ଧର୍ମଗ୍ରନ୍ଥ ଗୁଡ଼ିକ ସମ୍ପର୍କରେ ସେମାନଙ୍କର ଅସୀମ ଜ୍ଞାନ ଥିଲା । (୩୯) । ଏହି ଏଗାର ଜଣ ଗଣଧରଙ୍କ ବ୍ୟତୀତ ମଗଧର ରାଜା ଶ୍ରେଣିକ (ବିମ୍ବିସାର), ତାଙ୍କର ରାଣୀ ଚେଲ୍ଲନା ଓ ଅନ୍ୟାନ୍ୟ ପରିବାରବର୍ଗ ତଥା ତାଙ୍କର ସୈନ୍ୟମାନେ ମଧ୍ୟ ମହାବୀରଙ୍କ ପ୍ରଥମ ଧର୍ମ ପ୍ରବଚନ ଶୁଣି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

କ୍ରମଶଃ ମହାବୀରଙ୍କ ଅସାଧାରଣ ପ୍ରତିଭା ଓ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ ଅସଂଖ୍ୟ ନରନାରୀ ତାଙ୍କର ଦୀକ୍ଷା ଗ୍ରହଣ କରିଥିଲେ । ଏହାଦ୍ୱାରା ଜୈନ ସଙ୍ଘ ପୁଷ୍ଟ ହୋଇଥିଲା ।

ମହାବୀରଙ୍କ ଶିଷ୍ୟ ଓ ଶିଷ୍ୟାମାନଙ୍କ ମଧ୍ୟରେ ୧୪୦୦୦ ଶ୍ରମଣ [ଭିକ୍ଷୁ], ୩୬,୦୦୦ ଭିକ୍ଷୁଣୀ, ୧,୫୯,୦୦୦ ସାଧାରଣ ସନ୍ନ୍ୟାସୀ ଓ ୩,୧୮,୦୦୦ ସାଧାରଣ ସନ୍ନ୍ୟାସିନୀ ରୂପେ ଜୈନ ସଙ୍ଘରେ ଯୋଗଦାନ କରିଥିଲେ । ମହାବୀରଙ୍କ ଅନୁଗାମୀ ମାନଙ୍କ ମଧ୍ୟରେ ଅନେକ ଶ୍ରମିକ, ବଣିକ ତଥା ରାଜନ୍ୟ ଶ୍ରେଣୀର ନରନାରୀ ମଧ୍ୟ ଥିଲେ । ପାଲି ଉପାଲି ସୂତ୍ର [୪୦] ଓ ଜୈନ ଭଗବତୀ ସୂତ୍ର [୪୧] ରୁ ମହାବୀରଙ୍କ ଧନୀକ ଶ୍ରେଣୀର ଶିଷ୍ୟମାନଙ୍କର ଏକ ବିବରଣୀ ମିଳେ । ସେମାନଙ୍କ ମଧ୍ୟରେ ନାଳନ୍ଦା ନିକଟବର୍ତ୍ତୀ ବଳକ ଗ୍ରାମର ଉପାଳି, ଶ୍ରାବସ୍ତୀର ମୃଗଧର, ରାଜଗୃହର ବିଜୟ, ମହାସୟତ ଓ ସୁଦର୍ଶନ ବାଣିଜ୍ୟ ଗ୍ରାମର ଆନନ୍ଦ, ଚମ୍ପାର କାମଦେବ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ମହାବୀରଙ୍କ ସମସାମୟିକ କେତେକ ରାଜାମଧ୍ୟ ତାଙ୍କର ଅନୁଗାମୀ ହୋଇଥିଲେ । ସେମାନଙ୍କ ମଧ୍ୟରେ ଶ୍ରେଣୀକ [୪୨], କୁଣିକ [୪୩], ଚେଟକ [୪୪], ପ୍ରଦ୍ୟୋତ [୪୫], ଶତାନିକ, ଦଧିବାହନ [୪୬], ଉଦୟନ [୪୭], ବୀରଙ୍ଗୟ, ବୀରଯଶ, ସଞ୍ଜୟ, ଶଙ୍ଖ, କାଶିବର୍ଦ୍ଧନ [୪୮] ପ୍ରଭୃତି ଉଲ୍ଲେଖଯୋଗ୍ୟ । ରାଣୀମାନଙ୍କର ମଧ୍ୟରେ ରାଜା ଉଦୟନଙ୍କ ରାଣୀ ପ୍ରଭାବତୀ [୪୯], କୌଶାମ୍ବୀର ରାଣୀ ମୃଗାବତୀ ଓ ଜୟନ୍ତୀ [୫୦], ଶ୍ରେଣିକଙ୍କ ରାଣୀ ଚେଲ୍ଲନା, ପ୍ରଦ୍ୟୋତଙ୍କ ରାଣୀ ଶିବା [୫୧] ମହାବୀରଙ୍କ ଅନୁଗାମିନୀ ହୋଇଥିଲେ । ଏତଦବ୍ୟତୀତ ଚମ୍ପାର ରାଜକୁମାରୀ ଚନ୍ଦନା [୫୨], ଅତିମୁକ୍ତ [୫୩], ପଦ୍ମ [୫୪], ଆଦି ରାଜ କୁମାର ତଥା ରାଜା ଶ୍ରେଣିକଙ୍କ ପୌତ୍ରଗଣ, ମେଘ ଓ ଅଭୟଙ୍କ ସମେତ ଅନ୍ୟାନ୍ୟ ରାଜକୁମାର ଗଣ [୫୫] ମଧ୍ୟ ମହାବୀରଙ୍କ ଧର୍ମନୀତି ଅବଲମ୍ବନ କରିଥିଲେ । ଏହିପରି ରାଜପୃଷ୍ଠପୋଷକତା ଲାଭ କରି ଜୈନ ଧର୍ମ ପ୍ରସାର ଲାଭ କଲା । ଏପରିକି ରାଜା ଶ୍ରେଣିକ ଘୋଷଣା କରିଥିଲେ ଯେ ଯେଉଁମାନେ ଜୈନଧର୍ମ ଗ୍ରହଣ କରିବେ ସେମାନଙ୍କର ଜ୍ଞାତି, କୁଟୁମ୍ବଙ୍କୁ ଆର୍ଥିକ ସାହାଯ୍ୟ ଦିଆଯିବ । [୫୬] ।

କଳ୍ପସୂତ୍ର ଅନୁସାରେ ମହାବୀର ୩୦ ବର୍ଷ ଗାର୍ହସ୍ଥ୍ୟ ଏବଂ ୧୨ ବର୍ଷ ସନ୍ନ୍ୟାସ [ଭିକ୍ଷୁଧର୍ମ] ପାଳନ କଲାପରେ ୩୦ ବର୍ଷକାଳ ଧର୍ମପ୍ରବକ୍ତା ରୂପେ ଜୀବନ ନିର୍ବାହ କରି ପରିଶେଷରେ ୭୨ବର୍ଷ ବୟସରେ ପାବାଠାରେ ରାଜା ହସ୍ତୀପାଳଙ୍କ ଗୃହରେ କାର୍ତ୍ତିକ ମାସର କୃଷ୍ଣପକ୍ଷରେ ଇହଲୀଳା ସାଙ୍ଗ କରିଥିଲେ । [୫୭]

## ଧର୍ମନୀତି ଓ ଦର୍ଶନ :

ଆଚାରାଙ୍ଗ ସୂତ୍ର, ସୂତ୍ର କୃତାଙ୍ଗ, ଭଗବତୀ ସୂତ୍ର, ଜୈନାଗମ ପ୍ରଭୃତି ଜୈନ ଗ୍ରନ୍ଥରୁ ମହାବୀରଙ୍କ ଧର୍ମନୀତି ସମ୍ପର୍କରେ ବହୁ ବିଷୟ ଜ୍ଞାତ ହୁଏ । ପାର୍ଶ୍ୱନାଥଙ୍କ ପର୍ଯ୍ୟନ୍ତ ଜୈନ ଧର୍ମର ପ୍ରଚାର ସୀମିତ ଥିଲା । ଜୈନ ଧର୍ମକୁ ଅଧିକ ଲୋକପ୍ରିୟ ଓ ସମ୍ପ୍ରସାରିତ କରିବାରେ ବର୍ଦ୍ଧମାନ ମହାବୀରଙ୍କ ସର୍ବୋଚ୍ଚ ଭୂମିକା ଉଲ୍ଲେଖଯୋଗ୍ୟ ।

ମହାବୀରଙ୍କ ପୂର୍ବବର୍ତ୍ତୀ ତୀର୍ଥଙ୍କର ପାର୍ଶ୍ୱନାଥ ସ୍ୱେଚ୍ଛା ବ୍ରତ ପାଳନ କରିବାକୁ ଉପଦେଶ ଦେଇଥିଲେ । ତାହା ହେଲା—ଅହିଂସା, ସତ୍ୟ, ଅସ୍ତେୟ ଏବଂ ଅପରିଗ୍ରହ । ଏହି ଚତୁବ୍ରତ ଚତୁର୍ଯ୍ୟାମ ଧର୍ମ ନାମରେ ଅଭିହିତ । ମହାବୀର ଏହି ଚତୁବ୍ରତ ସହିତ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବାକୁ ଉପଦେଶ ଦେଲେ । ଫଳତଃ ପାର୍ଶ୍ୱନାଥଙ୍କ ପ୍ରବର୍ତ୍ତିତ ଚତୁର୍ଯ୍ୟାମ ଧର୍ମ (୫୮) ମହାବୀରଙ୍କ ଦ୍ୱାରା 'ପଞ୍ଚଯାମ' ଧର୍ମରେ ପରିଣତ ହୋଇଥିଲା । ବସ୍ତ୍ର ଧାରଣ କରିବା ଦୋଷାବହ ନୁହେଁ ବୋଲି ପାର୍ଶ୍ୱନାଥ ମତ ବ୍ୟକ୍ତ କରିଥିଲେ । (୫୯) । କିନ୍ତୁ ମହାବୀର ପୂର୍ଣ୍ଣ ରୂପରେ ଉଲଗ୍ନ ରହିବାକୁ ନିଜର ଅନୁଗାମୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ମହାବୀର ବେଦକୁ ମାନୁନଥିଲେ । ସେ ବ୍ରାହ୍ମଣମାନଙ୍କ ପ୍ରାଧାନ୍ୟକୁ ପ୍ରତ୍ୟାଖ୍ୟାନ କରିଥିଲେ । ବୈଦିକ ପୂଜା ପଦ୍ଧତି ଓ କର୍ମ କାଣ୍ଡରେ ତାଙ୍କର ବିଶ୍ୱାସ ନଥିଲା ।

ମହାବୀର ବେଦକୁ ଈଶ୍ୱରୀୟ,ଅନାଦି ଏବଂ ଜ୍ଞାନ ବୋଲି ସ୍ୱୀକାର କରିନଥିଲେ । ବୈଦିକ ଜ୍ଞାନ ହିଁ ପୂର୍ଣ୍ଣ ଏବଂ ସତ୍ୟ ବୋଲି ବ୍ରାହ୍ମଣମାନଙ୍କ କଥନକୁ ସେ ଖଣ୍ଡନ କରିଥିଲେ । ସେ ଅହିଂସା ବ୍ରତ ଉପରେ ଗୁରୁତ୍ୱାରୋପ କରିଥିଲେ । ହିଂସା ପ୍ରଣୋଦିତ ବୈଦିକ କର୍ମକାଣ୍ଡ-ଗୁଡିକ କେବଳ ଛଳନାମୟ ବାହ୍ୟ ଆଡ଼ମ୍ବରରେ ପରିପୂର୍ଣ୍ଣ ଏବଂ ତଦ୍ୱାରା ମନୁଷ୍ୟର ଅନ୍ତଃ-ଶୁଦ୍ଧି ହୋଇପାରେ ନାହିଁ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ତେଣୁ ସେ ହିଂସାତ୍ମକ ଯଜ୍ଞ ପ୍ରଥାର ବିରୋଧ କରିଥିଲେ । ସେ ଜାତିଭେଦ ପ୍ରଥାର ମଧ୍ୟ ବିରୋଧ କରିଥିଲେ । ତାଙ୍କ ମତରେ ଜାତି, ବର୍ଣ୍ଣ, ଲିଙ୍ଗ ନିର୍ବିଶେଷରେ ସମସ୍ତେ ମୋକ୍ଷଲାଭ କରିପାରିବେ । ସେ ନାରୀ ସ୍ୱତନ୍ତ୍ରତା ଉପରେ ଗୁରୁତ୍ୱାରୋପ କରିଥିଲେ । ତେଣୁ ତାଙ୍କ ପ୍ରତିଷ୍ଠିତ ଜୈନ ସଂଘରେ ବହୁ ନାରୀ ଯୋଗଦେଇଥିଲେ । ସେ ଦାସତ୍ୱ ପ୍ରଥାର ତୀବ୍ର ବିରୋଧ କରିଥିଲେ । କଥିତ ଅଛି, ଥରେ ସେ ୧୭୫ ଦିନ ଧରି ଉପବାସ ବ୍ରତ ପାଳନ କରିଥିଲେ । ତାପରେ ସେ ଚନ୍ଦନବାଳା ନାମ୍ନୀ ଏକ ଦାସୀଠାରୁ ଭିକ୍ଷାଗ୍ରହଣ କରିଥିଲେ ।

ମହାବୀର 'ଅହିଂସା ପରମୋ ଧର୍ମ'ର ପ୍ରଚାର କରିଥିଲେ । ସେ ବାହ୍ୟ କର୍ମକାଣ୍ଡକୁ ନିରର୍ଥକ ମନେକରି ମନୁଷ୍ୟର ଆନ୍ତରିକ ଶୁଦ୍ଧି ଉପରେ ପ୍ରାଧାନ୍ୟ ଦେଇଥିଲେ । ତାଙ୍କ ମତରେ ଯେଉଁ ବ୍ୟକ୍ତି ସଦାଚାରଗୁଣ ସମ୍ପନ୍ନ, ଯିଏ ଆତ୍ମସଂଯମ ପାଳନ (ସମ୍ବର) ଦ୍ୱାରା ସମସ୍ତ ନୂତନ କର୍ମର ଆଶ୍ରବକୁ ବନ୍ଦ କରେ, ଯିଏ ତାପସ ଦ୍ୱାରା ସମସ୍ତ କର୍ମ (ନିର୍ଜରା) କୁ ନାଶ କରେ ଅଥବା ସକଳ ପ୍ରକାର କର୍ମ ବନ୍ଧନରୁ ମୁକ୍ତ ଲାଭ କରେ, ସେ ବିପୁଳ, ଉତ୍ତମ ଓ ଧ୍ରୁବଗାମୀ ମୋକ୍ଷକୁ ଲାଭ କରିପାରିବ ।

ଜୈନଧର୍ମ ଏକାତ୍ମବାଦୀ ପରିବର୍ତ୍ତେ ଅନେକାତ୍ମବାଦୀ ଅଟେ । ମହାବୀରଙ୍କ ମତରେ ଜଡ଼, ଚେତନ ସବୁ ପଦାର୍ଥରେ ଆତ୍ମା ବିଦ୍ୟମାନ । ଅତଏବ ସମସ୍ତ ପାର୍ଥିବ ବସ୍ତୁ ପ୍ରତି ଅହିଂସା ଭାବ ପ୍ରଦର୍ଶନ କରିବା ନିମନ୍ତେ ସେ ଉପଦେଶ ଦେଇଛନ୍ତି । ତାଙ୍କ ମତରେ ଅହିଂସା ଭାବ କେବଳ ଅମ୍ଭ ଜୀବାତ୍ମା ବା ପଶୁପକ୍ଷୀ ଆଦି ଜୀବଜନ୍ତୁ ପ୍ରତି ନୁହେଁ, ବୃକ୍ଷ, ଧାତୁ, ଜଳ, ସ୍ଥଳ ଆଦି ସମସ୍ତ ପାର୍ଥିବ ପଦାର୍ଥ ପ୍ରତି ମଧ୍ୟ ପ୍ରଦର୍ଶନ କରିବା ଉଚିତ ।

ଜୈନ ଧର୍ମର କଠୋର ଅହିଂସା ନୀତି ଏବଂ ଜୀବ ପ୍ରତି ଅସୀମ ଦୟା ପ୍ରଦର୍ଶନ ଅନ୍ୟାନ୍ୟ ଧର୍ମରେ ଦେଖିବାକୁ ବିରଳ । ଜୈନମାନେ ହିଂସା ଅଥବା ଜୀବ ହିଂସା ପାପ ଭୟରେ ନାକରେ ପଟି ବାନ୍ଧି ନିଶ୍ୱାସ ଗ୍ରହଣ କରନ୍ତି, ପାଣି ଛାଣି ପିଅନ୍ତି, ରାତିରେ ଆଲୁଅ ଜାଳନ୍ତି ନାହିଁ ଏବଂ ଓଳେଇ ଓଳେଇ ଚାଲନ୍ତି । ଏ ସମ୍ପର୍କରେ Hopkinsଙ୍କ ମତ ହେଉଛି, ଜୈନଧର୍ମକୀଟ କୀଟାଣୁମାନଙ୍କ ପ୍ରତି ମଧ୍ୟ ଦୟା ଓ ଅନୁକମ୍ପା ପ୍ରଦର୍ଶନ କରେ । ମହାବୀରଙ୍କ ମତରେ ମାନବ ଶରୀରରେ ଯେଉଁ ଆତ୍ମା ଅଛି, କୀଟ କୀଟାଣୁଙ୍କ ଦେହରେ ମଧ୍ୟ ସେହି ଆତ୍ମା ବିଦ୍ୟମାନ । ମହାବୀରଙ୍କ ଧର୍ମନୀତି ସମ୍ପର୍କରେ Hopkins ଙ୍କ ମତ ଏଠାରେ ପ୍ରଣିଧାନ ଯୋଗ୍ୟ—"A religion in which the chief points insisted upon are that one should deny God, worship man and nourish vermin" (୭୦) । ଅର୍ଥାତ୍ ମହାବୀରଙ୍କ ପ୍ରବର୍ତ୍ତିତ ଧର୍ମ ହେଉଛି ଗୋଟିଏ ଧର୍ମ ଯେଉଁଥିରେ କି ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରି ମାନବ ସେବା ଓ ପୂଜା ଏବଂ କୀଟ-କୀଟାଣୁଙ୍କର ପରିପାଳନ କରିବା ଉପରେ ଗୁରୁତ୍ୱାରୋପ କରାଯାଇଛି । ମନ, ବଚନ ଓ କର୍ମ ଦ୍ୱାରା ଅହିଂସା ଆଚରଣ ପ୍ରଦର୍ଶନ କରିବାକୁ ମହାବୀର ନିର୍ଦ୍ଦେଶ ଦେଇଥିଲେ ।

ମହାବୀରଙ୍କ ମତରେ ଜୀବ ଦୁଇ ଶ୍ରେଣୀରେ ବିଭକ୍ତ, ଯଥା—ମୁକ୍ତ ଓ ବଦ୍ଧ । ଯେ ଇନ୍ଦ୍ରିୟକୁ ଜୟ କରି ଅହିଂସା ଧର୍ମ ପାଳନକରେ ତାହାଙ୍କୁ ମୁକ୍ତ ଜୀବ କହନ୍ତି । ବିଷୟାସକ୍ତ ଜୀବକୁ ବଦ୍ଧ ଜୀବ କୁହାଯାଏ । ବଦ୍ଧ ଜୀବ ଦୁଇ ଶ୍ରେଣୀରେ ବିଭକ୍ତ ତ୍ରସ (ଗତିଶୀଳ) ଓ ସ୍ଥାବର (ଗତିହୀନ ବୃକ୍ଷଲତା ପ୍ରଭୃତି) । ତ୍ରସ ଜୀବ ଚାରି ଶ୍ରେଣୀରେ ବିଭକ୍ତ—ପଞ୍ଚେନ୍ଦ୍ରିୟ, ଚତୁରିନ୍ଦ୍ରିୟ, ତ୍ରୀନ୍ଦ୍ରିୟ ଓ ଦ୍ୱୀନ୍ଦ୍ରିୟ । ମନୁଷ୍ୟ, ପଶୁ ଓ ପକ୍ଷୀ—ଏଗୁଡ଼ିକର ପଞ୍ଚଇନ୍ଦ୍ରିୟ ଅଛି । ଡ଼ାଉଁଶ,ମହୁମାଛି ପ୍ରଭୃତିଙ୍କ ଶ୍ରବଣେନ୍ଦ୍ରିୟ ନଥିବାରୁ ସେମାନେ ଚତୁରିନ୍ଦ୍ରିୟ ଜୀବ ଅଟନ୍ତି । ପିମ୍ପୁଡ଼ି, ଜୋକ ପ୍ରଭୃତିଙ୍କର ଦର୍ଶନ ଓ ଶ୍ରବଣେନ୍ଦ୍ରିୟ ନଥିବାରୁ ସେମାନେ ତ୍ରୀନ୍ଦ୍ରିୟ ଜୀବ । ଗେଣ୍ଡା, ଶାମୁକା ପ୍ରଭୃତିଙ୍କର ଦର୍ଶନ, ଶ୍ରବଣ ଓ ଘ୍ରାଣେନ୍ଦ୍ରିୟ ନଥିବାରୁ ସେମାନେ ଦ୍ୱୀନ୍ଦ୍ରିୟ ଜୀବ । ବୃକ୍ଷ, ଲତା, ଗୁଳ୍ମ ପ୍ରଭୃତିଙ୍କର କେବଳ ସ୍ପର୍ଶେନ୍ଦ୍ରିୟ ଥିବାରୁ ସେମାନେ ସ୍ଥାବର ଜୀବ । ଜୀବ ମୁକ୍ତ ନହେବା ପର୍ଯ୍ୟନ୍ତ କର୍ମ-ଅନୁସାରେ କୌଣସି ଏକ ଶ୍ରେଣୀରେ ଜନ୍ମଗ୍ରହଣ କରେ ।(୭୧) ।

ଶାରୀରିକ କ୍ଲେଶ ଦ୍ୱାରା ମନୁଷ୍ୟର ଆତ୍ମା ଉତ୍କର୍ଷ ଲାଭ କରିପାରିବ ବୋଲି ମହାବୀର ମତ ବ୍ୟକ୍ତ କରିଛନ୍ତି । ତେଣୁ ସେ ପଞ୍ଚମହାବ୍ରତ (ଅହିଂସା, ସତ୍ୟ, ଅସ୍ତେୟ, ଅପରିଗ୍ରହ ଓ ବ୍ରହ୍ମଚର୍ଯ୍ୟ) କଠୋର ତପସ୍ୟା,ଉଲଗ୍ନତା, ଅନଶନ ଆଦି ପାଳନ କରିବାକୁ ଉପଦେଶ ଦେଇଥିଲେ । ତାଙ୍କ ମତରେ ଉପବାସରେ ଶରୀରକୁ ଅମିତ ଯନ୍ତ୍ରଣା ଦେଇ ବିନାଶ କଲେ ମୋକ୍ଷ ଲାଭ ହୁଏ । ତେଣୁ ଉପବାସ ଜନିତ ଯନ୍ତ୍ରଣା ଦ୍ୱାରା ଆତ୍ମହତ୍ୟା କରିବାରେ ଜୈନମାନେ ପୁଣ୍ୟ ମନେକରନ୍ତି ।

ମହାବୀରଙ୍କର ଈଶ୍ୱର ବିଶ୍ୱାସ ନଥିଲା । ତେଣୁ ଈଶ୍ୱରଙ୍କୁ ସୃଷ୍ଟିକର୍ତ୍ତା ବୋଲି ବିବେଚନା କରିବା ତାଙ୍କ ଚିନ୍ତାର ବହିର୍ଭୂତ ଥିଲା । (୭୨) । ତାଙ୍କ ମତରେ ଭଗବାନଙ୍କ ଆଶୀର୍ବାଦ ବା ଅନୁଗ୍ରହ ବିନା ମନୁଷ୍ୟ ନିଜକୁ ଦୁଃଖ ଯନ୍ତ୍ରଣାରୁ ଉଦ୍ଧାର କରିପାରିବ । ପାପ କର୍ମ ପାଇଁ ମନୁଷ୍ୟ ଯେଉଁ ଫଳ ଭୋଗକରେ ତାହା ଦେବଦେବୀଙ୍କ ପୂଜାଅର୍ଚ୍ଚନା ଦ୍ୱାରା ଦୂର ହୁଏ ନାହିଁ । କେବଳ ଅନାସକ୍ତ ଓ ହିଂସା ବିବର୍ଜିତ ଜୀବନ ଦ୍ୱାରା କାମ, କ୍ରୋଧ, ମୋହ, ମଦ, ମାତ୍ସର୍ଯ୍ୟ, ଦ୍ୱେଷ ପ୍ରଭୃତି ବିକାର ପାପ) ତ୍ୟାଗ କରିପାରିଲେ ଆତ୍ମ ଶୁଦ୍ଧି ହୁଏ ଏବଂ ଦୁଃଖ ଦୁର୍ଦ୍ଦଶାରୁ ମୁକ୍ତି ମିଳେ । ଏହି ଲକ୍ଷ୍ୟ ସାଧନ କରିବା ନିମନ୍ତେ ସର୍ବୋତ୍କୃଷ୍ଟ ପନ୍ଥା ହେଲା ସନ୍ନ୍ୟାସ ଜୀବନ ଅଥବା ପବିତ୍ର ଧର୍ମମୟ ଜୀବନ । ତଦ୍ୱାରା ମନୁଷ୍ୟ ମୋକ୍ଷ ଲାଭ କରିପାରିବ । ତାଙ୍କ ମତରେ ମନୁଷ୍ୟ ନିଜେ ନିଜର ଭାଗ୍ୟନିୟନ୍ତା ଏବଂ ତ୍ରାଣକର୍ତ୍ତା । ତେଣୁ ଅଗଣିତ ଦେବଦେବୀଙ୍କ ଅବଲମ୍ବନ ତ୍ୟାଗ ପୂର୍ବକ ଆତ୍ମନିର୍ଭରଶୀଳ ହେବା ଏକାନ୍ତ ପ୍ରୟୋଜନ ।

ମହାବୀରଙ୍କ ମତରେ ସଂସାର ଛଅଟି ଦ୍ରବ୍ୟ, ଯଥା—ଜୀବ, ପୁଦ୍‌ଗଳ, ଧର୍ମ, ଅଧର୍ମ, ଆକାଶ ଏବଂ କାଳକୁ ନେଇ ଗଠିତ । ଏସବୁ ନିତ୍ୟ । ଏସବୁ ଦ୍ରବ୍ୟର ବିନାଶ ହୁଏ ନାହିଁ । କେବଳ ସେଗୁଡ଼ିକର ରୂପ ପରିବର୍ତ୍ତିତ ହୋଇଥାଏ । ଏହି ସବୁ ଦ୍ରବ୍ୟର ସମଷ୍ଟି ହୋଇଥିବା ଯୋଗୁଁ ସଂସାର ମଧ୍ୟ ନିତ୍ୟ । ସଂସାରର ପ୍ରତ୍ୟେକ ବସ୍ତୁ ମଧ୍ୟ ନିତ୍ୟ ଏବଂ ତାହାର ବିନାଶ ହୁଏ ନାହିଁ । ଯାହାକୁ ଆମେ ମୃତ୍ୟୁ ବା କ୍ଷୟ କହୁ ତାହା କେବଳ ବସ୍ତୁ ବା ଜୀବର ରୂପ ପରିବର୍ତ୍ତନକୁ ବୁଝାଏ । ଯେତେବେଳେ ଏହି ଛଅଟି ଦ୍ରବ୍ୟ ସଂଗଠିତ ହୋଇଯାଏ ସେତେବେଳେ ସେଥିରୁ ଯେଉଁ ବସ୍ତୁର ବା ଜୀବର ଯେଉଁ ରୂପ ହୁଏ ତାକୁ 'ଜନ୍ମ' ବୁଝାଯାଏ । ଏସବୁ ଦ୍ରବ୍ୟର କ୍ଷୟ ହିଁ 'ମୃତ୍ୟୁ' । (୭୩) ।

ମହାବୀରଙ୍କ କଥନ ହେଲା, ଭିନ୍ନ ଭିନ୍ନ ଅବସ୍ଥାରେ ଏବଂ ବିଭିନ୍ନ ଦୃଷ୍ଟିକୋଣରୁ ଜ୍ଞାନ ଉପଲବ୍ଧ ହୋଇଥାଏ । ଉଦାହରଣ ସ୍ୱରୂପ ବୃକ୍ଷ ହଲୁଛି କହିଲେ ତଥାଟି ଠିକ୍ ଏବଂ ଭୁଲ୍ ବୋଲି ମଧ୍ୟ ପ୍ରମାଣିତ ହୁଏ । କାରଣ ବୃକ୍ଷର ଡାଳପତ୍ର ହଲିଲେ ମଧ୍ୟ ବୃକ୍ଷ ହଲେ ନାହିଁ । ଯେହେତୁ ବୃକ୍ଷଟି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ଉପରେ ଦଣ୍ଡାୟମାନ ହୋଇଥାଏ । ଏହି ଆଧାର ଉପରେ ମହାବୀରଙ୍କ ବକ୍ତବ୍ୟ ହେଲା ପ୍ରତ୍ୟେକ ଜ୍ଞାନ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ସାତ ପ୍ରକାର ପରିଦୃଷ୍ଟ ହୁଏ, ଯଥା :—ସ୍ୟାତ୍ ଅସ୍ତି (ଅଛି), ସ୍ୟାତ୍ ନାସ୍ତି (ନାହିଁ), ସ୍ୟାତ୍ ଅସ୍ତି ନାସ୍ତି (ଅଛି ଏବଂ ନାହିଁ), ସ୍ୟାତ୍ ଅବକ୍ତବ୍ୟ (ତାହା କୁହାଯାଇ ପାରିବ ନାହିଁ), ସ୍ୟାତ୍ ଅସ୍ତି ଚ ଅବକ୍ତବ୍ୟଂଚ (ତାହା ଅଛି ଏବଂ କୁହାଯାଇ ପାରିବ ନାହିଁ), ସ୍ୟାତ ନାସ୍ତିଚ ଅବକ୍ତବ୍ୟଂ (ତାହା ନାହିଁ ଏବଂ ଅବର୍ଣ୍ଣନୀୟ) ସ୍ୟାତ୍ ଅସ୍ତି ନ ସ୍ତିଚ ଅବକ୍ତବ୍ୟଂଚ (ତାହା ଅଛି ତାହା ନାହିଁ ଏବଂ ତାହା ଅବର୍ଣ୍ଣନୀୟ) । ଏହି ଅନିଶ୍ଚିତତା ଯୋଗୁଁ ଜୈନଧର୍ମର ଏହି ସିଦ୍ଧାନ୍ତକୁ ସ୍ୟାଦ୍‌ବାଦ ବା ସପ୍ତଭଙ୍ଗି ନ୍ୟାୟ କୁହାଯାଏ । [୭୪] । ଆମର ଜ୍ଞାନ ଅସମ୍ପୂର୍ଣ୍ଣ ବା ସୀମିତ ହୋଇଥିବାରୁ କୌଣସି ପଦାର୍ଥ ଜାଣୁ ବୋଲି ନିର୍ଦ୍ଦିଷ୍ଟ ରୂପେ କହିବା ଉଚିତ ନୁହେଁ । "ଜାଣିନାହିଁ"

କହିଲେ ନିର୍ଦ୍ଦିଷ୍ଟ ଅର୍ଥ ଜଣାଯାଏ । କିନ୍ତୁ "ଜାଣେ" କହିଲେ ନିର୍ଦ୍ଦିଷ୍ଟ ଅର୍ଥ ଜଣାଯାଏ ନାହିଁ । ମୁଁ 'ବ୍ରହ୍ମପୁର ସହର ଦେଖିଛି' କହିଲେ ବ୍ରହ୍ମପୁର ସହରର ବିଭିନ୍ନ ବଜାର, ଅଟ୍ଟାଳିକା, ପାର୍କ, ଶିକ୍ଷାନୁଷ୍ଠାନ, ମଠ, ମନ୍ଦିର, ଚର୍ଚ୍ଚ, ମସଜିଦ୍, ସରକାରୀ ଦପ୍ତର, ସାହି, ବସଷ୍ଟାଣ୍ଡ, ରେଳ ଷ୍ଟେସନ, ଡାକ୍ତରଖାନା, ଦୂରଦର୍ଶନ ରିଲେ କେନ୍ଦ୍ର, ସିନେମାଗୃହ ବା ପ୍ରେକ୍ଷାଳୟ ପ୍ରଭୃତିରୁ କେତୋଟି ଦେଖିଛି ତାହା କେହି ଜାଣି ପାରିବେ ନାହିଁ । ଏଣୁ ବସ୍ତୁ ସତ୍ ବା ଅସତ୍, ନିତ୍ୟ ବା ଅନିତ୍ୟ, ଭିନ୍ନ ବା ଅଭିନ୍ନ, ଭାବ ବା ଅଭାବ, ବକ୍ତବ୍ୟ ବା ଅବକ୍ତବ୍ୟ, ଅଭାବ ହୋଇଥିବାରୁ ଅବକ୍ତବ୍ୟ ବା ଭାବ ହୋଇଥିବାରୁ ବକ୍ତବ୍ୟ, ଭାବ ବା ଅଭାବ ଅବକ୍ତବ୍ୟଂ —ଏପରି କୌଣସି ବିଷୟ ନିର୍ଦ୍ଦିଷ୍ଟ ରୂପରେ କୁହାଯାଇ ନପାରେ । ପ୍ରତ୍ୟେକ ଉତ୍ତରରେ 'ସ୍ୟାତ୍' ଅର୍ଥାତ୍ କୌଣସି ପ୍ରକାରେ ଯୋଗ କରିବାକୁ ହେବ । ଯଦି କେହି ପ୍ରଶ୍ନକରେ 'କଞ୍ଚାଫଳ ଶାଗୁଆ ଏବଂ ପାଚିଲା ଫଳ ହଳଦିଆ କିମ୍ବା ନାଲିଆ ଫଳର ପ୍ରକୃତ ବର୍ଣ୍ଣ କ'ଣ ?' ତେବେ ଉତ୍ତର ଦେବାକୁ ହେବ ଏହା କୌଣସି ପ୍ରକାରେ ଅବକ୍ତବ୍ୟ । ଅବସ୍ଥା ଭେଦରେ ଫଳ ବର୍ଣ୍ଣ ଭିନ୍ନ ନିର୍ଦ୍ଦିଷ୍ଟ ଲକ୍ଷଣ କିପରି କୁହାଯିବ ଫଳର କେତେକ ଲକ୍ଷଣ ଅପରିସ୍ଫୁଟିତ । କୌଣସି ପ୍ରକାରେ କଞ୍ଚାଫଳ ଓ ପାଚିଲା ଫଳ ଏକ । କିନ୍ତୁ ବର୍ଣ୍ଣର ବୈଷମ୍ୟ ଯୋଗୁଁ ଏକ କହିହେବ ନାହିଁ । କୌଣସି ପ୍ରକାରେ କଞ୍ଚାଫଳ ପାଚିଲା ଫଳ ଠାରୁ ଭିନ୍ନ । କିନ୍ତୁ ଗୋଟିଏ ଗଛରେ ଫଳଥିବା ଏକ ଫଳର ବର୍ଣ୍ଣ ବଦଳି ଥିବାରୁ ଭିନ୍ନ ଭିନ୍ନ କହିହେବ ନାହିଁ । ଏହାହିଁ 'ସ୍ୟାଦ୍‌ବାଦ ।' ପରବର୍ତ୍ତୀ କାଳରେ ଶଙ୍କରାଚାର୍ଯ୍ୟ ସ୍ୟାଦବାଦର ଘୋର ବିରୋଧ କରିଥିଲେ । ଶଙ୍କରାଚାର୍ଯ୍ୟଙ୍କ ଉକ୍ତି ହେଲା, ପ୍ରତ୍ୟେକ ବସ୍ତୁ ଅଛି ଏବଂ ତାହା ରହିବ ନାହିଁ ବୋଲି କହିବା ଠିକ୍ ନୁହେଁ ।

ପ୍ରତ୍ୟେକ ପ୍ରାଣୀ ଓ ପ୍ରତ୍ୟେକ ବସ୍ତୁର ଦୁଇଟି ଅଂଶ ଥାଏ ବୋଲି ମହାବୀର ମତ ବ୍ୟକ୍ତ କରିଛନ୍ତି । ତାହା ହେଲା -ଭୌତିକ ଅଂଶ ଓ ଆତ୍ମିକ ଅଂଶ । ଏ ଦୁଇଟି ପରସ୍ପରର ବିରୋଧୀ । ଭୌତିକ ଅଂଶ ଅଶୁଦ୍ଧ, ଅନ୍ଧକାରମୟ, ବିନାଶକାରୀ ଓ ସସୀମ ଅଟେ । ତାହାର ବିପରୀତ ଆତ୍ମିକ ଅଂଶ ହେଉଛି ବିଶୁଦ୍ଧ, ଆଲୋକମୟ, ଅନଶ୍ୱର ଏବଂ ଅସୀମ । ମେଘାଚ୍ଛନ୍ନ ଆକାଶରେ ସୂର୍ଯ୍ୟ ଯେପରି ଦୃଷ୍ଟ ହୁଏ ନାହିଁ ସେହିପରି ଭୌତିକ ଅଂଶ ଦ୍ୱାରା ଆବୃତ ହୋଇଥିବା ଯୋଗୁଁ ଆତ୍ମାର ବାସ୍ତବିକ ରୂପ ପରିସ୍ଫୁଟ ହୋଇପାରେ ନାହିଁ । ଯଦି ଏହି ଭୌତିକ ଅଂଶର ବିନାଶ ହୁଏ ତେବେ ଆତ୍ମାର ସ୍ୱରୂପ ପ୍ରକାଶିତ ହୋଇପାରିବ । ଆତ୍ମାର ସ୍ୱରୂପର ଏହି ପରିପ୍ରକାଶ ହିଁ ନିର୍ବାଣ । ତାହା ଭୌତିକ ଅଂଶର ବିନାଶ ପରବର୍ତ୍ତୀ ପୂର୍ଣ୍ଣ ବିଶୁଦ୍ଧି, ପ୍ରକାଶ, ଅନଶ୍ୱରତା, ଅନନ୍ତତା ଓ ଅସୀମତାର ଆନନ୍ଦ-ପୂର୍ଣ୍ଣ ସ୍ଥିତି ଅଟେ । ଏହି ସ୍ଥିତିରେ ଉପନୀତ ହେଲାପରେ ମନୁଷ୍ୟର ପୁନର୍ଜନ୍ମ ହୁଏ ନାହିଁ । ସେ କର୍ମ ବନ୍ଧନରୁ ମୁକ୍ତ ହୁଏ ।

କାମ, କ୍ରୋଧ, ମୋହ, ଲୋଭ, ମଦ, ମାତ୍ସର୍ଯ୍ୟ, ଦ୍ୱେଷ ଆଦି ବିକାର ଦ୍ୱାରା ଆଚ୍ଛାଦିତ ଆତ୍ମିକ ଅଂଶ ଭୌତିକ ଅଂଶ ଦ୍ୱାରା ଆବୃତ ହୋଇଥାଏ । ଏହି ଭୌତିକ ଅଂଶ କର୍ମ ଅଟେ । ସାଂସାରିକତାରେ ଲିପ୍ତ ଜୀବ ଓ କର୍ମର ସମ୍ବନ୍ଧ (ସମାବେଶ) ହୋଇଥାଏ

ଏବଂ ଜୀବ ସେହି ସମାବେଶର ବନ୍ଧନରେ ଆବଦ୍ଧ ହୋଇଯାଏ । ଅତଏବ ଆତ୍ମିକ ଅଂଶ (soul) ଏବଂ ଭୌତିକ ଅଂଶ ଅଥବା କର୍ମ (matter) ମଧ୍ୟରେ ସଂସର୍ଗ ଯେପରି ନହୁଏ ସେଥିପ୍ରତି ମୋକ୍ଷାଭିଳାଷି ଧ୍ୟାନ ଦେବା ବାଞ୍ଛନୀୟ । ଆତ୍ମିକ ଅଂଶ ଏବଂ କର୍ମକୁ ଦୁଇଟି ଉପାୟରେ ପରସ୍ପର ଠାରୁ ବିଚ୍ଛିନ୍ନ କରାଯାଇପାରେ । ପ୍ରଥମରେ ଯଦି କର୍ମର ସମ୍ବର (ଆତ୍ମିକ ଅଂଶରେ କର୍ମର ସଂସ୍ଥାନ) ନହୁଏ ଏବଂ ଦ୍ୱିତୀୟରେ ଯଦି ପୂର୍ବ ଜନ୍ମରେ ଏକତ୍ର ହୋଇଥିବା କର୍ମର ନିର୍ଜର (କ୍ଷୟ) ହୋଇଯାଏ । ନୂତନ ଭୌତିକ ଅଂଶ (କର୍ମ)ର ସମାବେଶ (ସମ୍ବର) କୁ ପ୍ରତିରୋଧ କଲେ ଏବଂ ପୁରାତନ ଭୌତିକ ଅଂଶ (କର୍ମ)ର ବିନାଶ କଲେ ଆତ୍ମା କର୍ମ ବନ୍ଧନରୁ ମୁକ୍ତି ଲାଭ କରି ନିର୍ବାଣ ପ୍ରାପ୍ତହୁଏ ।

କର୍ମ ଫଳ ଉପରେ ମହାବୀର ଗୁରୁତ୍ୱାରୋପ କରିଥିଲେ । ତାଙ୍କ ମତରେ ଜନ୍ମ କିଛି ନୁହେଁ, ଜାତି କିଛି ନୁହେଁ, କର୍ମ ହିଁ ସବୁ କିଛି । କର୍ମ ଅନୁସାରେ ଫଳ ପ୍ରାପ୍ତି ହୁଏ । ଭବିଷ୍ୟତର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ବର୍ତ୍ତମାନର କର୍ମ ଉପରେ ହିଁ ନିର୍ଭର କରେ । (୭୦) । ମନୁଷ୍ୟର ସୁଖ-ଦୁଃଖ, ଉଚ୍ଚ-ନୀଚ, ଧନୀ-ଦରିଦ୍ର, ଆଦି ଅବସ୍ଥା ତାହାର କର୍ମ ଉପରେ ହିଁ ଆଧାରିତ । (୭୨) । କର୍ମ ଆତ୍ମା ସହିତ ଅଙ୍ଗାଙ୍ଗି ଭାବେ ଜଡ଼ିତ । କର୍ମ ଅଠ ପ୍ରକାର, ଯଥା—(୧) ଜ୍ଞାନା ବରଣୀୟ (ଯେଉଁ କର୍ମ ଜ୍ଞାନ ଲାଭ କରିବାରେ ପ୍ରତିବନ୍ଧକ ସୃଷ୍ଟି କରେ), (୨) ଦର୍ଶନା ବରଣୀୟ ଅର୍ଥାତ୍ ଯେଉଁ କର୍ମ ସମ୍ୟକ୍ ଦର୍ଶନ ବା ସତ୍ ବିଶ୍ୱାସ ପ୍ରାପ୍ତିରେ ବାଧା ସୃଷ୍ଟି କରେ, (୩) ବେଦନୀୟ ଅର୍ଥାତ୍ ଯେଉଁ କର୍ମ ଦ୍ୱାରା ସୁଖ ଓ ଦୁଃଖ ଅନୁଭୂତ ହୋଇଥାଏ (୪) ମୋହନୀୟ ଅର୍ଥାତ୍ ଯେଉଁ କର୍ମ ଦ୍ୱାରା ପ୍ରତ୍ୟେକ ବସ୍ତୁ ପ୍ରତି ମୋହ ଜନ୍ମେ, (୫) ଆୟୁ କର୍ମ ଯାହା ଦ୍ୱାରା ଜୀବନକାଳ ନିର୍ଦ୍ଧାରିତ ହୁଏ, (୬) ନାମ, ଯାହା ପ୍ରତ୍ୟେକ ବ୍ୟକ୍ତିର ନାମକରଣ କରେ ଏବଂ (୭) ଗୋତ୍ର, ଯାହା ପ୍ରତ୍ୟେକ ଆତ୍ମାର ଗୋତ୍ର ନିରୂପଣ କରେ ଏବଂ (୮) ଅନ୍ତରାୟ, ଯାହା ପ୍ରତ୍ୟେକ ବ୍ୟକ୍ତିକୁ ମୋକ୍ଷ ମାର୍ଗରେ ଅଗ୍ରସର ହେବାରେ ବାଧା ଦେଇଥାଏ । (୭୨) । ସତ୍ କର୍ମ କରି ମନୁଷ୍ୟ ନିର୍ବାଣ ପ୍ରାପ୍ତ ହୁଏ ଓ ସ୍ୱର୍ଗୀୟ ଜୀବନ ଭୋଗ କରେ । ଏହି କର୍ମର ଫଳ ସ୍ୱରୂପ ପୁନର୍ଜନ୍ମ ହୋଇଥାଏ ଏବଂ ଉକ୍ତ ଜନ୍ମରେ ମଧ୍ୟ ନାନା ସୁଖ-ଦୁଃଖ ଭୋଗ କରିବାକୁ ହୋଇଥାଏ । ସେ କର୍ମ ଦ୍ୱାରା ଆବୃତ ନିଜର ଆତ୍ମ ସ୍ୱରୂପ ଅନୁଭବ କରିପାରେ ନାହିଁ । ଆତ୍ମା ସକଳ ପ୍ରକାର କର୍ମ ବନ୍ଧନରୁ ମୁକ୍ତ ହେଲେ ନିଜର ଅନନ୍ତ ଦୃଷ୍ଟି, ଅନନ୍ତ ଜ୍ଞାନ ଓ ଅନନ୍ତ ଶକ୍ତି ଅନୁଭବ କରେ । ଅତଏବ ଆତ୍ମା ସକଳ ପ୍ରକାର କର୍ମ ବନ୍ଧନରୁ ମୁକ୍ତ ହେବା ଏକାନ୍ତ ଆବଶ୍ୟକ । ଏଥି ସକାଶେ 'ପଞ୍ଚ ମହାବ୍ରତ' ପାଳନ ତଥା କେତେକ 'ସମିତି' ବା 'ଅଭ୍ୟାସ' ଓ 'ଗୁପ୍ତି' ବା କାୟମନୋବାକ୍ୟରେ ସଂଯମ ଆଚରଣ ମଧ୍ୟ ପ୍ରୟୋଜନ । 'ପଞ୍ଚ ମହାବ୍ରତ' 'ସମିତି' ଓ 'ଗୁପ୍ତି' ଗୁଡ଼ିକର ଭିତ୍ତି ଉପରେ ବାହ୍ୟ ଓ ଆଭ୍ୟନ୍ତରୀଣ ସାଧନା ବା ଆତ୍ମ ନିଗ୍ରହ ଦ୍ୱାରା କୁକର୍ମ ଗୁଡ଼ିକର ବିନାଶ ହୁଏ ଏବଂ ମନୁଷ୍ୟ ସିଦ୍ଧି ବା ନିର୍ବାଣ ଲାଭ କରେ । ବାହ୍ୟ ସାଧନା ଗୁଡ଼ିକ ଛଅ ପ୍ରକାର, ଯଥା—ଅନଶନ, ଅବମୋଦ୍‌ରିକା (ସଂଯମ), ଭିକ୍ଷାଚର୍ଯ୍ୟା, ରସ

ପରିତ୍ୟାଗ, କାୟ କ୍ଲେଶ ଏବଂ ସମ୍‌ଲୀନତା (ସ୍ୱ ଅଙ୍ଗ ପ୍ରତ୍ୟଙ୍ଗର ଯତ୍ନ) । ଆଭ୍ୟନ୍ତରୀଣ ସାଧନା ମଧ୍ୟ ଛଅ ପ୍ରକାର, ଯଥା—ପ୍ରାୟଶ୍ଚିତ୍ତ, ବିନୟ, ବୈୟାବୃତ୍ୟ (ଗୁରୁସେବା), ସ୍ୱାଧ୍ୟାୟ, ଧ୍ୟାନ ଓ ବ୍ୟୁତ୍ସର୍ଗ (ଦେହ ତ୍ୟାଗ) । (୬୮) ।

କର୍ମ ବନ୍ଧନରୁ ମୁକ୍ତି ଲାଭ ପାଇଁ ମହାବୀର ସମ୍ୟକ୍ ଦର୍ଶନ ବା ସତ୍ ବିଶ୍ୱାସ, ସମ୍ୟକ୍ ଜ୍ଞାନ ବା ସତ୍‌ଜ୍ଞାନ ଏବଂ ସମ୍ୟକ୍ ଚରିତ୍ର ବା ସଦାଚାର ଆଦି ତିନୋଟି ସଦ୍‌ଗୁଣ ବା ସତ୍‌ପନ୍ଥା ଅବଲମ୍ବନ କରିବା ନିମନ୍ତେ ଉପଦେଶ ଦେଇଛନ୍ତି । ଏହା ଜୈନ ଧର୍ମର ତ୍ରିରତ୍ନ ବା ରତ୍ନତ୍ରୟ (Three Jewels) ନାମରେ କଥିତ । ସତ୍ ବିଶ୍ୱାସ, ସତ୍ ଜ୍ଞାନ ଓ ସତ୍ ଚରିତ୍ର ବା ସତ୍‌କର୍ମ-- ଜୈନ ଧର୍ମର ଏହି ତିନୋଟି ତତ୍ତ୍ୱାହରଣ ପନ୍ଥା ଉପରୋକ୍ତ ବାହ୍ୟ ଓ ଆଭ୍ୟନ୍ତରୀଣ ସାଧନା ବା ଆତ୍ମ ନିଗ୍ରହ ଉପରେ ପ୍ରତିଷ୍ଠିତ । ଏହି ତିନୋଟି ପନ୍ଥା ଅବଲମ୍ବନ କଲେ ମନୁଷ୍ୟର ଆତ୍ମା ମାୟାଗ୍ରସ୍ତ ହୁଏ ନାହିଁ କିମ୍ବା ଜନ୍ମଜନ୍ମାନ୍ତର କଷ୍ଟ ଭୋଗିବାକୁ ହୁଏ ନାହିଁ । ଅଧିକନ୍ତୁ ସେ ପୁନର୍ଜନ୍ମରୁ ମୁକ୍ତିଲାଭ କରି ନିର୍ବାଣ ପ୍ରାପ୍ତ ହୁଏ ।

ପ୍ରତ୍ୟେକ ବସ୍ତୁର ଆତ୍ମିକ ଅଂଶ ସତ୍ ଓ ଭୌତିକ ଅଂଶ ଅସତ୍ ବୋଲି ମହାବୀର ମତ ବ୍ୟକ୍ତ କରିଛନ୍ତି । ଏହି ଆତ୍ମିକ ଅଂଶ ବା ସତ୍‌'ରେ ବିଶ୍ୱାସ ରଖିବା ହିଁ ସତ୍ ବିଶ୍ୱାସ ବା ସମ୍ୟକ୍ ଦର୍ଶନ । ଆତ୍ମିକ ଅଂଶ ବା ଭୌତିକ ଅଂଶ ଅର୍ଥାତ୍ 'ସତ୍' ଓ 'ଅସତ୍'ର ପ୍ରକୃତ ରୂପକୁ ଅନୁଭବ କରିପାରିବା ହିଁ ସମ୍ୟକ୍ ଜ୍ଞାନ । ମନୁଷ୍ୟର ପାଞ୍ଚଟି ଇନ୍ଦ୍ରିୟ ମଧ୍ୟରୁ ପ୍ରତ୍ୟେକଟିର କିଛି ନା କିଛି ବିଶେଷ ଗୁଣ ରହିଛି । ମନୁଷ୍ୟର ଏହି ଗୁଣ ପ୍ରତି ଆସକ୍ତି ରହିଥାଏ । ଉଦାହରଣ ସ୍ୱରୂପ ଚକ୍ଷୁ ହେଉଛି ଇନ୍ଦ୍ରିୟ ଏବଂ ଦୃଶ୍ୟ ହେଉଛି ତତ୍ ସଂଲଗ୍ନ ବିଷୟ । ମନୁଷ୍ୟ ସର୍ବଦା ସୁନ୍ଦର ଦୃଶ୍ୟ ଦେଖିବାକୁ ମନ ବଳାଇଥାଏ । ଏହି ସୁନ୍ଦର ଦୃଶ୍ୟ ପ୍ରତି ତାହାର ଆସକ୍ତି ରହିଥାଏ । ଯେଉଁ ବ୍ୟକ୍ତି ସୁନ୍ଦର ଓ ଅସୁନ୍ଦର ଦୃଶ୍ୟ ମଧ୍ୟର ପ୍ରଭେଦକୁ ଭୁଲିଯାଏ, ସୁନ୍ଦର ଓ ଅସୁନ୍ଦର ଦୃଶ୍ୟ ପ୍ରତି ସମଭାବାପନ୍ନ ହୁଏ, ସେ ଅନାସକ୍ତ ହୁଏ । ତାହାର ଅନାସକ୍ତ ଭାବ ହିଁ ସମ୍ୟକ ବା ସତ୍ ଆଚରଣକୁ ବୁଝାଏ । ସମ୍ୟକ୍ ଦର୍ଶନ ବିନା ସମ୍ୟକ୍ ଜ୍ଞାନ ଲାଭ କରିବା ସମ୍ଭବ ନୁହେଁ । ସେହିପରି ସମ୍ୟକ୍ ଜ୍ଞାନ ନଥିଲେ ମନୁଷ୍ୟ ସତ୍ ଚରିତ୍ରବାନ୍ ହୋଇପାରିବ ନାହିଁ । ଏ ତିନୋଟି ଗୁଣରୁ ଯେ କୌଣସି ଗୋଟିକର ମଧ୍ୟ ଅଭାବ ହେଲେ ମୋକ୍ଷ ପ୍ରାପ୍ତି ସମ୍ଭବପର ନୁହେଁ । ୬୯) ।

ନିସର୍ଗ, ଉପଦେଶ, ଆଜ୍ଞା, ସୂତ୍ର ଅଧ୍ୟୟନ, ବୀଜ (ସୂଚନା), ଅଭିଗମ, ବିସ୍ତାର, କର୍ତ୍ତବ୍ୟ,ସଂକ୍ଷେପ ଏବଂ ଧର୍ମ ବା ନିୟମର ଭିତ୍ତିଉପରେ ସମ୍ୟକ ଦର୍ଶନ ପ୍ରତିଷ୍ଠିତ (୭୦) । ସମ୍ୟକ୍ ଜ୍ଞାନ ପାଞ୍ଚ ପ୍ରକାର,ଯଥା:– ୧ ଶ୍ରୁତ ଜ୍ଞାନ, ୨) ଅଭିନିବୋଧିକଜ୍ଞାନ, ୩) ଅବଧି ଜ୍ଞାନ,୪) ମନଃ ପର୍ଯ୍ୟାୟ ଜ୍ଞାନ ଏବଂ ୫) କେବଳ ଜ୍ଞାନ । (୭୧) । ସାମାୟିକ (ପାପ କର୍ମରୁ ନିବୃତ୍ତି), ଛେଦୋପସ୍ଥାପନ (ଧର୍ମାନୁଚରଣ) ପରିହାର ବିଶୁଦ୍ଧିକ (ସାଧନା ଦ୍ୱାରା ବିଶୁଦ୍ଧତା

ଲଭ), ସୂକ୍ଷ୍ମ ସମ୍ପରାୟ (କାମନାର ବିନାଶ) ଏବଂ ଅକଷାୟ ଯଥାଖ୍ୟାତ (ପାପର କ୍ଷୟ) ଆଦି ଦ୍ୱାରା ଜଣେ ବ୍ୟକ୍ତି ସମ୍ୟକ୍ ଚରିତ୍ରବାନ୍ ହୋଇପାରିବ । (୭୨) ।

ମହାବୀର ପ୍ରତ୍ୟେକଙ୍କୁ ସଦ୍‌ଗୁଣ ସମ୍ପନ୍ନ ହେବା ପାଇଁ ଉପଦେଶ ଦେଇଛନ୍ତି । ଏହି ସଦ୍‌ଗୁଣ ଗୁଡ଼ିକ ହେଲା ସମ୍ବେଗ (ସାଂସାରିକ ମୋହମାୟାରୁ ମୁକ୍ତିର ଉଦ୍ୟମ), ନିର୍ବେଦ (ପାର୍ଥିବ ବସ୍ତୁ ପ୍ରତି ଅନାସକ୍ତି), ଧର୍ମ ଶ୍ରଦ୍ଧା, ଗୁରୁସାଧର୍ମିକ ଶୁଶ୍ରୂଷା, ସହଧର୍ମାବଲମ୍ବୀଙ୍କ ପ୍ରତି ମାନ୍ୟ ପ୍ରଦର୍ଶନ, ଆଲୋଚନ (ଗୁରୁଙ୍କ ସମ୍ମୁଖରେ ପାପ କର୍ମର ସ୍ୱୀକାର), ନିନ୍ଦା (ସ୍ୱକୃତ ପାପ ଯୋଗୁଁ ଅନୁତାପ ଗର୍ହା (ଗୁରୁଙ୍କ ସମ୍ମୁଖରେ ନିଜର ପାପ କର୍ମ ପାଇଁ ଅନୁଶୋଚନା), ସାମୟିକ (ଆତ୍ମାର ନୈତିକ ଓ ଆଧ୍ୟାତ୍ମିକ ଶୁଦ୍ଧି) ବନ୍ଦନା (ଗୁରୁପୂଜା) ପ୍ରତିକ୍ରମଣ (ପାପର ପ୍ରାୟଶ୍ଚିତ୍ତ, କାୟୋତ୍ସର୍ଗ (ଦଣ୍ଡାୟମାନ ଅବସ୍ଥାରେ ଯୋଗାସନ), କାମନା ପ୍ରତ୍ୟାଖ୍ୟାନ, ସ୍ତବ ସ୍ତୁତି ମଙ୍ଗଳ (ସ୍ତୁତିଗାନ), କାଳସ୍ୟ ପ୍ରତ୍ୟୁପେକ୍ଷଣା (ସମୟାନୁବର୍ତ୍ତିତା), ପ୍ରାୟଶ୍ଚିତ୍ତ କରଣ (ତପସ୍ୟ ବ୍ରତ ପାଳନ), କ୍ଷମା ପଣା (କ୍ଷମା ଭିକ୍ଷା), ସ୍ୱାଧ୍ୟାୟ, ବାଚନା (ପବିତ୍ର ଗ୍ରନ୍ଥପାଠ), ପରିପୃଚ୍ଛନା (ଶିକ୍ଷକଙ୍କୁ ଜିଜ୍ଞାସା), ପରାବର୍ତ୍ତନା (ପୁନରାବୃତ୍ତି), ଅନୁପ୍ରେକ୍ଷା (ଅନୁଧ୍ୟାନ), ଧର୍ମ କଥା (ଧର୍ମ ପ୍ରବଚନ) ଶ୍ରୁତସ୍ୟାରାଧନା (ପବିତ୍ର ଜ୍ଞାନ ଆହରଣ), ଏକାଗ୍ରମନଃ ସନ୍ନିବେଶନା (ଚିନ୍ତାରେ ଏକାଗ୍ରତା) ସଂଯମ, ତାପସ, ବ୍ୟବଧାନ (କର୍ମର କ୍ଷୟ), ସୁଖସାତା (ସୁଖ ପରିହାର), ଅପ୍ରତିବଦ୍ଧତା (ମାନସିକ ସ୍ୱାଧୀନତା), ଆହାର ପ୍ରତ୍ୟାଖ୍ୟାନ (ଉପବାସ), କଷାୟ ପ୍ରତ୍ୟାଖ୍ୟାନ (ନିଷିଦ୍ଧ ଖାଦ୍ୟ ତ୍ୟାଗ), କର୍ମ ପ୍ରତ୍ୟାଖ୍ୟାନ, ଶରୀର ପ୍ରତ୍ୟାଖ୍ୟାନ ସର୍ବଗୁଣ ସମ୍ପନ୍ନତା, ବୈୟାବୃତ୍ୟ (ସେବା) ବୀତରାଗତା (ବିତୃଷ୍ଣା), କ୍ଷାନ୍ତି (ସହିଷ୍ଣୁତା) ଆର୍ଜବ (ସରଳତା), ମାର୍ଦ୍ଦବ (ନମ୍ରତା) ଭାବସତ୍ୟ, ମନୋଗୁପ୍ତତା (ଅଭିନିବିଷ୍ଟତା), କାୟ, ମନୋ ବାକ୍ୟରେ ସଂଯମ, ସମ୍ୟକ୍ ଦର୍ଶନ, ଜ୍ଞାନ ଓ ଚରିତ୍ର, କାମ କ୍ରୋଧାଦି ଷଡ଼ରିପୁର ଦମନ, ଏବଂ ଶୈଲେଷୀ (ସ୍ଥିରତା) । ଏସବୁ ସଦ୍‌ଗୁଣ ଦ୍ୱାରା ମନୁଷ୍ୟ ପବିତ୍ର ଓ ନୀତିମୟ ଜୀବନ ଯାପନ କରିବା ସଙ୍ଗେ ସଙ୍ଗେ କର୍ମଫଳ ଜନିତ ପୁନର୍ଜନ୍ମରୁ ମୁକ୍ତିଲାଭ କରେ ଏବଂ ସିଦ୍ଧଶିଳାରେ ଉପନୀତ ହୁଏ ବା ନିର୍ବାଣ ପ୍ରାପ୍ତ ହୁଏ ।(୭୩)।

ମହାବୀରଙ୍କ ମତରେ ସମାଜ ତିନୋଟି ଶ୍ରେଣୀର ବ୍ୟକ୍ତିଙ୍କୁ ନେଇ ଗଠିତ, ଯଥା : ସର୍ବବ୍ରତୀ, ଅଣୁବ୍ରତୀ ଏବଂ ଅବ୍ରତୀ । ଯେଉଁମାନେ ପଞ୍ଚ ମହାବ୍ରତ ନିଷ୍ଠାର ସହ ପାଳନ କରନ୍ତି ସେମାନଙ୍କୁ ସର୍ବବ୍ରତୀ କୁହାଯାଏ । ସେମାନେ ହେଉଛନ୍ତି ସଂସାରତ୍ୟାଗୀ ଭିକ୍ଷୁ । ତାଙ୍କୁ ସର୍ବ ବିରତ କୁହାଯାଏ । ଅଣୁବ୍ରତୀ ହେଉଛନ୍ତି ଧର୍ମପ୍ରାଣ ଗୃହସ୍ଥ ଯେଉଁମାନେ କି ଏହି ପାଞ୍ଚଟି ବ୍ରତକୁ ସୀମିତ ରୂପରେ ପାଳନ କରନ୍ତି । ଯେଉଁମାନେ କୌଣସି ବ୍ରତ ପାଳନ କରନ୍ତି ନାହିଁ ସେମାନେ ଅବ୍ରତୀ ନାମରେ ଅଭିହିତ । ଅବ୍ରତୀ ଶ୍ରେଣୀର ବ୍ୟକ୍ତି ହିଂସକ, ଈର୍ଷାଳୁ ଦୁଷ୍କର୍ମ ଦୁରାଚାରୀ ହୋଇଥାନ୍ତି । ତେଣୁ ଅନ୍ୟମାନେ ଏଭଳି ଦୁର୍ଜନଙ୍କ ଠାରୁ ଦୂରେଇ ରହିବାକୁ ମହାବୀର ଉପଦେଶ ଦେଇଛନ୍ତି ।

ମହାବୀର ସ୍ୱୟଂ ଯୋଗୀ ଥିଲେ ଏବଂ ଜୈନ ଧର୍ମରେ ଯୋଗର ଏକ ବଶିଷ୍ଟ ଓ ପର୍ଯ୍ୟାପ୍ତ ସ୍ଥାନ ନର୍ଦ୍ଦେଶ କରଯାଇଛନ୍ତି । ସେ ସ୍ୱତନ୍ତ୍ରତାର ପ୍ରବକ୍ତା ଥିଲେ ।

୧୯୨୦ ଖ୍ରୀ ଅ ରେ ଅନୁଷ୍ଠିତ ମହାବୀର ଜୟନ୍ତୀରେ ଅଧ୍ୟକ୍ଷତା କର ଜାତର ଜନକ ମହାତ୍ମାଗାନ୍ଧି ଯଥାର୍ଥରେ କହିଥିଲେ ଯଦ କେହି ଅହିଂସା ତତ୍ତ୍ୱର ପ୍ରକାଶ, ବକାଶ, ପ୍ରୟୋଗର ମାର୍ଗ ପ୍ରଦର୍ଶନ କରଥିଲେ ସେ ହେଉଛନ୍ତି ଭଗବାନ ମହାବୀର । (୭୪) ।

**ପାଦଟିକା .**

୧. ସୂତ୍ର କୃତାଙ୍ଗ, ୧. ୩.

୨. ଆବଶ୍ୟକ ସୂତ୍ର, ୨, ୧୫, ୧୬, Vijayendra Suri, Tirthankara Mahavira, I, p. 98

୩. K.C. Jain, Lord Mahavira and his times, pp. 35-37. H-Jacobi, sacred books of the East, xxii,p. x-xiii.

୪. ଆଚାର୍ଯ୍ୟ ପୂଜ୍ୟପାଦ (ଖ୍ରୀ ଅ ୫୦୦) ଙ୍କ ରଚିତ "ଦଶଭକ୍ତି", ପୃ ୧୧୬.

୫. ଆଚାର୍ଯ୍ୟ ଗୁଣଭଦ୍ର (ଖ୍ରୀ· ଅ· ୭୦୦) ଙ୍କ ରଚିତ ହରିବଂଶ ପୁରାଣ, ସର୍ଗ ୭୪.

୬. ଆଚାର୍ଯ୍ୟ ଜନସେନ୍ ସୂରି (ଖ୍ରୀ ଅ ୦୧) ଙ୍କ ହରିବଂଶ ପୁରାଣ ଖଣ୍ଡ ୧, ସର୍ଗ ୨.

୭ ଦ ମନଧ, ପୁରାଣ ସଂଗ୍ରହ, ପୃ ୫୨.

୮. ମହାକବି ସକଳ କୀର୍ତ୍ତି (ମୃତ୍ୟୁକାଳ ୧୬୭୪ ଖ୍ରୀ ଅ·) ବିରଚିତ ବର୍ଦ୍ଧମାନ ଚରିତ ।

୯. Kshatriya clans in Buddhist India, p. 36.

୧୦. T. Bloch, Archoeological Survey of India Reports, Annual Report, 1903-04, p. 82.

୧୧. S. Stevension, The Heart of Jainism, pp 21-22.

୧୨. B. C. Law, Mahavira : His life and teachings, p. 19.

୧୩. N. L. Dey, The Geographical Dictionary of Ancient and Medieval India, p 107.

୧୪. କଳ୍ପ ସୂତ୍ର, ପୃ ୨.

୧୫. E. J. Rapson, Cambridge History of India, vol I, p 156

୧୬. K. A. Sastri, History of India, part I, pp 39-40.

୧୭. R. K. Mukhergee, Hindu civilization, part II, (Bharatiya vidya Bhavan, Bombay), pp 268-269 K.P. Jayaswal, journal of Bihar and Orissa Research society, vol-I, part I, pp 99-104.

୧୮. ମଜ୍‌ଝିମ ନିକାୟ, ୨ ୧୪୩.

୧୯. V. A Smith, The Jaina Stupas and other Antiquities of Mathura, plate No. 18; C J. L.Shah, Jainism in North India. p 21, London 1932

୨୦. H. Jacobi, XXII, p xxxi, F N 2.

୨୧. କଳ୍ପସୂତ୍ର, ୯୨-୧୦୫

୨୨. ଆଚାରଙ୍ଗ ସୂତ୍ର, ୧. ୮. ୨.

୨୩ ଆଚାରଙ୍ଗ ସୂତ୍ର, ୧ ୩; B C. Law, Mahavira. His life and teachings, pp 23-24.

୨୪. କଳ୍ପ ସୂତ୍ର, ୧୧୬, ୧୧୭; K.C.Jain, Lord Mahavira and his times, p 49(First-Edition, 1974)

୨୫. ମଜ୍‌ଝିମନିକାୟ, ୧. ପୃ. ୯୦.

୨୬. C J. L Shah, Jainism in North India, p 26.

୬. A K. Rath, 'Jainism in Kalinga in the Pre-Mauryan period', Orissa Historical Research Journal, vol xi, No 2. (1962) pp 124-127; By the same author, 'Anote on the Relation of parsvanatha and Mahavira with kalinga' proceedings of the Indian History Congress, 39th session, Hyderabad, (1978), pp 137-148.

୨୮ କଳ୍ପସୂତ୍ର, ୧୨୨; B. C. Law, Mahavira his life and teachings, pp 29 and 32.

୨୯. K. C. Jain, Lord Mahavira and his times, p 45.

୩୦. Mahavira : His life and teachings, p 33.

୩୧. B. C. Law, Geography of Early Buddhism, p 6.

୩୨. A cunningham, Ancient Geography of India p 537 (London).

୩୩. I bid, p 718

୩୪. ଚୁଲ୍ଲ ସାଙ୍କୁଚାୟକ, ବିନୟ ପିଟକ, ପୃ ୨୪୮.

୩୫. B-C Law, geography of Early, Buddhism, p. 24.

୩୬ H Jacobi, sacred Books of the East, xxii, p. 84 and p. 264,

୩୭. A Cunning ham, Ancient Geography of India, p. 469.

୩୮ H. L Jain, Bharatiya Sanskritime Jaina Dharmaka yogadana (in Hindi), p 24

୩୯. ଆବଶ୍ୟକ ନିର୍ଯୁକ୍ତି, ୬୫୮-୬୭୦; C-J-L Shah, Jainism in North India, p. 27.

୪୦. ମହଁ ହିମବନ୍ତ.ସ୍ଥ, p, ୫୭ -୩୮୭.

୪୧. ଭଗବତୀ ସୂତ୍ର, ପୃ ୫୫୫ ।

୪୨ ନ୍ୟାୟାଧର୍ମକଥା, ପୃ ୧୪୬; ସ୍ଥାନାଙ୍ଗ ସୂତ୍ର, ପୃ ୪୫ ।

୪୩. ଔପପାତିକ ସୂତ୍ର, ୪୪-୪୬ ।

୪୪. ଆବଶ୍ୟକ ଚୂର୍ଣ୍ଣି, ଦ୍ୱିତୀୟ ଅଧ୍ୟାୟ, ପୃ ୨୦୬ ।

୪୫. ଭଗବତୀ ସୂତ୍ର, ପୃ ୪୪ ।

୪୬. ଆବଶ୍ୟକ ଚୂର୍ଣ୍ଣି, ଦ୍ୱିତୀୟ ଅଧ୍ୟାୟ ପୃ ୧୬୪ ।

୪୭. ଭଗବତୀ ସୂତ୍ର ପୃ ୫୫୬ ।

୪୮. ସ୍ଥାନାଙ୍ଗ ସୂତ୍ର, ପୃ ୪୩୦ ।

୪୯. ଆବଶ୍ୟକ ସୂତ୍ର, ପୃ ୨୯୯ ।

୫୦. ଭଗବତୀ ସୂତ୍ର, ୧୨. ୨

୫୧. ଆବଶ୍ୟକ ଚୂର୍ଣ୍ଣି, ପୃ ୯୧ ।

୫୨. ଭଗବତୀ ସୂତ୍ର, ପୃ ୪୫୮ ।

୫୩. ଅନ୍ତଗଡ଼ଦଶାଓ, ତୃତୀୟ ଅଧ୍ୟାୟ ।

୫୪. ନାୟାଧର୍ମକଥା, ପୃ ୩୨ ।

୫୫. ଆବଶ୍ୟକ ଚୂର୍ଣ୍ଣି, ପୃ ୧୧୫ ।

୫୬. R.R. Diwakar, Edt. Bihar Through Ages, p. 127, Calcutta, 1959.

୫୭. Jaina Sutras, Part I, p. 264; B.C. Law, Mahavira : His life and teachings p. 52.

୫୮. ସୂତ୍ର କୃତାଙ୍ଗ, ୨.୬.୩୯; ଉତ୍ତରାଧ୍ୟୟନ ସୂତ୍ର, ୨୩. ୨ ।

୫୯. ଉତ୍ତରାଧ୍ୟୟନ ସୂତ୍ର, ୨୩.୧୩ ।

୧୦. Hopkins, The Religions of India ; The Ethics of India.

୧୧. ପଣ୍ଡିତ ବନାସ୍ତକ ମିଶ୍ର, ସ୍ୱରଗାସ୍ତ ଦର୍ଶନ ପ୍ରବେଶିକା, ପ୍ରଥମ ସଂସ୍କରଣ, ପୃ ୧୯ (କଟକ ୧୯୪୭) ।

୧୨. S. Radhakrishnan, Indian Philosophy, vol I, p 333.

୧୩. ଉତ୍ତରାଧ୍ୟୟନ ସୂତ୍ର, ୩୨ ।

୧୪. H Jacobi, sacred Books of the East xlv, p xxvii; R.C. Majumdar (Edt.) The Age of Imperial unity (The History and culture of India people, vol II), p 424.

୧୫. ସୂତ୍ର କୃତାଙ୍ଗ, ସୂତ୍ର ଗଡ଼ାଙ୍ଗ, p ୧୨ ।

୧୬. B.M. Barua, A History of Pre-Buddhist Indian philosophy, p 385.

୧୭. Uttaradhyayana Sutra, XXXIII, 2-3.

୧୮. I bid, XXX, 7-36

୧୯. I bid, XXVIII, 30.

୨୦. I bid, XXVIII, 31.

୨୧. I bid, XXXIII, 4 ; କଳ୍ପସୂତ୍ର, ୧. ୧୫, sacred Books of the East, XXII, p 223 ; ଆୟୁରଙ୍ଗ ସୂତ୍ର, ଦ୍ୱିତୀୟ ଅଧ୍ୟାୟ, ୧୫, ୨୩, ୨୫ ।

୨୨. Uttaradhyayana Sutra, XXVIII, 32-33

୨୩. K. C Jain, Lord Mahavira and his times, pp 111-119

୨୪ ଡ଼ : କେଶବଚନ୍ଦ୍ର ଦାଶ, ଧର୍ମ, ସଂସ୍କୃତି, ଦର୍ଶନ ଓ ବିଜ୍ଞାନ, ପୃ ୮୭, କଟକ, ୧୯୬୭ ।

...o...

---

"ଆଶ୍ରବ ଭବ - ହେତୁଃ ସ୍ୟାତ୍ ସମ୍ବାରେ ମୋକ୍ଷ କାରଣମ୍ ।
ଇତୀୟମ୍ ଆର୍ହତୀ ଦୃଷ୍ଟିରନ୍ୟଦ୍ ସ୍ୟାଃ ପ୍ରପଞ୍ଚନମ୍ ।।"

(ସର୍ବ ଦର୍ଶନ ସଂଗ୍ରହ, ପୃ ୮୦ ପୁନା ୧୯୫୧)

# ଚତୁର୍ଥ ଅଧ୍ୟାୟ

## କଳିଙ୍ଗରେ ପାର୍ଶ୍ୱନାଥ ଓ ମହାବୀର

ଜୈନ ଗ୍ରନ୍ଥ ଗୁଡ଼ିକରେ କଳିଙ୍ଗର ବହୁ ଉଲ୍ଲେଖ ରହିଛି । ଜମ୍ବୁଦ୍ୱୀପ ପଣ୍ଣତ୍ତି (୧)ରେ କଳିଙ୍ଗ ଜୈନ ଭିକ୍ଷୁମାନଙ୍କର ପରିବ୍ରଜନ ନିମନ୍ତେ ୨୫½ ଆର୍ଯ୍ୟ ଦେଶଗୁଡ଼ିକ ମଧ୍ୟରେ ଅନ୍ୟତମ ବୋଲି ବର୍ଣ୍ଣିତ ହୋଇଛି । ଅଷ୍ଟାଦଶ ତୀର୍ଥଙ୍କର ଅରନାଥ କଳିଙ୍ଗର ରାଜ୍ୟପୁର (ରାଜପୁର) ଠାରେ ପ୍ରଥମେ ଭିକ୍ଷା ଗ୍ରହଣ କରିଥିଲେ । (୨) । ତୋଷଳି (ଧଉଳି) ଜୈନ ଧର୍ମ ପ୍ରଚାରକ ଏବଂ ସାଧାରଣ ଉପାସକଙ୍କର ଏକ ପ୍ରଧାନ କ୍ଷେତ୍ର ଥିଲା । ସେଠାରେ ଭଗବାନ ଜିନଙ୍କ ମୂର୍ତ୍ତି ରାଜା ତୋଷଳିକଙ୍କ ଦ୍ୱାରା ପୂଜିତ ହେଉଥିଲେ ବୋଲି ଜୈନ ଗ୍ରନ୍ଥରେ ଉଲ୍ଲିଖିତ ହୋଇଛି । (୩) ପାର୍ଶ୍ୱନାଥ ଓ ମହାବୀରଙ୍କ କଳିଙ୍ଗ ସହିତ କପରି ଘନିଷ୍ଠ ସମ୍ପର୍କ ଥିଲା, ସେଥିର ସୂଚନା ପ୍ରାଚୀନ ଜୈନ ଗ୍ରନ୍ଥ ଗୁଡ଼ିକରୁ ପ୍ରତିପାଦିତ ହୁଏ । ଜୈନ ଧର୍ମ ପ୍ରଚାର ନିମନ୍ତେ ପ୍ରଥମେ ପାର୍ଶ୍ୱନାଥ ଓ ପରେ ମହାବୀର କଳିଙ୍ଗ ପରିଦର୍ଶନ କରିଥିଲେ । ଫଳରେ ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀ ବେଳକୁ ଜୈନ ଧର୍ମ କଳିଙ୍ଗର ଏକ ଲୋକ-ପ୍ରିୟ ଧର୍ମ ରୂପେ ପ୍ରତିଷ୍ଠା ଲାଭ କରିପାରିଥିଲା । କେବଳ ସେତିକି ନୁହେଁ, ଜୈନ ଭିକ୍ଷୁ ଓ ଶ୍ରମଣମାନଙ୍କ ପରିବ୍ରଜ୍ୟା ଓ ଧର୍ମ ପ୍ରଚାର ନିମନ୍ତେ କଳିଙ୍ଗ ଏକ ଉପଯୁକ୍ତ କ୍ଷେତ୍ର ରୂପେ ବିବେଚିତ ହୋଇଥିଲା । (୪) ।

କଳିଙ୍ଗରେ ଜୈନ ଧର୍ମର ପ୍ରଥମ ପ୍ରଚାରକ ହେଉଛନ୍ତି ତ୍ରୟୋବିଂଶତି ତୀର୍ଥଙ୍କର ଭଗବାନ ପାର୍ଶ୍ୱନାଥ । ସେ କଳିଙ୍ଗରେ ଚତୁର୍ଯ୍ୟାମ ଜୈନ ଧର୍ମ ପ୍ରଚାର କରିଥିଲେ । ଚତୁର୍ଯ୍ୟାମ ଜୈନ ଧର୍ମ ହିଁ କଳିଙ୍ଗର ପ୍ରାଚୀନତମ ଧର୍ମ । ପାର୍ଶ୍ୱନାଥ ପୁଣ୍ଡ୍ର ଓ ତାମ୍ରଲିପ୍ତି (ପଶ୍ଚିମ ବଙ୍ଗର ତାମଲୁକ) ରୁ କୋପକଟକ ଆଗମନ କରି ସେଠାରେ ଧର୍ମ ପ୍ରଚାର କରି-ଥିଲେ ବୋଲି ଜୈନ କ୍ଷେତ୍ର ସମାସରୁ ଜଣାଯାଏ । କୋପକଟକରେ ସେ ଧନ୍ୟନାମକ ଜଣେ ଗୃହସ୍ଥର ଆତିଥ୍ୟ ଲାଭ କରିଥିଲେ । ତେଣୁ କୋପକଟକ ଧନ୍ୟ କଟକ ନାମରେ ମଧ୍ୟ ଅଭିହିତ । ବାଲେଶ୍ୱର ଜିଲ୍ଲାର ଆଧୁନିକ କୁପାରି ସହିତ କୋପକଟକ ଚିହ୍ନିତ ହୋଇଛି । (୫) । କେତେକ ଐତିହାସିକଙ୍କ ମତରେ କୋପକଟକ ଭୌମକର ରାଜା ପ୍ରଥମ ଶୁଭଙ୍କର ଦେବଙ୍କ (ଖ୍ରୀ.ଅ. ୭୯୦) ନେଉଳପୁର ତାମ୍ର ଲେଖରେ (୬) ଉଲ୍ଲିଖିତ କୋମ୍ପାରକ ସହିତ ସମାନ । କଳିଙ୍ଗର ରାଜା କରକଣ୍ଡୁ ପାର୍ଶ୍ୱନାଥଙ୍କ ଦ୍ୱାରା ଚତୁର୍ଯ୍ୟାମ ଜୈନ ଧର୍ମରେ ଦୀକ୍ଷିତ ହୋଇ ସେହି ଧର୍ମର ପୃଷ୍ଠପୋଷକତା କରିଥିବା ବିଷୟ ଜୈନ ଉତ୍ତରାଧ୍ୟୟନ ସୂତ୍ର (୭) ଏବଂ କୁମ୍ଭକାର ଜାତକ (୮)ରୁ ଜ୍ଞାତ ହୁଏ ।

କରକଣ୍ଡୁ ଥିଲେ କଳିଙ୍ଗର ପ୍ରାଚୀନତମ ଜୈନ ରାଜା । ସେ ପାର୍ଶ୍ୱନାଥଙ୍କର ଶିଷ୍ୟ ଥିଲେ । 'ଭରତେଶ୍ୱର' ନାମକ ଏକ ଗ୍ରନ୍ଥରେ(୯)କରକଣ୍ଡୁଙ୍କର ଜନ୍ମବୃତ୍ତାନ୍ତ ରହିଛି । ଚମ୍ପାର ରାଜା ଦଧିବାହନ ଓ ରାଣୀ ପଦ୍ମାବତୀଙ୍କର ପୁତ୍ର ଥିଲେ କରକଣ୍ଡୁ । କରକଣ୍ଡୁଙ୍କର ମାତା ତାଙ୍କୁ ଗର୍ଭରେ ଧାରଣ କରିଥିବା ବେଳେ ଥରେ ଦୋହଦ ଉଦ୍ଦେଶ୍ୟରେ ଦଧିବାହନଙ୍କ ସହିତ ବିହାର କରୁଥିଲେ । ହଠାତ୍ ତାଙ୍କର ହସ୍ତୀ ଉନ୍ମତ୍ତ ହୋଇ ଘଞ୍ଚ ଅରଣ୍ୟ ମଧ୍ୟରେ ଇତସ୍ତତଃ ଭାବରେ ବହୁ ଦୂରକୁ ଧାବନ କଲା । ରାଜା ଦଧିବାହନ ଗୋଟିଏ ବିଶାଳ ବଟ ବୃକ୍ଷର ଶାଖାକୁ ଧରିପକାଇ ହସ୍ତୀ ପୃଷ୍ଠରୁ ଅଲଗା ହେଲେ ଏବଂ ନିଜ ଜୀବନକୁ ରକ୍ଷା କଲେ । କିନ୍ତୁ ଗର୍ଭବତୀ ରାଣୀ ହସ୍ତୀପୃଷ୍ଠରୁ ଅପସାରିତ ହୋଇପାରିଲେ ନାହିଁ । ଫଳରେ ସେ ପରିଜନ ପରିତ୍ୟକ୍ତା ହୋଇ ଘୋର ବିପଦରେ ପଡ଼ିଲେ । କୌଣସି ପ୍ରକାରେ ହସ୍ତୀ ପୃଷ୍ଠରେ ସେ ସାହସର ସହିତ ବସି ରହିଲେ । କ୍ରମେ ହସ୍ତୀର ସ୍ୱାଭାବିକ ଅବସ୍ଥା ଫେରି ଆସିଲା । ରାଣୀଙ୍କୁ ପୃଷ୍ଠରେ ବହନ କରି ହସ୍ତୀ ଶେଷରେ କଳିଙ୍ଗ ରାଜ୍ୟରେ ପହଞ୍ଚିଲା । ସେଠାରେ ହସ୍ତୀ ରାଣୀଙ୍କୁ ପୃଷ୍ଠ ଦେଶରୁ ଧୀରେ ଅବତରଣ କରାଇଦେଲା । କିଛି ସମୟ ପରେ ରାଣୀ ସେଠାରେ ଏକ ପୁତ୍ର ସନ୍ତାନ ପ୍ରସବ କଲେ । ତାହାର ନାମ ରଖାଗଲା କରକଣ୍ଡୁ ବା କରଣ୍ଡୁ (୧୦) । ନିକଟବର୍ତ୍ତୀ ଏକ ଜୈନ ଆଶ୍ରମରେ ପଦ୍ମାବତୀ ଶିଶୁ ପୁତ୍ର ସହ ଆଶ୍ରୟ ନେଲେ । ସେଠାରେ ଜୈନ ଶ୍ରମଣମାନେ କରକଣ୍ଡୁଙ୍କର ଲାଳନ ପାଳନ କଲେ । ସେମାନଙ୍କର ତତ୍ତ୍ୱାବଧାନରେ କରକଣ୍ଡୁ ବିଭିନ୍ନ ଶାସ୍ତ୍ର, ଅସ୍ତ୍ରଚାଳନା ଏବଂ ଯୁଦ୍ଧ ବିଦ୍ୟା ଶିକ୍ଷା କଲେ ଏବଂ ତହିଁରେ ପାରଦର୍ଶିତା ଲାଭ କଲେ । କଳିଙ୍ଗରେ ସେତେବେଳେ ଅରାଜକତା ଲାଗି ରହିଥିଲା । ଜନସାଧାରଣ କରକଣ୍ଡୁଙ୍କ ସଚ୍ଚରିତ୍ର ଓ ବହୁମୁଖୀ ପ୍ରତିଭାରେ ପ୍ରୀତ ହୋଇ ତାଙ୍କୁ କଳିଙ୍ଗର ରାଜ ପଦରେ ଅଧିଷ୍ଠିତ କଲେ । କଳିଙ୍ଗର ରାଜା ହେବା ପରେ କରକଣ୍ଡୁ ଦେଶରେ ଶାନ୍ତି ଓ ଶୃଙ୍ଖଳା ସ୍ଥାପନ ପୂର୍ବକ ବିଭିନ୍ନ ଦିଗରେ ରାଜ୍ୟ ବିସ୍ତାର କରିବାକୁ ଲାଗିଲେ । ଏକଦା କଳିଙ୍ଗ ଓ ଚମ୍ପା ମଧ୍ୟରେ ସଂଘର୍ଷର ସୂତ୍ରପାତ ହେଲା । କରକଣ୍ଡୁ ଜାଣିନଥିଲେ ଯେ, ଚମ୍ପାର ରାଜା ଦଧିବାହନ ତାଙ୍କର ପିତା ।

କରକଣ୍ଡୁ ଓ ଦଧିବାହନଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ଲାଗିଥିବା ବେଳେ ରାଣୀ ପଦ୍ମାବତୀ ରଣ କ୍ଷେତ୍ରରେ ଉପସ୍ଥିତ ହେଲେ ଏବଂ ପିତା ଓ ପୁତ୍ରଙ୍କ ମଧ୍ୟରେ ମିଳନ ଘଟାଇଲେ । ପରସ୍ପରର ପରିଚୟ ପାଇ ଉଭୟ ଦଧିବାହନ ଓ କରକଣ୍ଡୁ ଅସ୍ତ୍ର ତ୍ୟାଗ କଲେ । ଯୁଦ୍ଧର ଅବସାନ ହେଲା । ଶେଷରେ ଦଧିବାହନ ପୁତ୍ର କରକଣ୍ଡୁ ହସ୍ତରେ ଚମ୍ପା ରାଜ୍ୟଭାର ନ୍ୟସ୍ତ କରି ସନ୍ନ୍ୟାସ ଗ୍ରହଣ କଲେ । ଫଳରେ କରକଣ୍ଡୁ ଉଭୟ କଳିଙ୍ଗ ଓ ଚମ୍ପାର ରାଜା ହେଲେ । (୧୧) । କଳିଙ୍ଗରେ ଜୈନ ଧର୍ମର ବିକାଶ ଓ ପ୍ରସାର ଉଦ୍ଦେଶ୍ୟରେ କରକଣ୍ଡୁ ଏକ ବିହାର ନିର୍ମାଣ କରିଥିଲେ । ତାହା ତାଙ୍କ ନାମାନୁସାରେ କରକଣ୍ଡୁ ବିହାର ନାମରେ ନାମିତ ହୋଇଥିଲା । ଏହି ବିହାର ମଧ୍ୟରେ ପ୍ରସ୍ତର ଖୋଦିତ ଏକ ବିରାଟକାୟ ହସ୍ତୀ ସ୍ଥାପିତ ହୋଇଥିଲା । ହସ୍ତୀ ଦ୍ୱିତୀୟ ତୀର୍ଥଙ୍କର ଅଜିତନାଥଙ୍କର ଲାଞ୍ଛନ ଥିଲା । ତେଣୁ କରକଣ୍ଡୁ

ତତ୍କାଳୀନ ରାଜା ମହାବୀରଙ୍କ ପିତା ସିଦ୍ଧାର୍ଥଙ୍କର ମିତ୍ର ଥିଲେ ଏବଂ ତାଙ୍କ ଦ୍ୱାରା ଆମନ୍ତ୍ରିତ ହୋଇ ମହାବୀର ଧର୍ମ ପ୍ରଚାର ନିମନ୍ତେ କଳିଙ୍ଗ ଆଗମନ କରିଥିଲେ ବୋଲି ଆବଶ୍ୟକ ସୂତ୍ର (୧୮) ଓ ଉକ୍ତ ଗ୍ରନ୍ଥର ବୃତ୍ତିକାର ହରିଭଦ୍ରଙ୍କ ରଚିତ ହରିଭଦ୍ରୀୟ ବୃତ୍ତି (୧୯) ରେ ଉଲ୍ଲିଖିତ ହୋଇଛି । କୁମାରୀ ପର୍ବତ (ଭୁବନେଶ୍ୱରସ୍ଥ ଉଦୟଗିରି) ଠାରେ ମହାବୀର ଧର୍ମ ପ୍ରଚାର କରିଥିବା ବିଷୟ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ ସୂଚିତ ହୋଇଛି । (୨୦) ।

କଥିତ ଅଛି, ମହାବୀର ସ୍ୱାମୀ ତୋଷଳୀରେ ପ୍ରବିଷ୍ଟ ହେବା ପୂର୍ବରୁ ଲାଳୁସ୍ୟଗାମ, ସୁଭୋମ, ସୁଚ୍ଛେତା, ମଳୟ, ହସ୍ତିଶୀର୍ଷ ପ୍ରଭୃତି ସ୍ଥାନ ପରିଦର୍ଶନ କରିଥିଲେ ।(୨୧) । ଉକ୍ତ ସ୍ଥାନଗୁଡ଼ିକ ଉତ୍ତର ଓ ପଶ୍ଚିମ ଓଡ଼ିଶାରେ ଅବସ୍ଥିତ ଥିବା ଅନୁମାନ କରାଯାଏ ।(୨୨) ସେଗୁଡ଼ିକ ମଧ୍ୟରୁ ସୁଭୋମ ସୋମବଂଶୀ,ଭଞ୍ଜ ଓ ତୋଳରାଜାମାନଙ୍କ ଅଭିଲେଖ (୨୩)ରେ ଉଲ୍ଲିଖିତ ସୁବର୍ଣ୍ଣପୁର (ବଲାଙ୍ଗୀର ଜିଲ୍ଲାର ମହାନଦୀ ଓ ତେଲନଦୀର ସଙ୍ଗମସ୍ଥଳ ନିକଟ ସୋନପୁର ସହିତ ଚିହ୍ନିତ ହୋଇପାରେ । ମଳୟ ଢେଙ୍କାନାଳ ଜିଲ୍ଲା ଅନ୍ତର୍ଗତ ମଳୟଗିରି ବା ମାଳ୍ୟଗିରି ସହିତ ପରିଚିତ ହୋଇପାରେ । (୨୪) । ଉପରୋକ୍ତ ସ୍ଥାନ ଗୁଡ଼ିକରେ ପରି-ଭ୍ରମଣ କଲାବେଳେ ମହାବୀରଙ୍କୁ ଅଶେଷ କ୍ଳେଶ ଭୋଗ କରିବାକୁ ପଡ଼ିଥିଲା ।

ମହାବୀର ସ୍ୱାମୀ କଳିଙ୍ଗର ରାଜଧାନୀ ତୋଷଳୀ (ଭୁବନେଶ୍ୱର ନିକଟବର୍ତ୍ତୀ ଧଉଳି) କୁ ଆସି ଧର୍ମ ପ୍ରଚାର କରିଥିଲେ । ଏବଂ ସେଠାରୁ ମୋଷଳୀ ଅଭିମୁଖେ ଯାତ୍ରା କରିଥିଲେ ବୋଲି ଜୈନ ଆବଶ୍ୟକ ସୂତ୍ରରୁ ଜ୍ଞାତ ହୁଏ । : --

'ତତୋ ଭଗବଂ ତୋସଳୀଂ ଗଓ ତତ୍ଥ ସୁମାଗଧୋ ନାମେ। ରଠିଓ ପିୟମିତ୍ତୋ ଭଗବଓ ସୋ ମାଇ .. ତତୋ ସାମୀ ମୋଷଳୀଂ ଗଓ ..." (୨୫) ।

ତୋଷଳୀରେ ମହାବୀର ବିବସ୍ତ୍ର ହୋଇ ନିର୍ବିକାର ଭାବରେ ଭ୍ରମଣ କଲାବେଳେ ଲୋକେ ତାଙ୍କୁ ପାଗଳ ବୋଲି ବିବେଚନା କରିଥିଲେ । ଆଉ କେତେକ ତାଙ୍କୁ ଦସ୍ୟୁ ବୋଲି ଭାବି ପ୍ରହାର କରିଥିଲେ । ସେମାନେ ତାଙ୍କୁ ହତ୍ୟାକରିବାକୁ ଉଦ୍ୟତ ହେବା-ବେଳେ ତୋଷଳୀ କ୍ଷତ୍ରିୟମାନେ ଯଥା ସମୟରେ ତାଙ୍କୁ ଚିହ୍ନିପାରି ରକ୍ଷା କରିଥିଲେ । ମୋଷଳୀରେ ମଧ୍ୟ ତାଙ୍କୁ ଅନୁରୂପ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେଠାରେ ମଧ୍ୟ ତାଙ୍କୁ ଏକ ଡକାୟତ ବୋଲି ସନ୍ଦେହ କରାଗଲା । ତେଣୁ ତାଙ୍କୁ କାରାଗାରରେ ଆବଦ୍ଧ ହେବାକୁ ପଡ଼ିଲା । କିନ୍ତୁ ତାଙ୍କର ପରିଚୟ ମିଳିଲା ପରେ ସେ କାରାମୁକ୍ତ ହେଲେ । (୨୬) । ମୋଷଳୀ ପ୍ରଥମ ଖ୍ରୀ.ଅ.ରେ ଗ୍ରୀକ୍ ଐତିହାସିକ ଟଲେମିଙ୍କ ଭୌଗଳିକ ବିବରଣୀରେ ବର୍ଣ୍ଣିତ ମଇସୋଲଇ ଅଥବା ମେସୋଲସ୍ କିମ୍ବା ମେସୋଲିଆ (୨୭) ସହିତ ସମାନ ଏବଂ ଉକ୍ତ ଅଞ୍ଚଳ ଗଞ୍ଜାମର ଦକ୍ଷିଣାଞ୍ଚଳରୁ ଗୋଦାବରୀ ନଦୀର ତ୍ରିକୋଣଭୂମି ପର୍ଯ୍ୟନ୍ତ ବିସ୍ତୃତ

ଧଭସ୍ତ ଅଜିତନାଥ ଓ ପାର୍ଶ୍ୱନାଥଙ୍କର ଉପାସକ ଥିବା ଅନୁମିତ ହୁଏ । କରକଣ୍ଡୁଙ୍କ ପରି ଗାନ୍ଧାରର ରାଜା ନଗ୍ନଜିତ୍, ବିଦେହର ରାଜା ନମି, ପାଞ୍ଚାଳର ନରପତି ଦୁର୍ମୁଖ ଏବଂ ବିଦର୍ଭ ନରେଶ ଭୀମ ମଧ୍ୟ ପାର୍ଶ୍ୱନାଥଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିଲେ । (୧୨) । ଅତଏବ କରକଣ୍ଡୁଙ୍କ ସମେତ ଏ ସମସ୍ତ ରାଜାଙ୍କ କାଳ ପାର୍ଶ୍ୱନାଥଙ୍କ ସମୟ ଅର୍ଥାତ୍ ଖ୍ରୀ ପୂ ୮୭୭ ରୁ ଖ୍ରୀ ପୂ ୭୭୭ ମଧ୍ୟରେ ନିରୂପଣ କରାଯାଇପାରେ ।

ଭାବଦେବ ସୂରିଙ୍କ ପାର୍ଶ୍ୱନାଥ ଚରିତ (୧୩) ରେ କଳିଙ୍ଗର ରାଜା ଯବନ ପ୍ରସେନଜିତ୍‌ଙ୍କ ରାଜ୍ୟ ଆକ୍ରମଣ କରିବେଲେ ପାର୍ଶ୍ୱନାଥଙ୍କ ଭୂମିକା ସମ୍ପର୍କରେ ଆଖ୍ୟାନଟିଏ ବର୍ଣ୍ଣିତ ହୋଇଛି । ଆଖ୍ୟାୟିକାଟି ହେଲା—କୁଶସ୍ଥଳପୁରର ରାଜା ପ୍ରସେନଜିତଙ୍କ ପ୍ରଭାବତୀ ନାମ୍ନୀ ପୁତ୍ରୀ କନ୍ୟାଟିଏ ଥିଲା । ଏକଦା ପ୍ରଭାବତୀ ରାଜୋଦ୍ୟାନରେ ସହଚରୀମାନଙ୍କ ଗହଣରେ ବିହାର କରୁଥିଲେ । ସେତିକବେଳେ କିନ୍ନରୀମାନେ ପାର୍ଶ୍ୱନାଥଙ୍କ ଯଶଗାନ କରୁଥିବା ସେ ଶୁଣିବାକୁ ପାଇଲେ । ବାରାଣସୀର ରାଜା ଅଶ୍ୱସେନଙ୍କ ପୁତ୍ର 'ପାର୍ଶ୍ୱନାଥଙ୍କ ବୀରତ୍ୱ ତଥା ସର୍ବଗୁଣସମ୍ପନ୍ନତାରେ ମୁଗ୍ଧ ହୋଇ ପ୍ରଭାବତୀ ତାଙ୍କୁ ବିବାହ କରିବାକୁ ଇଚ୍ଛା କଲେ । ରାଜା ପ୍ରସେନଜିତ ଏକଥା ଶୁଣିବା ମାତ୍ରେ ଅଶ୍ୱସେନଙ୍କ ନିକଟକୁ ପାର୍ଶ୍ୱନାଥଙ୍କ ସହିତ ପ୍ରଭାବତୀଙ୍କ ବିବାହ ପ୍ରସ୍ତାବ ପଠାଇଲେ । ଅଶ୍ୱସେନ ଏହି ପ୍ରସ୍ତାବ ଆନନ୍ଦରେ ସହିତ ଗ୍ରହଣ କରିଥିଲେ । ପଦ୍ମାବତୀଙ୍କର ପାର୍ଶ୍ୱନାଥଙ୍କ ସହିତ ବିବାହ ସ୍ଥିର ହେଲା । ଏଣେ କଳିଙ୍ଗର ରାଜା ଯବନ ପ୍ରଭାବତୀଙ୍କୁ ବିବାହ କରିବାକୁ ଆଗ୍ରହୀ ଥିଲେ । ତେଣୁ ସେ ପ୍ରଭାବତୀଙ୍କୁ ବଳପୂର୍ବକ ହରଣ କରିବା ନିମନ୍ତେ କୁଶସ୍ଥଳପୁର ଆକ୍ରମଣ କଲେ । କିନ୍ତୁ ତାଙ୍କ ମନୋବାଞ୍ଛା ପୂର୍ଣ୍ଣ ହେଲନାହିଁ । ପ୍ରସେନଜିତ୍‌ଙ୍କ ଅନୁରୋଧରେ ବାରାଣସୀରୁ ବିପୁଳ ସୈନ୍ୟ ସହ ପାର୍ଶ୍ୱନାଥ ଯଥା ସମୟରେ କୁଶସ୍ଥଳପୁରରେ ପହଞ୍ଚିବା ମାତ୍ରେ ଯବନ ଭୟଭୀତ ହୋଇ ପଶ୍ଚାତ୍‌ଧାବନ କଲେ । ଏହାପରେ ପାର୍ଶ୍ୱନାଥଙ୍କ ସହିତ ପ୍ରଭାବତୀଙ୍କର ବିବାହ ସମ୍ପନ୍ନ ହେଲା । ଏହି ଘଟଣାଟି ଭୁବନେଶ୍ୱର ସନ୍ନିକଟ ଉଦୟଗିରିସ୍ଥ ରାଣୀଗୁମ୍ଫାର ଉପରମହଲାରେ ଖୋଦିତ ହୋଇଛି । (୧୪) । ଆହ୍ଲାବାଦ ସ୍ତମ୍ଭ ଲେଖ (Allahabad Pillar Inscription) (୧୫) ରେ ବର୍ଣ୍ଣିତ ହୋଇଛି ଯେ ଗୁପ୍ତ ସମ୍ରାଟ ବ୍ୟାଘ୍ର ପରାକ୍ରମ ସମୁଦ୍ରଗୁପ୍ତ ତାଙ୍କ ଦାକ୍ଷିଣାତ୍ୟ ଅଭିଯାନରେ ୧୨ଟି ରାଜ୍ୟ ଜୟ କରିଥିଲେ । ତନ୍ମଧ୍ୟରେ ଧନଞ୍ଜୟଙ୍କ ରାଜ୍ୟ କୁଶସ୍ଥଳ ଅନ୍ୟତମ । ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ମତରେ (୧୬) ପାର୍ଶ୍ୱନାଥ ଚରିତରେ ବର୍ଣ୍ଣିତ କୁଶସ୍ଥଳପୁର ହିଁ ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ବିଜୟର କୁଶସ୍ଥଳପୁର ଏବଂ ତାହା ଅଧୁନା ଗଞ୍ଜାମ ଜିଲ୍ଲାର 'କୋଥଳୀ' ବା 'କୁଶସ୍ଥଳୀ' (କୁସ୍ଥଳୀ) ଗ୍ରାମ ସହିତ ଚିହ୍ନିତ କରାଯାଇପାରେ ।

ଚତୁର୍ବିଂଶ ତୀର୍ଥଙ୍କର ଭଗବାନ ମହାବୀରଙ୍କ କଳିଙ୍ଗ ସହିତ ସମ୍ପର୍କ ଅଧିକ ନିବିଡ଼ ଥିଲା । କେବଳ ଜ୍ଞାନ ପ୍ରାପ୍ତ ହେବା ପରେ ମହାବୀର ପଞ୍ଚଯାମ ଧର୍ମର ପ୍ରଚାର ଉଦ୍ଦେଶ୍ୟରେ କଳିଙ୍ଗ ଆଗମନ କରିଥିବା ଜିନସେନଙ୍କ ହରିବଂଶ ପୁରାଣ (୧୭) ରୁ ଜଣାଯାଏ । କଳିଙ୍ଗର

ଥିଲା । ମହାବୀରଙ୍କ ସମସ୍ତରୁ କଳିଙ୍ଗରେ ପିହୁଣ୍ଡ ନାମକ ବନ୍ଦର ଜୈନଧର୍ମର ଏକ ପ୍ରଧାନ ପୀଠ ରୂପେ ଖ୍ୟାତି ଲାଭ କରିଥିବା ଉତ୍ତରାଧ୍ୟୟନ ସୂତ୍ର (୨୮) ରୁ ଜଣାପଡ଼େ । ଏଥିରୁ ମହାବୀର ମୋକ୍ଷଲୀ ଅନ୍ତର୍ଗତ ପିହୁଣ୍ଡ ପରିଦର୍ଶନ କରିଥିବା ଅନୁମାନ କରାଯାଇପାରେ । ସିଲଭନ୍ ଲେଭି (Sylvain Levi) (୨୯)ଙ୍କ ମତରେ ପିହୁଣ୍ଡ ହାତୀଗୁମ୍ଫା ଅଭିଲେଖ (୩୦)ରେ ବର୍ଣ୍ଣିତ ପିଥୁଣ୍ଡ ସହିତ ସମାନ । ଟୋଲେମିଙ୍କ ଭୂଗୋଳରେ ଏହି ପିଥୁଣ୍ଡ ପିଟୁଣ୍ଡ୍ର (Pitundra) ନାମରେ ଅଭିହିତ । ପିଟୁଣ୍ଡ୍ର ନଗର ମହାନଦୀ ଓ ଗୋଦାବରୀ ନଦୀ ଦ୍ୱୟର ମୁହାଣଠାରୁ ସମଦୂରରେ ସମୁଦ୍ର ତଟରେ ଅବସ୍ଥିତ ଥିଲା ବୋଲି ଟଲେମି ସ୍ୱୀୟ ଭୂଗୋଳରେ ଉଲ୍ଲେଖ କରିଛନ୍ତି । (୩୧) । ଅତଏବ ଶ୍ରୀକାକୁଲମ୍ ଏବଂ କଳିଙ୍ଗପଟନମ୍ ନିକଟରେ ସମୁଦ୍ର କୂଳରେ ପିଥୁଣ୍ଡ ନଗର ଅବସ୍ଥିତ ଥିବା ଅନୁମେୟ ।

ଜୈନ ଭଗବତୀ ସୂତ୍ରରୁ ଜଣାଯାଏ, ମହାବୀର ତାଙ୍କ ଧର୍ମ ପ୍ରଚାରର ପ୍ରାରମ୍ଭରେ ଆଜୀବକ ସମ୍ପ୍ରଦାୟର ଅଗ୍ରଣୀ ଗୋଶାଳ ଓ କେତେକ ଶିଷ୍ୟଙ୍କ ଗହଣରେ କଳିଙ୍ଗର କୂର୍ମଗ୍ରାମ ଓ ସିଦ୍ଧାର୍ଥ ଗ୍ରାମ ପରିଦର୍ଶନ କରିଥିଲେ । କୂର୍ମଗ୍ରାମରେ ବୈଶ୍ୟାୟନ ନାମକ ଜଣେ ଧ୍ୟାନରତ ସାଧୁଙ୍କ ସହିତ ତାଙ୍କର ଭେଟ ହୋଇଥିଲା । ସେତେବେଳେ ବୈଶ୍ୟାୟନ ମଧ୍ୟାହ୍ନ ସୂର୍ଯ୍ୟଙ୍କ ପ୍ରଖର କିରଣ ପ୍ରତି ଦୃଷ୍ଟି ନିବଦ୍ଧ କରି ଏବଂ ହସ୍ତଦ୍ୱୟ ଊର୍ଦ୍ଧ୍ୱୋତ୍ଥାପନ ପୂର୍ବକ ଯୋଗ ସାଧନ କରୁଥିଲେ । (୩୨)। ମହାବୀର ସମ୍ଭବତଃ ଏ ଧରଣର ଯୋଗ ପଦ୍ଧତି ଶିକ୍ଷା କରିବା ପାଇଁ କୂର୍ମ ଗ୍ରାମରେ ବୈଶ୍ୟାୟନଙ୍କୁ ସାକ୍ଷାତ କରିଥିଲେ । କଥିତ ଅଛି, ତାଙ୍କ ସଂସ୍ପର୍ଶରେ ଆସି ମହାବୀର ଜ୍ୟେଷ୍ଠ ମାସର ମଧ୍ୟାହ୍ନରେ ଉତ୍ତପ୍ତ ପ୍ରସ୍ତର ଖଣ୍ଡ ଉପରେ ଦଣ୍ଡାୟମାନ ହୋଇ ଏବଂ ସୂର୍ଯ୍ୟଙ୍କୁ ଅବଲୋକନ ପୂର୍ବକ ଯୋଗାଭ୍ୟାସ ଆରମ୍ଭ କଲେ । ଏ ପ୍ରକାରର ଯୋଗ ସାଧନା କଳିଙ୍ଗ ତଥା କୋଙ୍ଗଦ ରାଜ୍ୟରେ ଅନୁସୃତ ହୋଇଥିବାର ପ୍ରମାଣ ତାମ୍ରଲିପିମାନଙ୍କରୁ ମିଳେ । କୋଙ୍ଗୋଦର ଶୈଳୋଦ୍ଭବ ବଂଶୀ ରାଜା ପ୍ରଥମ ମଧ୍ୟମରାଜ ବା ଅୟୋଶୋଭିତ ଦ୍ୱିତୀୟ (ଖ୍ରୀ.ଅ. ୬୬୫-୬୯୫)ଙ୍କ ବାଣପୁର (୩୩) ଓ ପାରିକୁଦ (୩୪) ତାମ୍ରଶାସନରୁ ପ୍ରମାଣିତ ହୁଏ ଯେ, ବୈଶ୍ୟାୟନଙ୍କ ଦ୍ୱାରା ସମ୍ପାଦିତ ଯୋଗପଦ୍ଧତି ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ କୋଙ୍ଗୋଦ (ଆଧୁନିକ ପୁରୀ ଓ ଗଞ୍ଜାମ ଜିଲ୍ଲା)ରେ ମଧ୍ୟ ପ୍ରଚଳିତ ଥିଲା—

"କେତେବ୍ ଦଗ୍ଧ ମୂର୍ଖା ସହସ୍ର କିରଣ ଜ୍ୱାଳାବଳି ପ୍ରେକ୍ଷିଣଃ ।" କୂର୍ମଗ୍ରାମ ଆନ୍ଧ୍ର ପ୍ରଦେଶର ଆଧୁନିକ ଶ୍ରୀକାକୁଲମ୍ ସନ୍ନିକଟ ଶ୍ରୀକୂର୍ମମ୍ ସଙ୍ଗେ ସମାନ । (୩୫) ।

କୂର୍ମଗ୍ରାମରୁ ମହାବୀର ଗୋଶାଳଙ୍କ ସଙ୍ଗେ ସିଦ୍ଧାର୍ଥ ଗ୍ରାମକୁ ଯାତ୍ରା କରିଥିଲେ । ସିଦ୍ଧାର୍ଥ ଗ୍ରାମରେ ଉଭୟଙ୍କ ମଧ୍ୟରେ ମତଭେଦ ହେବାରୁ ମହାବୀରଙ୍କ ସହ ଗୋଶାଳ ନିଜର ସମ୍ପର୍କ ଛିନ୍ନ କଲେ । ତତ୍ପଶ୍ଚାତ୍ ଗୋଶାଳ ନିଜର ଏକ ସ୍ୱତନ୍ତ୍ର ଗୋଷ୍ଠୀ (ସମ୍ପ୍ରଦାୟ)ର ସଂସ୍ଥାପନ କଲେ । ତାହା ଆଜୀବକ (୩୬) ନାମରେ ଅଭିହିତ । ଏହାପରେ

ସିଦ୍ଧାର୍ଥ ଗ୍ରାମରେ ଜୈନ ଧର୍ମରେ ଆଜୀବକ ନାମକ ଏକ ନୂତନ ସମ୍ପ୍ରଦାୟର ଉତ୍ଥାନ ହୋଇଥିଲା । କଳିଙ୍ଗର ପ୍ରାଚୀନ ଗଙ୍ଗ ବଂଶୀୟ ରାଜାମାନଙ୍କର, ଯଥା :—ଇନ୍ଦ୍ର ବର୍ମନ୍‌ଙ୍କ ଅଚ୍ୟୁତପୁରମ୍ ତାମ୍ର ଶାସନ (୩୬) (ଗଙ୍ଗାବ୍ଦ ୮୭ ଅଥବା ଖ୍ରୀ.ଅ-୫୮୫) ଏବଂ ଦେବେନ୍ଦ୍ର ବର୍ମନ୍‌ଙ୍କ ସିଦ୍ଧାନ୍ତମ ତାମ୍ର ଲେଖ (ଗଙ୍ଗାବ୍ଦ ১৯৩ ଅଥବା ୭୧୯ ଖ୍ରୀ.ଅ.) (୩୮)ରେ ବରହବାର୍ତ୍ତିନୀ ବିଷୟ ଅନ୍ତର୍ଗତ ସିଦ୍ଧାର୍ଥକ ଗ୍ରାମର ଉଲ୍ଲେଖ ରହିଛି । ଅତଏବ ମହାବୀରଙ୍କ ସମୟର ସିଦ୍ଧାର୍ଥ ଗ୍ରାମ ପରିତ ଗଙ୍ଗ ତାମ୍ର ଶାସନ ଗୁଡ଼ିକରେ ଉଲ୍ଲିଖିତ ସିଦ୍ଧାର୍ଥ ଗ୍ରାମ ସହିତ ସମାନ ହୋଇପାରେ । ଶ୍ରୀ ଜି. ରାମଦାସ (୩୯) ସଠିକ୍ ଭାବେ ସିଦ୍ଧାର୍ଥ ଗ୍ରାମକୁ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ୍ ଠାରୁ ଷୋଳ କିଲୋମିଟର ଦୂରରେ ଅବସ୍ଥିତ ଏବଂ ଶ୍ରୀକୂର୍ମମ୍ ସନ୍ନିକଟ ଆଧୁନିକ ସିଦ୍ଧାନ୍ତମ୍ ସହିତ ଚିହ୍ନିତ କରିଛନ୍ତି । ଦେବେନ୍ଦ୍ର ବର୍ମନ୍‌ଙ୍କ ମଧୁବନ ତାମ୍ର ଲେଖରେ (ଗଙ୍ଗାବ୍ଦ ୩୦୭ ଅଥବା ୮୦୪ ଖ୍ରୀ ଅ) (୪୦) ସିଦ୍ଧାର୍ଥକ ଗ୍ରାମ ସିଧତ ନାମରେ ଉଲ୍ଲେଖ ଅଛି । ତେଣୁ ମହାବୀରଙ୍କ ସମୟରୁ ୧୪୦୦ ବର୍ଷ ମଧ୍ୟରେ ସିଦ୍ଧାର୍ଥ ଗ୍ରାମ ବିଭିନ୍ନ ସମୟରେ ସିଦ୍ଧାର୍ଥକ ଗ୍ରାମ,ସିଧତ ଏବଂ ସିଦ୍ଧାନ୍ତମ୍ ନାମରେ କଥିତ ହୋଇଥିଲା । ସିଦ୍ଧାର୍ଥ ଗ୍ରାମର ଏପରି ନାମକରଣ ଧ୍ରୁବତ ମହାବୀରଙ୍କ ପିତା ସିଦ୍ଧାର୍ଥଙ୍କ ନାମାନୁସାରେ ହୋଇଥାଇ-ପାରେ । କାରଣ କଳିଙ୍ଗର ତତ୍କାଳୀନ ରାଜା ମହାବୀରଙ୍କ ପିତାଙ୍କ ବନ୍ଧୁ ଥିଲେ । ତେଣୁ ବନ୍ଧୁତାର ନିଦର୍ଶନ ସ୍ୱରୂପ କଳିଙ୍ଗର ତତ୍କାଳୀନ ରାଜା ପ୍ରିୟ ବନ୍ଧୁ ସିଦ୍ଧାର୍ଥଙ୍କ ନାମାନୁସାରେ ସିଦ୍ଧାର୍ଥ ଗ୍ରାମ ପ୍ରତିଷ୍ଠା କରିଥିବା ସମ୍ଭବ । ମହାବୀରଙ୍କ ପରିଦର୍ଶନ ଫଳରେ କୂର୍ମଗ୍ରାମ ଏବଂ ସିଦ୍ଧାନ୍ତ ଗ୍ରାମ ଜୈନ ଧର୍ମର ତୀର୍ଥକ୍ଷେତ୍ର ରୂପେ ଖ୍ୟାତି ଲାଭ କରିଥିଲା ।

କଳିଙ୍ଗର ମାଠର ବଂଶୀୟ ରାଜା ଉମା ବର୍ମନ୍ (ଖ୍ରୀ ଅ ୩୬୦-୩୭୦) ମହେନ୍ଦ୍ର-ଗିରି ନିକଟରେ ଅବସ୍ଥିତ ବର୍ଦ୍ଧମାନପୁର ନାମକ ନଗର ଅଧିକାର କରିଥିବା ଟିକ୍‌କଲି ତାମ୍ର ଶାସନ (୪ )ରୁ ଜଣାଯାଏ । ଉକ୍ତ ଗ୍ରାମ ପ୍ରାଚୀନ କୂର୍ମ ଗ୍ରାମ ଓ ସିଦ୍ଧାର୍ଥ ଗ୍ରାମର ଅନତି ଦୂରରେ ଶ୍ରୀକାକୁଲମ ଜିଲ୍ଲାର ଟିକ୍‌କଲି ନିକଟରେ ଅବସ୍ଥିତ । (୪୨) । ବର୍ଦ୍ଧମାନ ମହାବୀର ଏହି ଅଞ୍ଚଳ ପରିଦର୍ଶନ କରିଥିବାହେତୁ ତାଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ବର୍ଦ୍ଧମାନପୁର ନାମରେ ଏକ ନଗର ପ୍ରତିଷ୍ଠିତ ହୋଇଥିଲା ।

ହାତୀଗୁମ୍ଫା ଅଭିଲେଖର ଦ୍ୱାଦଶ ଧାଡ଼ିରୁ ବିଦିତ ହୁଏ, ଖାରବେଳ ତାଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରେ ମଗଧ ବିଜୟର ସଙ୍କେତ ରୂପେ ସେଠାରୁ 'କଳିଙ୍ଗ ଜିନାସନ' (କଳିଙ୍ଗ ଜିନ ଅଥବା କାଳିଙ୍ଗ ଜିନ ବିଗ୍ରହ) ସସମ୍ମାନେ କଳିଙ୍ଗକୁ ଫେରାଇ ଆଣିଥିଲେ । (୪୩) । ଖ୍ରୀ ପୂ ଚତୁର୍ଥ ଶତାବ୍ଦୀରେ ନନ୍ଦବଂଶୀୟ ମଗଧ ସମ୍ରାଟ ମହାପଦ୍ମନନ୍ଦ କଳିଙ୍ଗ ଜୟ କରି ଏହି ଜୈନ ପ୍ରତିମା ବଳପୂର୍ବକ ନିଜ ରାଜ୍ୟକୁ ନେଇ ଯାଇଥିଲେ । ଏଥିରୁ ଅନୁମିତ ହୁଏ, କଳିଙ୍ଗ ଜିନାସନ, ଷଷ୍ଠ ଶତାବ୍ଦୀରେ ମହାବୀରଙ୍କ କଳିଙ୍ଗରେ ଧର୍ମ ପ୍ରଚାର କରିବା ପରେ ଏବଂ ମହାପଦ୍ମନନ୍ଦଙ୍କ (ଖ୍ରୀ.ପୂ. ୩୬୪-୩୩୫)ଙ୍କ ରାଜତ୍ୱ ପୂର୍ବରୁ ହିଁ କଳିଙ୍ଗରେ ପ୍ରତିଷ୍ଠିତ

ହୋଇଥିଲା । ଏହି ଜୈନ ବିଗ୍ରହର ପରିଚୟକୁ କେନ୍ଦ୍ରକରି ଐତିହାସିକଙ୍କ ମଧ୍ୟରେ ମତ ଦ୍ୱୈଧ ରହିଛି । ଡକ୍ଟର ନବୀନ କୁମାର ସାହୁଙ୍କ ମତରେ (୪୪) ଏହି କଳିଙ୍ଗ ଜିନ ଆଦି ତୀର୍ଥଙ୍କର ଋଷଭନାଥଙ୍କ ବିଗ୍ରହ । ରାଖାଲଦାସ ବାନାର୍ଜି ଏବଂ କାଶୀ ପ୍ରସାଦ ଜୟସ୍ୱାଲ (୪୫) ତାହା ଦଶମ ତୀର୍ଥଙ୍କର ଶୀତଳନାଥଙ୍କ ପ୍ରତିମୂର୍ତ୍ତି ବୋଲି ମତ ବ୍ୟକ୍ତ କରିଛନ୍ତି । ଆଉ କେତେକ କଳିଙ୍ଗ ଜିନଙ୍କୁ ଦ୍ୱିତୀୟ ତୀର୍ଥଙ୍କର ଅଜିତନାଥଙ୍କ ସହିତ ଚିହ୍ନିତ କରିଛନ୍ତି । (୪୬) । କାରଣ ତାଙ୍କର ଲାଞ୍ଛନ ହେଲା ହସ୍ତୀ ଏବଂ ସେ ସମୟରେ କଳିଙ୍ଗର ହସ୍ତୀଗୁଡ଼ିକ ଅତି ଶକ୍ତିଶାଳୀ, ବିଶାଳକାୟ ଓ ଭୟପ୍ରଦ ଥିଲେ । (୪୭) । ଅନ୍ୟ କେତେକଙ୍କ ମତ ହେଲା ଏକାଦଶ ତୀର୍ଥଙ୍କର ଶ୍ରେୟାଂଶନାଥ ହିଁ କଳିଙ୍ଗ ଜିନ, କାରଣ ସେ କଳିଙ୍ଗର ଏକଦା ରାଜଧାନୀ ଥିବା ସିଂହପୁର ଠାରେ ଜନ୍ମଗ୍ରହଣ କରିଥିଲେ । (୪୮) । ପଣ୍ଡିତ ନୀଳକଣ୍ଠ ଦାସ (୪୯) କହନ୍ତି ଯେ, କଳିଙ୍ଗ ଜିନ ହେଉଛନ୍ତି ଜଗନ୍ନାଥଙ୍କର ଆଦ୍ୟ ରୂପ । କିନ୍ତୁ ମହାବୀରଙ୍କୁ କଳିଙ୍ଗ ଜିନ ସହିତ ଚିହ୍ନିତ କରିବା ଅଧିକ ଯୁକ୍ତି ଯୁକ୍ତ । କାରଣ ଋଷଭନାଥ, ଅଜିତନାଥ, ଶୀତଳନାଥ କିମ୍ବା ଶ୍ରେୟାଂଶ-ନାଥଙ୍କର କଳିଙ୍ଗରେ ପ୍ରତ୍ୟକ୍ଷ ପ୍ରଭାବ ପଡ଼ିଥିବାର ସୂଚନା କୌଣସି ଜୈନଗ୍ରନ୍ଥରେ ପ୍ରଦତ୍ତ ହୋଇନାହିଁ । ଜୈନ ଗ୍ରନ୍ଥ ଗୁଡ଼ିକରେ କେବଳ ପାର୍ଶ୍ୱନାଥ ଓ ମହାବୀର କଳିଙ୍ଗରେ ଧର୍ମ ପ୍ରଚାର କରିଥିବାର ବିସ୍ତୃତ ବର୍ଣ୍ଣନା ମିଳେ । ଉଭୟ ପାର୍ଶ୍ୱନାଥ ଓ ମହାବୀର ଅନ୍ୟାନ୍ୟ ତୀର୍ଥଙ୍କରମାନଙ୍କ ଅପେକ୍ଷା କଳିଙ୍ଗରେ ଅଧିକ ଜଣାଶୁଣା ଥିଲେ । ତେବେ ପାର୍ଶ୍ୱନାଥଙ୍କ ଅପେକ୍ଷା ମହାବୀରଙ୍କ ଆଧ୍ୟାତ୍ମିକ ପ୍ରଭାବ ପ୍ରାଚୀନ କଳିଙ୍ଗରେ ବିଶେଷ ଭାବରେ ସଞ୍ଚାରିତ ହୋଇଥିଲା । ସେ ପାର୍ଶ୍ୱନାଥଙ୍କ ଅପେକ୍ଷା କଳିଙ୍ଗରେ ବହୁ ଅଧିକ ସ୍ଥାନରେ ଧର୍ମ ପ୍ରଚାର କରି ଲୋକପ୍ରିୟ ହୋଇ ପାରିଥିଲେ । ତାଙ୍କର ପିତା ସିଦ୍ଧାର୍ଥ କଳିଙ୍ଗର ରାଜାଙ୍କ ମିତ୍ର ଥିଲେ । ମହାବୀର ଓ ତାଙ୍କର ପିତାଙ୍କ ନାମାନୁସାରେ କଳିଙ୍ଗରେ ବର୍ଦ୍ଧମାନପୁର, ସିଦ୍ଧାର୍ଥ ଗ୍ରାମ ଆଦି ନଗର ଓ ଗ୍ରାମ ପ୍ରତିଷ୍ଠିତ ହୋଇଥିଲା । କଳିଙ୍ଗର କୂର୍ମଗ୍ରାମ ଠାରେ ମହାବୀର ବେଶସ୍ୟନଙ୍କ ଠାରୁ ପ୍ରଚଣ୍ଡ ରୌଦ୍ର ତାପରେ ଯୋଗ ସାଧନ ପ୍ରକ୍ରିୟା ଶିକ୍ଷା କରିଥିଲେ । ତେଣୁ ପାର୍ଶ୍ୱନାଥଙ୍କ ଅପେକ୍ଷା ମହାବୀର କଳିଙ୍ଗରେ ଅଧିକ ସ୍ମରଣୀୟ ଥିବା ସ୍ୱାଭାବିକ । ମହାବୀରଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ତାଙ୍କର ଏକ ପ୍ରତିମୂର୍ତ୍ତି କଳିଙ୍ଗ ଜିନ ନାମରେ ପ୍ରତିଷ୍ଠିତ ହୋଇଥିବା ଯୁକ୍ତି ସଙ୍ଗତ ମନେହୁଏ । କଳିଙ୍ଗରୁ ମହାବୀରଙ୍କ ପ୍ରତ୍ୟାବର୍ତ୍ତନ ପରେ ପରେ, ଅର୍ଥାତ୍ ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀର ଶେଷାର୍ଦ୍ଧରେ କଳିଙ୍ଗ ଜିନ ପ୍ରତିଷ୍ଠିତ ହୋଇ ପୂଜିତ ହେଲେ ।

କଳିଙ୍ଗଜିନଙ୍କ ଏପରି ନାମକରଣ କାହିଁକି ହୋଇଥିଲା, ସେ ସମ୍ପର୍କରେ ସି.ଜେ. ଶାହ (C-J-Shah)ଙ୍କ ମତ (୫୦) ଏଠାରେ ଉଲ୍ଲେଖଯୋଗ୍ୟ । ତାଙ୍କ ମତରେ କଳିଙ୍ଗରେ ପୂଜିତ ହୋଇଥିବାରୁ ଏହି ଜିନଙ୍କ ମୂର୍ତ୍ତି ତୀର୍ଥଙ୍କର ମୂର୍ତ୍ତି) କଳିଙ୍ଗ ଜିନ ନାମରେ ଅଭିହିତ । ସେହିପରି ଶତ୍ରୁଞ୍ଜୟ, ଅବୁ ପର୍ବତ, ଧୂଲ୍ୟ (ମେବାର) ଠାରେ ପ୍ରତିଷ୍ଠିତ ଜିନ

ବିଗ୍ରହ ଯଥାକ୍ରମେ 'ଶତ୍ରୁଞ୍ଜୟ ଜିନ', 'ଅର୍ବୁଦ ଜିନ,' 'ଧୂଲ୍ୟ ଜିନ' ନାମରେ ପ୍ରସିଦ୍ଧ । ପୂଜା ପୀଠ ବା ସ୍ଥାନର ନାମାନୁସାରେ ଜିନ ମୂର୍ତ୍ତିମାନଙ୍କ ନାମକରଣ ହେବାର ପରମ୍ପରା ଥିଲା ବୋଲି ମୁନି ଜିନ ବିଜୟ ମତବ୍ୟକ୍ତ କରିଛନ୍ତି ।

ଟି ଏନ୍. ରାମଚନ୍ଦ୍ରନ୍ (୫୧), କୃଷ୍ଣଚନ୍ଦ୍ର ପାଣିଗ୍ରାହୀ (୫୨), ନବୀନ କୁମାର ସାହୁ (୫୩) ପ୍ରଭୃତି ଐତିହାସିକ ତଥା ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମତରେ ଉଦୟଗିରିସ୍ଥ ମଞ୍ଚପୁରୀ ଗୁମ୍ଫାରେ ଖାରବେଳଙ୍କ ଦ୍ୱାରା କଳିଙ୍ଗ ଜିନ ପ୍ରତିମା ପୁନଃ ପ୍ରତିଷ୍ଠା କରାଯାଉଥିବାର ଚିତ୍ର ଖୋଦିତ ହୋଇଛି । ଉକ୍ତ ଚିତ୍ରରେ ଖାରବେଳ, ତାଙ୍କର ପଟ୍ଟମହିଷୀ, ରାଜକୁମାର କୁଦେପସିରି, ରାଜ ପୁରୋହିତ ଏବଂ ରାଜ ପରିଷଦ ବର୍ଗ ଦଣ୍ଡାୟମାନ ହୋଇ ଯୁକ୍ତ ହସ୍ତରେ କଳିଙ୍ଗ ଜିନଙ୍କୁ ଆରାଧନା କରୁଥିବାର ଦୃଶ୍ୟ ଖୋଦିତ ହୋଇଛି ।

ଉପରୋକ୍ତ ଆଲୋଚନାରୁ ସିଦ୍ଧ ହୁଏ ଯେ କଳିଙ୍ଗରେ ଜୈନ ଧର୍ମର ବିକାଶ ଓ ପ୍ରସାର କ୍ଷେତ୍ରରେ ପାର୍ଶ୍ୱନାଥ ଓ ମହାବୀରଙ୍କ ଭୂମିକା ଉଲ୍ଲେଖନୀୟ ।

ପାଦଟୀକା :

୧ ଜମ୍ବୁଦ୍ୱୀପ ପଣ୍ଣତ୍ତି, ଅ ୨୦, ପୃ ୧୦୭ ।

୨. ଆବଶ୍ୟକ ନିର୍ଯ୍ୟୁକ୍ତି, ପୃ ୩୨୫ ।

୩. ବ୍ୟବହାର ଭାଷ୍ୟ, ଅଧ୍ୟାୟ ୬, ପୃ ୧୧୫ ।

୪. ଜମ୍ବୁଦ୍ୱୀପ ପଣ୍ଣତ୍ତି, ଅଧ୍ୟାୟ ୨୦, ପୃ ୧୦୬ ।

୫. N N Vasu, Archaeological Survey of Mayurbhanj, vol I, p xlxiii.

୬. Epigraphia India, vol XV, pp 1-9; Binayak Mishra, Dynasties of Medieval Orissa, p 16.

୭. ଉତ୍ତରାଧ୍ୟୟନ ସୂତ୍ର, ୧୮, ୪୫-୪୬; sacred Books of the East, xlv, p 87.

୮. କୁମ୍ଭକାର ଜାତକ, ଜାତକ ତୃତୀୟ ଖଣ୍ଡ ପୃ ୩୭୬ ।
Covlell, Indian culture, vol IV, p 79.

୯. ଭରତେଶ୍ୱର, ପୃ ୧୦୨-୧୦୬, Ancient India, vol I, pp 118-132.

୧୦. 'କରକଣ୍ଡୁ ଚରିତ', ଅଭିଧାନ ରାଜେନ୍ଦ୍ର, ତୃତୀୟ ଖଣ୍ଡ 'କରକଣ୍ଡୁ' ଦ୍ରଷ୍ଟବ୍ୟ ।

୧୧ ଆବଶ୍ୟକ ଚୂର୍ଣ୍ଣି, ଅଧ୍ୟାୟ ୨, ପୃ ୨୦୫ ; ଉତ୍ତରାଧ୍ୟୟନ ସୂତ୍ର, ୧୮, ୪୬ ।

୧୨. Herman Jacobi, Sacred Books of the East, xlv, p 87.

୧୩. Sri Bhavadeva Suri's Parsvanatha charita, Edited by pandit Haragovinda and pandit Becharadasa, pp 269-270, Slokas 155 ff, pargiter, Ancient Indian Historical Tradition, p 145.

୧୪. L.S.S.O' Malley and Manmohan Chakravarty, Bengal District Gazetteers, Puri (1908) p 256.

୧୫. Corpus Inscriptionum Indicarum, vol III, p 7

୧୬ ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ଓଡ଼ିଶା ଇତିହାସ, ପୃ ୫୬ (ଗ୍ରନ୍ଥ ମନ୍ଦିର)

୧୭. R. D. Banerjee, History of Orissa, vol I, p 61.

୧୮, ଆବଶ୍ୟକ ସୂତ୍ର, ପୃ ୨୧୯-୨୨୦

୧୯. ହରିଭଦ୍ରୀୟ ବୃତ୍ତି (ଆଗମୋଦୟ ସମିତି), ପୃ ୨୧୮-୨୨୦; Journal of Bihar and Orissa Research Society, (J. B. O. R. S) vol III, p 223.

୨୦. J.B.O.R.S, vol III, p 228.

୨୧. ଆବଶ୍ୟକ ନିର୍ଯ୍ୟୁକ୍ତି, ପୃ ୫୦୦-୫୦୭

୨୨. K.C Jain, Lord Mahavira and his times, p 54.

୨୩. B Mishra, Dynasties of Medieval Orissa, pp 66-72, and pp 78-79.

୨୪. N.K Sahu, Utkal University History of Orissa, vol I, p 140.

୨୫. ଆବଶ୍ୟକ ସୂତ୍ର, ପୃ ୨୧୯-୨୨୦, ଆବଶ୍ୟକ ନିର୍ଯ୍ୟୁକ୍ତି, ପୃ ୫୦୮

୨୬. ଆବଶ୍ୟକ ନିର୍ଯ୍ୟୁକ୍ତି, ପୃ ୫୦୯

୨୭. Ptolomy, vii–I, 15 and 9.3.

୨୮. ଉତ୍ତରାଧ୍ୟୟନ ସୂତ୍ର, ଅଧ୍ୟାୟ ୨୧, ଶ୍ଳୋକ ୧-୪

୨୯. Indian Antiquary, vol LV, pp 145-147 (1926).

୩୦. ହାଥୀଗୁମ୍ଫା ଅଭିଲେଖର ୧୧ ଧାଡ଼ି—J. B.O.R.S, vol III, part iv, 1917,pp 425 ff and vol XIII (1927), parts III and IV, pp 221-246.

୩୧. Ptolomy,VII,1-15 and 9.3.

୩୨. K.C. jain, Lord Mahavira and his times, pp 47-48.

୩୩. Journal of Kalinga Historical Research Society, vol II, No I, pp 59-65 ff,lines 32-35 of the inscription.

୩୪. Epigraphia Indica, vol XI, pp 281-287, lines, 23-26 of the inscription.

୩୫. A.K.Rath, 'A note on the Relation of Parsvanatha and Mahavira with 'Kalinga', proceedings of the Indian History Congress, vol I, p 139 (1978).

୩୬. Uvasagadasao, Translation by A. F. R Hoernle, Appendix I (1888)

୩୭. Epigraphia Indica, vol III, pp 127-130, S N.Rajguru, Inscriptions of Orissa vol II, pp 24-28 ff.

୩୮. Epigraphia Indica, vol III, pp 212-216.

୩୯. Epigraphia Indica, vol III, p 7 ff and pp 212-216, Inscriptions of Orissa,vol II, pp 81-85.

୪୦. Journal of Andhra Historical Research Society, vol XVIII, p 115

୪୧. S N Rajguru, Inscriptions of Orissa, vol I, part II, pp 4 6.

୪୨. B. V. Krishna Rao, Early dynastics of Andhradesh, p 322.

୪୩. 'କାଳିଙ୍ଗ ଜିନାସନଂ ଅଙ୍ଗ ମଗଧତୋ କଳିଂଗ ଆନେତି' ହାଥୀଗୁମ୍ଫା ଶିଳାଲେଖର ୧୨ ଶ ଧାଡ଼ି ।

୪୪. N.K.Sahu, Utkal University History of Orissa, vol-I, p 228.

୪୫. Epigraphia Indica, vol xx, p 85, R. D. Banerjee, History of Orissa vol I, pp 60-61, Indian Antiquary, vol II, p 136.

୪୬. A.C. Mittal, An early history of Orissa, p 145.

୪୭. Mc Crindle, Megasthenes, p 33.

୪୮. ଅଢ଼ଶୀକ ନର୍ଦ୍ଦଭି, ପୃ ୩୪୩

୪୯. Orissa Historical Research Journal, vol xii, No 1, p 7

୫୦. C.J.Shah, Jainism in North India, pp 172-173.

୫୧. Indian Historical Quarterly, vol XXXVII, pp 103-104 (1951)

୫୨. Archaeological Remains at Bhubaneswar, pp 206-207.

୫୩. Utkal University History of Orissa, vol I pp 360-361.

— o —

"ଜୀୟାତ୍ ତ୍ରୈଲୋକ ନାଥସ୍ୟ ଶାସନଂ ଜିନ ଶାସନଂ ।"

# ପଞ୍ଚମ ଅଧ୍ୟାୟ

## ଜୈନ ସମ୍ରାଟ ଖାରବେଳ

ଖାରବେଳ ଥିଲେ ଚେଦି (ଚେତି) ରାଜ ବଂଶୋଦ୍ଭବ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଚେଦି ରାଜ୍ୟ ଷୋଡ଼ଶ ମହାଜନପଦ ଅନ୍ତର୍ଭୁକ୍ତ ଥିଲା (୧) ଏବଂ ତାହା ବୁନ୍ଦେଲଖଣ୍ଡ ଅଞ୍ଚଳରେ ଅବସ୍ଥିତ ଥିଲା । (୨) । ଦକ୍ଷ ଥିଲେ ଚେଦି ରାଜ୍ୟର ପ୍ରତିଷ୍ଠାତା । ଜୈନ ହରିବଂଶ ପୁରାଣ (୩) ଅନୁସାରେ ଦକ୍ଷଙ୍କ ପରେ ଐଳେୟ, କୁଣିମ, ପୁଲୋମା, ପୌଲମା, ମହିଦତ୍ତ, ମତ୍ସ୍ୟ, ଅୟୋଧନ, ମୂଳ, ଶଳ, ସୂର୍ଯ୍ୟ, ଅମର, ଦେବଦତ୍ତ, ମିଥିଳାନାଥ, ହରିସେନ, ଶଂଖ, ଭଦ୍ର, ଅଭିଚନ୍ଦ୍ର ପ୍ରଭୃତି ରାଜାମାନେ ରାଜତ୍ୱ କରିଥିଲେ । ଅଭିଚନ୍ଦ୍ରଙ୍କ ରାଜତ୍ୱ କାଳରେ ଚେଦିମାନେ ବୁନ୍ଦେଲଖଣ୍ଡ ତ୍ୟାଗ କରି ବିନ୍ଧ୍ୟ ପର୍ବତାଞ୍ଚଳକୁ ଆଗମନ କରିଥିଲେ । ଅଭିଚନ୍ଦ୍ର ବିନ୍ଧ୍ୟାଞ୍ଚଳରେ ଶୁକ୍ତିମତୀ ଉପତ୍ୟକାରେ ଏକ ନୂତନ ଚେଦିରାଷ୍ଟ୍ର ପ୍ରତିଷ୍ଠା କରିଥିଲେ । ଶୁକ୍ତିମତୀ ନଦୀ ତୀରସ୍ଥ ଶୁକ୍ତିମତୀପୁରୀ ତାଙ୍କର ରାଜଧାନୀ ହେଲା—

> "ବିନ୍ଧ୍ୟ ପୃଷ୍ଠେ ଅଭିଚନ୍ଦ୍ରେଣ ଚେଦିରାଷ୍ଟ୍ରମଧିଷ୍ଠିତଂ ।
> ଶୁକ୍ତିମତ୍ୟାସ୍ତଟେ ଅଧାର୍ଯ୍ୟି ନାମ୍ନା ଶୁକ୍ତିମତୀ ପୁରୀ ।" । (୪) ।

Alexander Cunningham ଶୁକ୍ତିମତୀ ନଦୀକୁ ମହାନଦୀ ସହିତ ଚିହ୍ନିତ କରିଛନ୍ତି । (୫) D.C Surcarଙ୍କ (୬) ମତରେ ଶୁକ୍ତିମତୀ ହେଉଛି ବଲାଙ୍ଗୀର ଜିଲ୍ଲାରେ ପ୍ରବାହିତ ସୁକ୍ ତେଲ୍ ନଦୀ । ଗନ୍ଧମାର୍ଦ୍ଦନ ପର୍ବତ (ପରିମଳଗିରି) ରୁ ସୁକ୍ ତେଲ୍ ନଦୀ ପ୍ରବାହିତ ହୋଇ ତେଲ୍ ଓ ମହାନଦୀର ସଙ୍ଗମସ୍ଥଳର ପୂର୍ବରୁ କିଛି ଦୂରରେ ତେଲ୍ ନଦୀରେ ପତିତ ହୋଇଛି । ଚେଦି ରାଜ୍ୟର ରାଜଧାନୀ ଶୁକ୍ତିମତୀପୁର କଳିଙ୍ଗର ସମୀପବର୍ତ୍ତୀ ଥିଲା ବୋଲି ବେସନ୍ତରର ଜାତକ (୭) ରୁ ବିଦିତ ହୁଏ । ଅଭିଚନ୍ଦ୍ରଙ୍କ ପରେ ତାଙ୍କର ପୁତ୍ର ବସୁ (ଉପରିଚର) ରାଜତ୍ୱ କରିଥିଲେ । ତାଙ୍କ ପରେ ଖ୍ରୀ:ପୂ ପ୍ରଥମ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଚେଦି ବଂଶର ଏକ ଶାଖା ମହାମେଘବାହନଙ୍କ ନେତୃତ୍ୱରେ କଳିଙ୍ଗରେ ରାଜ୍ୟ ପ୍ରତିଷ୍ଠା କରିଥିଲେ ।

କଳିଙ୍ଗରେ ଚେଦି ରାଜବଂଶର ପ୍ରଥମ ରାଜା ଥିଲେ ମହାମେଘବାହନ । ବିମଳ ସୁରିଙ୍କ ରଚିତ ପ୍ରାଚୀନ ଜୈନ ଗ୍ରନ୍ଥ ପଉମଚରିୟମ୍ ରେ ରାଜା ମହାମେଘବାହନ ବିନ୍ଧ୍ୟ ପର୍ବତ ସନ୍ନିକଟ ଶୁକ୍ତିମତୀ ଉପତ୍ୟକାସ୍ଥ ଚେଦିରାଷ୍ଟ୍ରର ରାଜା ଋଷଭଙ୍କ ବଂଶଧର ବୋଲି ଉଲ୍ଲିଖିତ । (୮) ଏହି ଋଷଭ ହିଁ ରାଜା ବସୁ (ଉପରିଚର) । ମହାମେଘବାହନ ଜୀମୂତ ବାହନ ନାମରେ ମଧ୍ୟ କଥିତ । (୯) । ଧନପାଳଙ୍କ ପ୍ରଣୀତ ତିଳକମଞ୍ଜରୀ ଜୈନ ଗ୍ରନ୍ଥରେ

ରାଜା ମହାମେଘବାହନ ଜୈନ ଥିଲେ ବୋଲି ଲିଖିତ ହୋଇଛି । (୧୦) । ଖାରବେଳ ହାତୀଗୁମ୍ଫା ଶିଳାଲେଖରେ ନିଜକୁ ରାଜର୍ଷିବଂଶ (ଋଷଭ) ଏବଂ ମହାମେଘବାହନଙ୍କ ବଂଶଧର ବୋଲି ପରିଚିତ କରାଇଛନ୍ତି ।

କଳିଙ୍ଗରେ ଚେଦି ରାଜବଂଶର ତୃତୀୟ ପୁରୁଷ ଯୁଗରେ ('ତତୀୟେ ପୁରିଷ ୟୁଗେ') ଖାରବେଳ ସମ୍ରାଟ ରୂପେ ଅଭିଷିକ୍ତ ହୋଇଥିଲେ । ଅର୍ଥାତ୍ ଖାରବେଳ ଥିଲେ କଳିଙ୍ଗରେ ଚେଦି ରାଜବଂଶର ତୃତୀୟ ରାଜା । ଅତଏବ ମହାମେଘବାହନ ଥିଲେ ପ୍ରଥମ ରାଜା ଏବଂ ସେ ଥିଲେ ଖାରବେଳଙ୍କ ପିତାମହ । ଚେତରାଜ ଖାରବେଳଙ୍କ ପିତା ଥିଲେ ବୋଲି ହାତୀଗୁମ୍ଫା ଶିଳାଲେଖର ପ୍ରଥମ ଧାଡ଼ିରୁ ଜଣାଯାଏ । (୧୧) । ଖାରବେଳଙ୍କୁ ୧୫ ବର୍ଷ ବୟସ ହେଲାବେଳେ ତାଙ୍କ ପିତା ଚେତରାଜଙ୍କ ଅକାଳ ମୃତ୍ୟୁ ହୋଇଥିଲା । ତେଣୁ ସେ ଯୁବରାଜ ପଦରେ ଅଧିଷ୍ଠିତ ହୋଇ ୨୪ ବର୍ଷ ବୟସ ହେବା ମାତ୍ରେ କଳିଙ୍ଗର ରାଜା ହୋଇଥିଲେ । ଖାରବେଳଙ୍କ ସମୟ କାଳ ଖ୍ରୀ:ପୂ: ପ୍ରଥମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ନିରୂପିତ ହୋଇଛି । ସମ୍ଭବତଃ ସେ ଖ୍ରୀ.ପୂ ୪୦ ରେ ସିଂହାସନ ଆରୋହଣ କରିଥିଲେ । (୧୨) । ବୋଧହୁଏ ଚେଦି ରାଜବଂଶ ଖାରବେଳଙ୍କ ରାଜତ୍ୱକାଳରେ ମହାମେଘବାହନ ବଂଶ ନାମରେ କଥିତ ହେଲା । ପିତାମହ ମହାମେଘବାହନଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଖାରବେଳ ନିଜକୁ ମହାମେଘବାହନ ବଂଶୀ ରୂପେ ପରିଚିତ କରାଇଥିଲେ । ମଞ୍ଚପୁରୀ ଗୁମ୍ଫାର ତଳମହଲରେ ଖୋଦିତ ଶିଳାଲେଖରେ ଖାରବେଳଙ୍କ ପୁତ୍ର ତଥା ଉତ୍ତରାଧିକାରୀ କୁଦେପଶିରି ମଧ୍ୟ ନିଜକୁ ମହାମେଘବାହନ ବଂଶଧର ବୋଲି ଉଦ୍‌ଘୋଷିତ କରିଛନ୍ତି । (୧୩) ।

ଜୈନଧର୍ମର ପୃଷ୍ଠପୋଷକ ରୂପେ ଭାରତ ଇତିହାସରେ ଖାରବେଳଙ୍କ ସ୍ଥାନ ଅଦ୍ୱିତୀୟ । ସାମ୍ରାଜ୍ୟ ଗଠନ, ଉଦାର ଶାସନ ଓ ଧର୍ମନୀତି, ଜନହିତକର କାର୍ଯ୍ୟ ତଥା କଳା, ସ୍ଥାପତ୍ୟ ଓ ଧର୍ମକ୍ଷେତ୍ରରେ ଖାରବେଳଙ୍କ କୃତିତ୍ୱ ଅସାଧାରଣ । ତାଙ୍କ ନେତୃତ୍ୱରେ କଳିଙ୍ଗ ରାଷ୍ଟ୍ର ସମଗ୍ର ଭାରତ ବର୍ଷରେ ଏକ ଶକ୍ତିଶାଳୀ ସାମ୍ରାଜ୍ୟ ରୂପେ ଖ୍ୟାତିଲାଭ କରିଥିଲା । କଳିଙ୍ଗର ସାମରିକ ଶକ୍ତି ସମ୍ମୁଖରେ ମଗଧ ସମେତ ଉତ୍ତର ଭାରତ ଓ ସୁଦୂର ଦାକ୍ଷିଣାତ୍ୟର ଅଧିକାଂଶ ରାଜ୍ୟ ଅବନତ ହୋଇଥିଲେ । ଜଣେ ଅସାଧାରଣ ଯୋଦ୍ଧା ଓ ଦିଗ୍‌ବିଜୟୀ ସମ୍ରାଟ ରୂପେ ଖାରବେଳ ଇତିହାସ ପ୍ରସିଦ୍ଧ । ତାଙ୍କର ମୃତ୍ୟୁର ବହୁ ଶତାବ୍ଦୀ ପରେ ଓଡ଼ିଶାର ସୂର୍ଯ୍ୟବଂଶୀ ଗଜପତି ରାଜା କପିଳେନ୍ଦ୍ର ଦେବ କେବଳ ଏହି ଗୌରବ ଅର୍ଜନ କରିପାରି ଦ୍ୱିତୀୟ ଖାରବେଳ ରୂପେ ଖ୍ୟାତି ଲାଭ କରିଥିଲେ ।

ଜୈନ ସମ୍ରାଟ ଖାରବେଳଙ୍କ କାର୍ଯ୍ୟକଳାପ ଅବଗତ ହେବା ନିମନ୍ତେ ହାତୀଗୁମ୍ଫା ଶିଳାଲେଖ ହେଉଛି ଏକମାତ୍ର ନିର୍ଭରଯୋଗ୍ୟ ମୂଳ ଐତିହାସିକ ଉପାଦାନ । ଏହି ଅଭିଲେଖ ଭୁବନେଶ୍ୱରସ୍ଥ କୁମାରୀ ପର୍ବତ ବା ଉଦୟଗିରିରେ ଥିବା ହାତୀଗୁମ୍ଫାର

ଉତ୍‌ଦେଶରେ ଖୋଦିତ । ହାତୀଗୁମ୍ଫା ଅଭିଲେଖ ପ୍ରାକୃତ ଭାଷା (ଓଡ୍ର ପ୍ରାକୃତ ଭାଷା) ଓ ବ୍ରାହ୍ମୀଲିପିରେ ଗଦ୍ୟାକାରରେ ଉତ୍କୀର୍ଣ୍ଣ । ସେଥିରେ ଖାରବେଳଙ୍କ ତ୍ରୟୋଦଶ ବର୍ଷ ରାଜତ୍ୱର (ଖ୍ରୀ.ପୂ. ୪୦-୨୭) ବିଭିନ୍ନ କାର୍ଯ୍ୟକଳାପ ଓ ଘଟଣାବଳୀ ବିସ୍ତୃତ ଭାବରେ ଏବଂ କ୍ରମାନୁସାରେ ଲିପିବଦ୍ଧ ହୋଇଛି । ଏହିଭଳି ଜଣେ ରାଜାଙ୍କ ବର୍ଷାନୁକ୍ରମିକ ବିସ୍ତୃତ ବିବରଣୀ ଅନ୍ୟ କୌଣସି ଅଭିଲେଖରେ ଲିପିବଦ୍ଧ ହୋଇନାହିଁ । ପୁନଶ୍ଚ ତାହା ହେଉଛି ଏକମାତ୍ର ଶିଳାଲିପି ଯେଉଁଥିରେ କି ତତ୍କାଳୀନ ରାଜକୁମାର ମାନଙ୍କର ଶିକ୍ଷା ଓ ସାଧନାର କିଛିତ ସୂଚନା ମିଳେ । ଅତଏବ ଐତିହାସିକ ଦୃଷ୍ଟିକୋଣରୁ ହାତୀଗୁମ୍ଫା ଅଭିଲେଖ ମହତ୍ତ୍ୱପୂର୍ଣ୍ଣ ।

ହାତୀଗୁମ୍ଫା ଅଭିଲେଖର ପ୍ରାରମ୍ଭରେ ଖାରବେଳ ସମସ୍ତ ଅର୍ହତ ଓ ସିଦ୍ଧମାନଙ୍କୁ ପ୍ରଣାମ ଜ୍ଞାପନ କରିଛନ୍ତି । ତା'ପରେ ଖାରବେଳଙ୍କ ବାଲ୍ୟାବସ୍ଥା ଠାରୁ ଆରମ୍ଭ କରି ତାଙ୍କ ରାଜତ୍ୱର ତ୍ରୟୋଦଶ ବର୍ଷ ପର୍ଯ୍ୟନ୍ତ ଘଟିତ ଘଟଣା ସମୂହର ବିବରଣୀ ଲିପିବଦ୍ଧ ହୋଇଛି । ଏହି ଅଭିଲେଖରୁ ଖାରବେଳଙ୍କ ବହୁମୁଖୀ ପ୍ରତିଭା ଓ ବିଚକ୍ଷଣ ବ୍ୟକ୍ତିତ୍ୱ ପ୍ରତିପନ୍ନମାନ ହୁଏ । ଶୈଶବାବସ୍ଥାରୁ ପଞ୍ଚଦଶ ବର୍ଷ ବୟସ ପର୍ଯ୍ୟନ୍ତ ସୁନ୍ଦର ପାଟଳବର୍ଣ୍ଣ ଶରୀର ବିଶିଷ୍ଟ (ଶିର ଉତ୍ତାରଣରର ବଡା) ଖାରବେଳ ସୁଶିକ୍ଷା ଲାଭ କରିବା ସଙ୍ଗେ ସଙ୍ଗେ ବିଭିନ୍ନ କ୍ରୀଡ଼ା ଓ ବ୍ୟାୟାମ କୌଶଳ କ୍ଷେତ୍ରରେ ନିପୁଣ ଥିଲେ । ପଞ୍ଚଦଶ ବର୍ଷ ବୟସରୁ ଚତୁର୍ବିଂଶତି ବର୍ଷ ବୟସ ପର୍ଯ୍ୟନ୍ତ ସେ ଉପଯୁକ୍ତ ରାଜକାର୍ଯ୍ୟ ଓ ଶାସନଗତ ଶିକ୍ଷା ଲାଭ କରିଥିଲେ । ଏହି ସମୟ ମଧ୍ୟରେ ସେ ଯୁବରାଜ ପଦରେ ଅଧିଷ୍ଠିତ ହୋଇ 'ଲେଖ' (ରାଜକାର୍ଯ୍ୟ ଯୋଗାଯୋଗ ନିମନ୍ତେ ଉଦ୍ଦିଷ୍ଟ ଲିଖନ ଶୈଳୀ, 'ରୂପ' (ମୁଦ୍ରାଙ୍କିତ ମୁଦ୍ରା ନିର୍ମାଣ ଓ ବିନିମୟ ପ୍ରଣାଳୀ), 'ଗଣନା' (ଆୟ ବ୍ୟୟ ହିସାବ ତଥା ତତ୍ତ୍ୱାବଧାନ), 'ବ୍ୟବହାର' (ଆଇନ କାନୁନ ଓ ପ୍ରଶାସନିକ ନୀତିନିୟମ), 'ବିଧି' (ଧର୍ମଶାସ୍ତ୍ର), ଗନ୍ଧର୍ବ-ବେଦ (ସଙ୍ଗୀତ ଶାସ୍ତ୍ର), ଧନୁର୍ବେଦ, ଯୁଦ୍ଧବିଦ୍ୟା ପ୍ରଭୃତି ସର୍ବବିଦ୍ୟାରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ଚତୁର୍ବିଂଶତି ବର୍ଷ ବୟସ ପୂର୍ଣ୍ଣହେବା ପରେ ଖାରବେଳ ବିଧିବଦ୍ଧ ଭାବରେ କଳିଙ୍ଗର ରାଜପଦରେ ଅଭିଷିକ୍ତ ହୋଇଥିଲେ । ସେତିକବେଳକୁ ସେ ରାଜ୍ୟ ଶାସନ କ୍ଷେତ୍ରରେ ସମ୍ପୂର୍ଣ୍ଣ ଅଭିଜ୍ଞତା ଓ ଦକ୍ଷତା ଲାଭ କରିସାରିଥିଲେ । ରାଜଧାନୀ କଳିଙ୍ଗ ନଗର (ଶିଶୁପାଳ ଗଡ଼) ରେ ଖାରବେଳଙ୍କର ରାଜ୍ୟାଭିଷେକ ଉତ୍ସବ ବହୁ ଆଡ଼ମ୍ବର ସହକାରେ ଅନୁଷ୍ଠିତ ହୋଇଥିଲା । ଉକ୍ତ ଦିନ ସମଗ୍ର ରାଜ୍ୟ ଆନନ୍ଦ ମୁଖରିତ ହୋଇ ଉଠିଥିଲା । ରାଜ୍ୟର ପ୍ରତ୍ୟେକ ଅଞ୍ଚଳରେ ଉତ୍ସବ ଓ ସମାଜ ଅନୁଷ୍ଠିତ ହୋଇଥିଲା । ପାରିଷଦବୃନ୍ଦ ଓ ରାଜ କର୍ମଚାରୀମାନେ ରାଜ କୃପା ଲାଭ ପୂର୍ବକ ବିବିଧ ଉପାଧିରେ ଭୂଷିତ ହୋଇଥିଲେ । ଅସହାୟ, ଦରିଦ୍ର, ତଥା ନଗର ଓ ଗ୍ରାମବାସୀଙ୍କ ମଧ୍ୟରେ ବିପୁଳ ଅର୍ଥ ବଣ୍ଟନ କରାଯାଇଥିଲା । ବନ୍ଦୀମାନେ କାରାମୁକ୍ତ ହୋଇଥିଲେ । କର ଓ ପଣ୍ୟରୁ ପ୍ରଜାମାନଙ୍କୁ ଅବ୍ୟାହତି ମିଳିଥିଲା । ଏହିପରି ତାଙ୍କର ରାଜ୍ୟାଭିଷେକ ଉତ୍ସବକୁ ସ୍ମରଣୀୟ

କରିବା ନିମନ୍ତେ ଅନୁଗତ ଶ ସକବୃନ୍ଦ, ରାଜ କର୍ମଚାରୀ, ସାଧାରଣ ପ୍ରଜା, ନିଃସ୍ୱ, ଦରିଦ୍ର, ତଥା ଜୈନ, ବୌଦ୍ଧ, ଶ୍ରମଣ ଓ ବ୍ରାହ୍ମଣ ମାନଙ୍କର ତୃପ୍ତି ବିଧାନ କରାହୋଇଥିଲା । ରାଜ୍ୟ ସିଂହାସନ ଆରୋହଣ କରିବା ମାତ୍ରେ ଖାରବେଳ ନୂତନ ଉତ୍ସାହ ଓ ଆନନ୍ଦର ସହିତ ରାଜକାର୍ଯ୍ୟରେ ମନୋନିବେଶ କରିଥିଲେ ।

## ତ୍ରୟୋଦଶ ବର୍ଷ ରାଜତ୍ୱର ବିବରଣୀ

ରାଜତ୍ୱର ପ୍ରଥମ ବର୍ଷରେ ତାଙ୍କର ରାଜଧାନୀ କଳିଙ୍ଗ ନଗରର ଘୂର୍ଣ୍ଣିବାତ୍ୟା ବିଧ୍ୱସ୍ତ ଦୁର୍ଗ ପ୍ରାଚୀର, ତୋରଣ, ଗୋପୁର, ଶୀତଳ ପୁଷ୍କରିଣୀ, ଉଦ୍ୟାନ ଆଦିର ସଂସ୍କାର, ପୁନଃ ନିର୍ମାଣ. ଏବଂ ଉନ୍ନତ ବିଧାନ ତଥା ପ୍ରଜାମାନଙ୍କର ହିତ ସାଧନ ଉଦ୍ଦେଶ୍ୟରେ ଖାରବେଳ ପଞ୍ଚତ୍ରିଂଶ ଲକ୍ଷ ମୁଦ୍ରା ବ୍ୟୟ କରିଥିଲେ ।

ରାଜତ୍ୱର ଦ୍ୱିତୀୟ ବର୍ଷରେ ପଦାତିକ (ନର), ଅଶ୍ୱାରୋହୀ (ହୟ), ଗଜାରୋହୀ (ଗଜ), ରଥାରୋହୀ (ରଥ), —ଏହି ଚତୁରଙ୍ଗ ସୈନ୍ୟଙ୍କ ସହ ଖାରବେଳ ଦକ୍ଷିଣ ପଶ୍ଚିମ ଦିଗରେ ଅନ୍ଧ୍ର ସାତବାହନ ରାଜ୍ୟ ଆକ୍ରମଣ କରିଥିଲେ । ସାତବାହନ ରାଜା ପ୍ରଥମ ସାତକର୍ଣ୍ଣୀ ମହାରାଷ୍ଟ୍ର, କୃଷ୍ଣା, ଗୋଦାବରୀର ଦୋଆବ ଅଞ୍ଚଳ ସମେତ ଦାକ୍ଷିଣାତ୍ୟରେ ସ୍ୱୀୟ ଆଧିପତ୍ୟ ବିସ୍ତାର କରି 'ଦକ୍ଷିଣାପଥପତି' ଉପାଧିରେ ଭୂଷିତ ହୋଇଥିଲେ । ଅସିକ, ଅସକ, ମୂଳକ, ସୁରାଷ୍ଟ୍ର, କୁକୁର, ଅପରାନ୍ତ ଅନୂପ, ବିଦର୍ଭ, ଆକର, ଅବନ୍ତୀ ପ୍ରଭୃତି ରାଜ୍ୟ ତାଙ୍କ ଶାସନାଧୀନ ଥିଲା । 'ପତିଷ୍ଠାନ, ବା 'ପୈଥାନ' ଥିଲା ତାଙ୍କର ରାଜଧାନୀ । ଏହିଭଳି ଜଣେ ପ୍ରବଳ ପ୍ରତାପୀ ରାଜା ସାତକର୍ଣ୍ଣୀଙ୍କୁ ଭ୍ରୂକ୍ଷେପ ନ କରି କଳିଙ୍ଗର ବିଶାଳ ଚତୁରଙ୍ଗ ସେନା କୃଷ୍ଣାନଦୀ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । କଳିଙ୍ଗ ସେନା କୃଷ୍ଣାନଦୀ ତଟରେ ଅବସ୍ଥିତ ଅସିକ ନଗର ଅବରୋଧ କରି ତାହାର ଅଧିବାସୀଙ୍କୁ ଭୀତତ୍ରସ୍ତ କରିପକାଇଥିଲେ । ଖାରବେଳଙ୍କ ସମ୍ମୁଖରେ ସାତକର୍ଣ୍ଣୀଙ୍କୁ ନତ ମସ୍ତକ ହେବାକୁ ପଡ଼ିଥିଲା ।

ରାଜତ୍ୱର ତୃତୀୟ ବର୍ଷରେ ସ୍ୱୀୟ ରାଜ୍ୟବାସୀଙ୍କ ଚିତ୍ତ ବିନୋଦନ ନିମନ୍ତେ ରାଜଧାନୀ କଳିଙ୍ଗ ନଗରରେ ଖାରବେଳ ଗାନ୍ଧର୍ବ ବିଦ୍ୟା ବିଶାରଦମାନଙ୍କ ସହାୟତାରେ ଦର୍ପ, ନୃତ୍ୟ, ଗୀତ, ବାଦ୍ୟ, ମଲ୍ଲଯୁଦ୍ଧ ସମେତ ପାନ ଭୋଜନ ଅର୍ଥଦାନାଦିର ବ୍ୟବସ୍ଥା ପୂର୍ବକ ଉତ୍ସବ ଓ ସମାଜମାନ ଆୟୋଜନ କରାଇଥିଲେ । ତଦ୍ୱାରା କଳିଙ୍ଗନଗର ଆନନ୍ଦ କୌତୁକରେ ମୁଖରିତ ହୋଇଥିଲା ।

ରାଜତ୍ୱର ଚତୁର୍ଥ ବର୍ଷରେ ଖାରବେଳ ପଶ୍ଚିମ ଦିଗକୁ ଯୁଦ୍ଧ ଯାତ୍ରା କରି ବିନ୍ଧ୍ୟ ପର୍ବତାଞ୍ଚଳର ଅଜେୟ ବିଦ୍ୟାଧର ରାଜ୍ୟ ଅଧିକାର କରିଥିଲେ । ତାହାପରେ ସେ ବେରାର ଓ ମହାରାଷ୍ଟ୍ର ଅଞ୍ଚଳର ଯଥାକ୍ରମେ ରାଷ୍ଟ୍ରିକ ଓ ଭୋଜକମାନଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ ।

ଏହି ବିଜୟ ଫଳରେ ଦାକ୍ଷିଣାତ୍ୟର ଅନେକ ଅଞ୍ଚଳ ତାଙ୍କର ପଦାନତ ହେବା ସଙ୍ଗେ ସଙ୍ଗେ ଅନ୍ଧ୍ର ସାତବାହନ ବଂଶର କ୍ଷମତା କିଛି କାଳ ପାଇଁ ଅବନତ ହୋଇଥିଲା ।

ରାଜତ୍ୱର ପଞ୍ଚମ, ଷଷ୍ଠ ଓ ସପ୍ତମ ବର୍ଷରେ ଖାରବେଳ ସାମରିକ ଅଭିଯାନ ସ୍ଥଗିତ ରଖି ରାଜ୍ୟର ଆଭ୍ୟନ୍ତରୀଣ ଉନ୍ନତି ସାଧନରେ ବ୍ୟସ୍ତ ରହିଥିଲେ । ରାଜତ୍ୱର ପଞ୍ଚମ ବର୍ଷରେ ଖାରବେଳ ଅଜସ୍ର ମୁଦ୍ରା ବ୍ୟୟରେ ପୂର୍ବରୁ ଖୋଦିତ ଏକ କୁଲ୍ୟା (କେନାଲ ବା ପୟଃ ପ୍ରଣାଳୀ)ର ଅଭିବୃଦ୍ଧି ସାଧନ କରି ତାହା ତନସୁଲି (ତୋଷଳି) ବାଟେ କଳିଙ୍ଗ-ନଗରକୁ ସମ୍ପ୍ରସାରିତ କରିଥିଲେ । ଏହି କୁଲ୍ୟା ଖାରବେଳଙ୍କ ରାଜତ୍ୱର ୩୦୦ ବର୍ଷ ପୂର୍ବେ ମଗଧର ନନ୍ଦ ସମ୍ରାଟ ମହାପଦ୍ମ ନନ୍ଦଙ୍କ ଦ୍ୱାରା ପ୍ରଥମେ ଖୋଦିତ ହୋଇଥିଲା । ସମ୍ଭବତଃ ଏହି ପୟଃ ପ୍ରଣାଳୀଟି ଦୟାନଦୀ ଓ କଳିଙ୍ଗ ନଗର ମଧ୍ୟରେ ପ୍ରବାହିତ ହେଉଥିଲା । ଏହାଦ୍ୱାରା ଜଳସେଚନ, ବାଣିଜ୍ୟ, ଗମନାଗମନ ଏବଂ ପାନୀୟ ଜଳଯୋଗାଣର ସୁବିଧା ହୋଇଥିଲା ।

ରାଜତ୍ୱର ଷଷ୍ଠ ଓ ସପ୍ତମ ବର୍ଷରେ ଖାରବେଳ ମଗଧ ସମେତ ଉତ୍ତର ଭାରତର ଅନ୍ୟାନ୍ୟ ରାଜ୍ୟ ଜୟ କରିବା ନିମନ୍ତେ ପ୍ରସ୍ତୁତି ଆରମ୍ଭ କରିଥିଲେ । ବିଶେଷତଃ କଳିଙ୍ଗର ପାରମ୍ପରିକ ଶତ୍ରୁ ମଗଧ ବିରୁଦ୍ଧରେ ଯୁଦ୍ଧ ଅଭିଯାନ କରିବା ନିମନ୍ତେ ଖାରବେଳ କଳିଙ୍ଗ ସେନାଙ୍କର ଶୌର୍ଯ୍ୟ ଓ ପରାକ୍ରମ ବୃଦ୍ଧି କରିବାକୁ ପ୍ରୟତ୍ନ କଲେ । ରାଜତ୍ୱର ଷଷ୍ଠ ବର୍ଷରେ ସମ୍ଭବତଃ ରାଜସୂୟ ଯଜ୍ଞ ଅନୁଷ୍ଠିତ ହୋଇଥିଲା । ଏତଦ୍ ବ୍ୟତୀତ ଖାରବେଳ ରାଜ୍ୟବାସୀଙ୍କୁ ନିଜ ଐଶ୍ୱର୍ଯ୍ୟ ପ୍ରଦର୍ଶନ କରାଇ ପୌର ଓ ଜାନପଦବାସୀ ପ୍ରଜାମାନଙ୍କୁ ନାନାବିଧ କର ଓ ପଣ୍ୟ ଭାରରୁ ଅବ୍ୟାହତି ଦେଇଥିଲେ । ରାଜତ୍ୱର ସପ୍ତମ ବର୍ଷରେ ଖାରବେଳ ବିପୁଳ ସୈନ୍ୟସମାବେଶ ଓ ରଣ ସଜ୍ଜା ଆରମ୍ଭ କରିଥିଲେ । ମଗଧ ଆକ୍ରମଣ ଉଦ୍ଦେଶ୍ୟରେ ସେ ବର୍ତ୍ତମାନ ଠାରୁ ହିଁ କଳିଙ୍ଗ ଚତୁରଙ୍ଗ ସେନାର ସମରାଭ୍ୟାସ କରାଇଥିଲେ । ସେ ଅଶ୍ୱ, ଛତ୍ର, ଧ୍ୱଜ, ରଥୀ, ତୁରଙ୍ଗ, ହସ୍ତୀ, ଘଣ୍ଟ ପ୍ରଭୃତିର ସଂଖ୍ୟା ବୃଦ୍ଧି କରିଥିଲେ । ସେହିବର୍ଷ ତାଙ୍କର ଏକ ପୁତ୍ର ସନ୍ତାନ ଜନ୍ମ ହୋଇଥିଲା । ଏହି ପୁତ୍ର ତାଙ୍କର ପଟ୍ଟମହିଷୀ ବଜିରଘର (ସ୍ୱର୍ଣ୍ଣ ପ୍ରାସାଦ) ରାଣୀଙ୍କ ଔରସରୁ ଜାତ ହୋଇଥିଲା । ବଜିର ଘର ହେଉଛି କାମସୂତ୍ରରେ (୧୪) ବର୍ଣ୍ଣିତ କଳିଙ୍ଗ ସମୀପବର୍ତ୍ତୀ ବଜ୍ରବନ୍ତ ଦେଶ ।

ରାଜତ୍ୱର ଅଷ୍ଟମ ବର୍ଷରେ ଖାରବେଳ ଉତ୍ତରାଭିମୁଖେ ନିଜର ବିଶାଳ ଚତୁରଙ୍ଗ ସୈନ୍ୟବାହିନୀ ସହ ମଗଧ ଅଭିମୁଖେ ଅଭିଯାନ କରିଥିଲେ । ସେ ମଗଧର ଦକ୍ଷିଣରେ ଖଲ୍ଲତିକ ପର୍ବତ ନିକଟରେ ଥିବା ସୁଦୃଢ଼ ଗୋରଥ ଗିରି ନାମକ ଏକ ଅଭେଦ୍ୟ ଗିରିଦୁର୍ଗ ଧ୍ୱଂସ କରିଥିଲେ । ଗୋରଥଗିରି ଅଧୁନା ବିହାର ପ୍ରଦେଶ ଅନ୍ତର୍ଗତ ଗୟାଜିଲ୍ଲାରେ ପାଟଳିପୁତ୍ର ଓ ଗୟା ମଧ୍ୟରେ ଅବସ୍ଥିତ ବରାବର ପର୍ବତ ସହିତ ଚିହ୍ନିତ ହୋଇଛି । ତଦନନ୍ତର ଖାରବେଳ ମଗଧ ସାମ୍ରାଜ୍ୟର ପ୍ରାଚୀନ ରାଜଧାନୀ ରାଜଗୃହ (ବିହାର ପ୍ରଦେଶର ପାଟନା ଜିଲ୍ଲା ଅନ୍ତର୍ଗତ ଆଧୁନିକ ରାଜଗିରି) ଅବରୋଧ ପୂର୍ବକ ତାହାର ଅଧିବାସୀମାନଙ୍କୁ ଭୟ

ବନ୍ଦୀଭୂତ କରିଦେଇଥିଲେ । ରାଜଗୃହର ପ୍ରାଚୀନ ନାମ ଥିଲା ଗିରିବ୍ରଜ । କଳିଙ୍ଗ ସେନାଙ୍କ ଦ୍ୱାରା ଦୁର୍ଭେଦ୍ୟ ରାଜଗୃହ ଅବରୋଧ ନିର୍ଣ୍ଣିତ ଭାବେ ଅଦୂରରେ ଥିବା ମଗଧର ରାଜଧାନୀ ପାଟଳିପୁତ୍ରକୁ ଆତଙ୍କିତ କରିଥିବ । ଏହି ସମୟରେ ଜଣେ ଯବନ (ଗ୍ରୀକ) ରାଜଦମିତ ଉତ୍ତର ପଶ୍ଚିମରେ ଯମୁନା ନଦୀ କୂଳରେ ଅବସ୍ଥିତ ମଥୁରା ଅଧିକାର କରି ମଗଧ ଆଡ଼କୁ ଦ୍ରୁତ ଅଗ୍ରସର ହେଉଥିଲେ । କିନ୍ତୁ ଖାରବେଳଙ୍କ ବଳ ବିକ୍ରମ ଓ ମଗଧରେ ବିଜୟ ଅଭିଯାନର ସମ୍ବାଦ ପାଇ ଯବନ ରାଜ ଦମିତ ଭୟଗ୍ରସ୍ତ ହୋଇପଡ଼ିଲେ ଏବଂ ମଥୁରା ଅଭିମୁଖେ ପ୍ରତ୍ୟାଗମନ କରିବାକୁ ବାଧ୍ୟ ହୋଇଥିଲେ । ଖାରବେଳ ତତ୍‌କ୍ଷଣାତ୍ ଯବନ-ରାଜଙ୍କ ଅନୁଧାବନ କରି ତାଙ୍କୁ ପବିତ୍ର ଜୈନ କ୍ଷେତ୍ର ମଥୁରାରୁ ବହିଷ୍କାର କରିଥିଲେ । ଫଳତଃ ଖାରବେଳଙ୍କ ଖ୍ୟାତି ଏବଂ କଳିଙ୍ଗସେନାଙ୍କ ବୀରତ୍ୱ ଓ ରଣ ନୈପୁଣ୍ୟ ତଥା ସାମରିକ ଗୌରବ ଚତୁର୍ଦ୍ଦିଗରେ ବ୍ୟାପ୍ତ ହେଲା । ଖାରବେଳ ମଥୁରାରୁ କଳ୍ପବୃକ୍ଷର (ଜୈନଧର୍ମର ପବିତ୍ର ବୃକ୍ଷ) ଏକ ଶାଖା ନେଇ ହୟ, ଗଜ, ନର, ରଥପୂର୍ଣ୍ଣ ଚତୁରଙ୍ଗ ସେନା ସହ ସଗୌରବେ କଳିଙ୍ଗ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଉତ୍ତର ଭାରତରେ ସ୍ୱୀୟ ବିଜୟ ଅଭିଯାନ ସ୍ମୃତିକୁ ଚିରସ୍ମରଣୀୟ କରିବା ନିମନ୍ତେ ଖାରବେଳ ରାଜତ୍ୱର ନବମ ବର୍ଷରେ 'ମହାବିଜୟ ପ୍ରାସାଦ' ନାମକ ବୈଦୂର୍ଯ୍ୟ ଖଚିତ ଏକ ବୃହତ ରାଜ ପ୍ରାସାଦ ଅଷ୍ଟତ୍ରିଂଶତ ଲକ୍ଷ ମୁଦ୍ରା ବ୍ୟୟରେ କଳିଙ୍ଗନଗର ଠାରେ ନିର୍ମାଣ କରାଇଥିଲେ । (୧୫) ।

ରାଜତ୍ୱର ଦଶମ ବର୍ଷରେ ଖାରବେଳ ଦ୍ୱିତୀୟ ବାର ଉତ୍ତର ଭାରତ ଅଭିମୁଖେ ସୈନ୍ୟ ଚାଳନା କରି ଭାରତ ବର୍ଷ (ଗାଙ୍ଗେୟ ଉପତ୍ୟକା)ର କେତେକ ରାଜ୍ୟ ଜୟ କରିଥିବା ଅନୁମିତ ହୁଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଭାରତର ବିଭିନ୍ନ ସ୍ଥାନରେ ଆବିଷ୍କୃତ ଶିଳାଲେଖ ଗୁଡ଼ିକ ମଧ୍ୟରେ ସର୍ବପ୍ରଥମେ ହାତୀଗୁମ୍ଫା ଶିଳାଲେଖରେ ଭାରତ ବର୍ଷର ଉଲ୍ଲେଖ ରହିଛି ।

ରାଜତ୍ୱର ଏକାଦଶ ବର୍ଷରେ ଖାରବେଳ ସୁଦୂର ଦାକ୍ଷିଣାତ୍ୟରେ ଯୁଦ୍ଧ ଅଭିଯାନ ଚଳାଇଥିଲେ । ସେଠାରେ ଚୋଳ, ପାଣ୍ଡ୍ୟ, ସତ୍ୟପୁତ୍ର, କେରଳପୁତ୍ର, ତାମ୍ରପର୍ଣ୍ଣି (ସିଂହଳ ଦ୍ୱୀପ ବା ଶ୍ରୀଲଙ୍କା) ପ୍ରଭୃତି ରାଜ୍ୟ ସମୂହକୁ ନେଇ ଗଠିତ ଦ୍ରାମିଳ (ତାମିଲ୍) ରାଷ୍ଟ୍ର ସଂଘକୁ ଯୁଦ୍ଧରେ ପରାସ୍ତ କରି ଖାରବେଳ ଜୟଯୁକ୍ତ ହୋଇଥିଲେ । ଏହି ମିଳିତ ରାଷ୍ଟ୍ରସଂଘ ଖାରବେଳଙ୍କର ପ୍ରାୟ ୧୩୦୦ ବର୍ଷ 'ତେରସ ବସ ସତକତମ୍' ପୂର୍ବେ ପାଣ୍ଡ୍ୟ ରାଜ୍ୟର ନେତୃତ୍ୱରେ ସଙ୍ଗଠିତ ହୋଇଥିଲା । ଖାରବେଳଙ୍କ ପୂର୍ବରୁ ପ୍ରବଳ ପରାକ୍ରମୀ ମହାପଦ୍ମନନ୍ଦ କିମ୍ବା ଚନ୍ଦ୍ରଗୁପ୍ତମୌର୍ଯ୍ୟ ଏହି ତାମିଲ୍ ରାଷ୍ଟ୍ରସଂଘ ସହ ଯୁଦ୍ଧ କରିବା ନିମନ୍ତେ ସାହସ କରିପାରି-ନଥିଲେ । କିନ୍ତୁ ଖାରବେଳ ଏହି ରାଷ୍ଟ୍ର ସଂଘକୁ ପରାସ୍ତ କରିଥିଲେ । ପାଣ୍ଡ୍ୟରାଜା ଥିଲେ ମିଳିତ ରାଷ୍ଟ୍ରସଂଘର ନେତା । ସେ ଖାରବେଳଙ୍କ ବଶ୍ୟତା ସ୍ୱୀକାର ପୂର୍ବକ ତାଙ୍କୁ ବହୁ

ଅଶ୍ୱ, ହସ୍ତୀ, ମଣି, ମୁକ୍ତାଦି ରତ୍ନ ଓ ନାନାବିଧ ଆଭରଣ ଉପହାର ଦେଇଥିଲେ । ଏହି ସମୟରେ ଖାରବେଳ ବହୁ ପ୍ରାଚୀନ କାଳରୁ ପ୍ରତିଷ୍ଠିତ ଏବଂ ଜୈନଧର୍ମର ଏକ ତୀର୍ଥ-କ୍ଷେତ୍ର ରୂପେ ଖ୍ୟାତ ପିଥୁଣ୍ଡ ନାମକ ନଗର ଅଧିକାର କରିଥିଲେ । ସେଠାରେ ସେ ଏକ ବିଶାଳ କୃଷିକ୍ଷେତ୍ର ରଚନା କରି ତାହା ଗର୍ଦ୍ଦଭ ଯୋକ୍ତ ହଳ ଲଙ୍ଗଳ ମାଧ୍ୟମରେ କର୍ଷଣ କରାଇଥିଲେ । ବୃଷଭ ଆଦି ତୀର୍ଥଙ୍କରଙ୍କର ଲାଞ୍ଛନ ହୋଇଥିବା ଯୋଗୁଁ ଖାରବେଳେ ବଳଦ ପରିବର୍ତ୍ତେ ହଳ ଲଙ୍ଗଳରେ ଗଧ ଯୋଚିଥିବା ଅନୁମିତ ହୁଏ । ତଦ୍ୱାରା ଆଦି ତୀର୍ଥଙ୍କର ଋଷଭନାଥଙ୍କ ପ୍ରତି ଖାରବେଳଙ୍କର ଶ୍ରଦ୍ଧା ଓ ଭକ୍ତିର ସୂଚନା ମିଳେ । (୧୬) ।

ରାଜତ୍ୱର ଦ୍ୱାଦଶ ବର୍ଷରେ ଖାରବେଳ ବିପୁଳ ସେନା ସହ ପୁଣିଥରେ ଉତ୍ତର ଭାରତ ଅଭିମୁଖେ ଯୁଦ୍ଧ ଯାତ୍ରା କରିଥିଲେ । ଏହି ସମୟରେ ଉତ୍ତରାପଥର (ଉତ୍ତର ପଶ୍ଚିମ ଭାରତର) ଅନେକ ରାଜା ଭୟରେ ଖାରବେଳଙ୍କ ବଶ୍ୟତା ସ୍ୱୀକାର କରିଥିଲେ । ତଦ୍ୱାରା ଖାରବେଳଙ୍କ କ୍ଷମତା ସିନ୍ଧୁ ନଦୀ ପର୍ଯ୍ୟନ୍ତ ବିସ୍ତାର ଲାଭ କଲା । ଏହା ଖାରବେଳ ଓ ବୀର କଳିଙ୍ଗସେନା ପକ୍ଷରେ ପରମ ଗର୍ବ ଓ ଗୌରବର ବିଷୟ ଥିଲା ।

ଉତ୍ତରାପଥ ବିଜୟ ପରେ ଖାରବେଳ ମଗଧ ଆକ୍ରମଣ କରି ତାହାର ରାଜଧାନୀ ପାଟଳିପୁତ୍ର ଅବରୋଧ କଲେ । ତାଙ୍କର ରଣସଜ୍ଜା, ସୈନ୍ୟ ସମାବେଶ ଏବଂ ଅସଂଖ୍ୟ ହସ୍ତୀ ଓ ଅଶ୍ୱ ଗଙ୍ଗା ନଦୀରେ ଜଳପାନ କରୁଥିବାର ଦୃଶ୍ୟ ମଗଧର ସୈନ୍ୟ ବାହିନୀ ତଥା ପ୍ରଜା-ମାନଙ୍କ ମନରେ ଭୟ ସଞ୍ଚାର କରିଥିଲା । ମଗଧ ସେନା ଖାରବେଳଙ୍କ ଦୁର୍ଦ୍ଧର୍ଷ ସୈନ୍ୟ ବାହିନୀର ସମ୍ମୁଖୀନ ହେବାକୁ ପଶ୍ଚାଦ୍‌ପଦ ହେଲା । ଫଳରେ ମଗଧରାଜ ବହସାତ ମିତ୍ର (ବୃହସ୍ପତି ମିତ୍ର) ଖାରବେଳଙ୍କ ନିକଟରେ ଆତ୍ମ ସମର୍ପଣ କରିବାକୁ ବାଧ୍ୟ ହେଲେ । ସେ ଖାରବେଳଙ୍କ ଅଧୀନତା ସ୍ୱୀକାର ସୂଚକ ତାଙ୍କର ପାଦ ବନ୍ଦନା କରିଥିଲେ । —'ମଗଧଂ ଚ ରାଜନଂ ବହସତି ମିତଂ ପାଦେ ବନ୍ଦାପୟତି' (୬) । ଖାରବେଳ ମଗଧର ରାଜାଙ୍କୁ ପଦାବନତ କରି ଅଶୋକଙ୍କର କଳିଙ୍ଗ ବିଜୟର ପ୍ରତିଶୋଧ ନେଇଥିଲେ । ଖାରବେଳଙ୍କ ମଗଧ ବିଜୟ ଭାରତ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଖାରବେଳଙ୍କ ପରି ଅନ୍ୟ କୌଣସି ରାଜା, ପ୍ରାଚୀନ ଭାରତୀୟ ସାମ୍ରାଜ୍ୟବାଦର ପ୍ରାଣକେନ୍ଦ୍ର ପ୍ରବଳ ଶକ୍ତିଶାଳୀ ମଗଧ ରାଜାଙ୍କୁ ଏପରି ଭାବରେ ପଦାନତ କରିନଥିଲେ । ତେଣୁ ଖାରବେଳ ସମଗ୍ର ଭାରତରେ ଅପ୍ରତିଦ୍ୱନ୍ଦୀ, ଅପ୍ରତିହତ ଏବଂ ମହାବିଜୟୀ ସମ୍ରାଟ ରୂପେ ନିଜକୁ ପ୍ରତିପାଦିତ କଲେ । ଖାରବେଳଙ୍କ ମଗଧ ବିଜୟ କଳିଙ୍ଗ ଇତିହାସର ଏକ ଅଭୂତପୂର୍ବ ଘଟଣା ।

ମଗଧ ବିଜୟ ପରେ ଖାରବେଳ ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀରେ ନନ୍ଦରାଜ (ମହାପଦ୍ମନନ୍ଦ)ଙ୍କ ଦ୍ୱାରା କଳିଙ୍ଗରୁ ମଗଧକୁ ନୀତ କଳିଙ୍ଗ ଜିନ ମୂର୍ତ୍ତି (୮) ସସମ୍ମାନେ ସ୍ୱଦେଶକୁ ଫେରାଇ ଆଣିଥିଲେ—"ନନ୍ଦରାଜ ନୀତଂ କାଳିଙ୍ଗ ଜିନଂ ସନିବେଶଂ ....."

(୧୯)। କଳିଙ୍ଗ ଜନ ସହ ଖାରବେଳ ଅଙ୍ଗ (ଭାଗଲପୁର ଓ ମୋଂଘେର ଜିଲ୍ଲା) ଏବଂ ମଗଧ (ପାଟଣା ଓ ଗୟା ଜିଲ୍ଲା)ରୁ ପ୍ରଚୁର ଧନରତ୍ନ କଳିଙ୍ଗକୁ ଆଣିଥିଲେ ।

ରାଜତ୍ୱର ତ୍ରୟୋଦଶ ବର୍ଷରେ ଖାରବେଳ ନିଜକୁ ଧର୍ମକାର୍ଯ୍ୟରେ ନିୟୋଜିତ କରାଇଥିଲେ । ସେ କୁମାରୀ ପର୍ବତ (ଉଦୟଗିରି) ଗାତ୍ରରେ ଜୈନ ଭିକ୍ଷୁମାନଙ୍କ ବିଶ୍ରାମ ନିମନ୍ତେ ୧୧୭ଟି ଗୁମ୍ଫା ଖୋଦନ କରାଇଥିଲେ ଏବଂ ସେମାନଙ୍କୁ ରେଶମ ଓ ଶୁଭ୍ର ବସ୍ତ୍ର ଦାନ କରିଥିଲେ । ଏତଦ୍‌ବ୍ୟତୀତ ସେ ଏକ ଜୈନ ମହାସଭା ଆହ୍ୱାନ କରିଥିଲେ । ଭାରତ ବର୍ଷର ବିଭିନ୍ନ ଅଞ୍ଚଳରୁ ଜୈନ ଅର୍ହତ ଓ ଶ୍ରମଣ, ବ୍ରାହ୍ମଣ, ତାପସ ଓ ଋଷି ତଥା ବୌଦ୍ଧ ଭିକ୍ଷୁ ପ୍ରଭୃତି ବିଭିନ୍ନ ଧର୍ମବାଦୀ ଆଗନ୍ତୁକଙ୍କ ନିମନ୍ତେ ଉଦୟଗିରି ପାର୍ଶ୍ୱରେ ଏକ ସୁରମ୍ୟ ପ୍ରାସାଦ ତୋଳାଇଥିଲେ ।

**ଖାରବେଳ ଓ ଜୈନ ଧର୍ମ :**

ଜୈନ ଧର୍ମର ଉପାସକ ଓ ଶ୍ରେଷ୍ଠ ପୃଷ୍ଠପୋଷକ ରୂପେ ଖାରବେଳ ଇତିହାସ ପ୍ରସିଦ୍ଧ । ତାଙ୍କ ରାଜତ୍ୱ କାଳରେ ଜୈନଧର୍ମ ଉନ୍ନତିର ଚରମ ସୋପାନରେ ଉପନୀତ ହୋଇ କଳିଙ୍ଗର ରାଷ୍ଟ୍ରଧର୍ମ ରୂପେ ପରିଗଣିତ ହୋଇଥିଲା । ଜୈନ ଧର୍ମର ପ୍ରଚାର, ପ୍ରସାର ଓ ଶ୍ରୀ ବୃଦ୍ଧି ସାଧନ ନିମନ୍ତେ ଖାରବେଳ ନିଜର ସମସ୍ତ ସମୟ, ଶକ୍ତି ଓ ସମ୍ବଳ ବିନିଯୋଗ କରିଥିଲେ ମଧ୍ୟ ସେ ଅନ୍ୟାନ୍ୟ ଧର୍ମ ପ୍ରତି ଅନୁଦାର ନଥିଲେ । ହାତୀଗୁମ୍ଫା ଶିଳାଲିପିରୁ ତାଙ୍କ ଧର୍ମମତର ଏକ ବିସ୍ତୃତ ବିବରଣୀ ସ୍ପଷ୍ଟ ଭାବରେ ପ୍ରତୀୟମାନ ହେଉଅଛି । ସେ ଅଶୋକଙ୍କ ଭଳି ନୂତନ ଧର୍ମ ଦୀକ୍ଷା ଗ୍ରହଣ କରିନଥିଲେ । କଳିଙ୍ଗ ଯୁଦ୍ଧ ପରେ ଅଶୋକ ବୌଦ୍ଧ ଧର୍ମ ଗ୍ରହଣ ପୂର୍ବକ ତାହାର ପୃଷ୍ଠପୋଷକତା କରିଥିଲେ । କିନ୍ତୁ ଖାରବେଳ ଆଜନ୍ମ ଜୈନ ଧର୍ମାବଲମ୍ବୀ ଥିଲେ । ସେ ସର୍ବସାଧାରଣଙ୍କ ଗହଣରେ ନିଜର ମହିଷୀ, କୁମାର, ପରିବାରର ଅନ୍ୟାନ୍ୟ ସଭ୍ୟ ଏବଂ ରାଜକର୍ମଚାରୀଙ୍କ ସହ ଜୈନ ଧର୍ମର ଉପାସନା କରିଥିଲେ । ହାତୀଗୁମ୍ଫା ଅଭିଲେଖର ପ୍ରାରମ୍ଭରେ ସେ ଅର୍ହତ ଓ ସମସ୍ତ ସିଦ୍ଧ-ମାନଙ୍କୁ ନମସ୍କାର ଜଣାଇଛନ୍ତି । —'ନମୋ ଅରହଂତାନଂ, ନମୋ ସବସିଧାନଂ' । ତେଣୁ ସେ ଜୈନ ଥିବାର ପ୍ରମାଣିତ ହୁଏ । ଏହି ଉକ୍ତିରୁ ସିଦ୍ଧ ହୁଏ ଯେ ଖାରବେଳ ଜୈନ ସମ୍ପ୍ରଦାୟରେ ପ୍ରଚଳିତ ପଞ୍ଚ ନମସ୍କାର ପରମ୍ପରା ଅବଲମ୍ବନ କରିଥିଲେ । ଏହି ପଞ୍ଚ ନମସ୍କାର ହେଲା—

ନମୋ ଅରିହଂତାନଂ
ନମୋ ସିଦ୍ଧାନଂ
ନମୋ ଆୟରିୟାନଂ
ନମୋ ଉବଝାୟାନଂ
ନମୋ ଲୋଏ ସବ୍ବ ସାହୁ ନଂ" (୨୦) ।

ଅର୍ଥାତ୍ କେବଳ ଜ୍ଞାନ ପ୍ରାପ୍ତ ଅର୍ହତ, ମୋକ୍ଷ ପ୍ରାପ୍ତ ସିଦ୍ଧପୁରୁଷ, ଉତ୍ତମ ଚରିତ୍ର-ମାର୍ଗ ପ୍ରଦର୍ଶକ ଆଚାର୍ଯ୍ୟ, ଜ୍ଞାନଦାତା ଉପାଧ୍ୟାୟ ଏବଂ ସମ୍ୟକ୍ ଦର୍ଶନ, ଜ୍ଞାନ ଓ ଚରିତ୍ର ପ୍ରାପ୍ତ ସାଧୁ ବା ମୁନି ଏହି ପଞ୍ଚ ପରମେଷ୍ଠି ପରମ ଗୁରୁ (ସହଜ ଆତ୍ମା ସ୍ୱରୂପ ପରମଗୁରୁ)ଙ୍କୁ ଆରାଧନା କରିବାର ବିଧାନ ଜୈନ ଧର୍ମରେ ରହିଛି । ସେମାନଙ୍କ ମଧ୍ୟରୁ ସକଳ ଅର୍ହତ ଓ (ସିଦ୍ଧ) ସାଧୁପୁରୁଷଙ୍କୁ ଖାରବେଳ ହାତୀଗୁମ୍ଫା ଅଭିଲେଖର ପ୍ରାରମ୍ଭରେ ନିଜର ଭକ୍ତିପୂର୍ଣ୍ଣ ପ୍ରଣତି ନିବେଦନ କରିଛନ୍ତି । (୨୧) ।

ହାତୀଗୁମ୍ଫାର ଉଭୟ ବାମ ଓ ଦକ୍ଷିଣ ପାର୍ଶ୍ୱରେ ଜୈନଧର୍ମର ଦୁଇଟି ଲେଖାଏ ପବିତ୍ର ସଙ୍କେତ ଅଙ୍କିତ ହୋଇଅଛି । ଏହି ପବିତ୍ର ଚିହ୍ନ ଗୁଡ଼ିକ ହେଲ—'ବର୍ଦ୍ଧମଙ୍ଗଳ', 'ନନ୍ଦୀପଦ', 'ସ୍ୱସ୍ତିକ' ଓ 'ରୁଖ ଚେତିୟ' ବା 'ବୃକ୍ଷ ଚୈତ୍ୟ' ।



ବର୍ଦ୍ଧ ମଙ୍ଗଳ
ସଙ୍କେତ



ନନ୍ଦୀପଦ
ସଙ୍କେତ



ସ୍ୱସ୍ତିକ
ସଙ୍କେତ

ଜୈନ ଧର୍ମର ଉପାସକ ଥିବା ହେତୁ ଖାରବେଳ ଉପରୋକ୍ତ ସଙ୍କେତ (ଲାଞ୍ଛନ) ଗୁଡ଼ିକୁ ହାତୀଗୁମ୍ଫା ଅଭିଲେଖରେ ଖୋଦନ କରାଇଥିଲେ ।

ହାତୀଗୁମ୍ଫା ଶିଳାଲେଖରୁ ଖାରବେଳ ଜୈନଧର୍ମାନୁଗାମୀ ଥିବାରୁ ଆହୁରି ଅନେକ ପ୍ରମାଣ ମିଳେ । ରାଜତ୍ୱର ଅଷ୍ଟମ ବର୍ଷରେ ସେ ଜୈନ ତୀର୍ଥ କ୍ଷେତ୍ର ମଥୁରାକୁ ଯବନ (ଗ୍ରୀକ୍) ରାଜଙ୍କ ଉପଦ୍ରବରୁ ରକ୍ଷା କରିଥିଲେ । ବୌଦ୍ଧମାନଙ୍କ ପବିତ୍ର ବୃକ୍ଷ ବୋଧି ଦ୍ରୁମ



ବୃକ୍ଷ ଚୈତ୍ୟ ସଙ୍କେତ

ପରି ଜୈନମାନଙ୍କ ଦ୍ୱାରା ପବିତ୍ର ବିବେଚିତ କଳ୍ପବଟ (କଳ୍ପବୃକ୍ଷ)ର ଏକ ପଲ୍ଲବମୟ ଶାଖା ସେ ମଥୁରାରୁ ସାମରିକ ଶୋଭାଯାତ୍ରାରେ କଳିଙ୍ଗ ନଗରୀକୁ ଆଣି ସେଠାରେ ରୋପଣ କରିଥିଲେ । କଳ୍ପବୃକ୍ଷ ହେଉଛି ଆଦି ତୀର୍ଥଙ୍କର ଋଷଭନାଥଙ୍କ ପବିତ୍ର ବୃକ୍ଷ । ରାଜତ୍ୱର

ଏକାଦଶ ବର୍ଷରେ ସେ କଳିଙ୍ଗର ପ୍ରାଚୀନ ଜୈନ ପୀଠ ପିଥୁଣ୍ଡ ନଗରୀର ପୁନରୁଦ୍ଧାର କରି-ଥିଲେ । ଏହି ପିଥୁଣ୍ଡ ନଗରୀ ଜୈନ ଉତ୍ତରାଧ୍ୟୟନ ସୂତ୍ର (୧୨)ରେ ବର୍ଣ୍ଣିତ ସମୁଦ୍ର ତୀରବର୍ତ୍ତୀ ପିହୁଣ୍ଡ ନଗର ସହିତ ଚିହ୍ନିତ ହୋଇଛି । (୧୩)। ତାହା ନାଗାବଳୀ ଓ ମହାନଦୀର ମଧ୍ୟବର୍ତ୍ତୀ ତ୍ରିକୋଣଭୂମି ଅଞ୍ଚଳରେ ଅବସ୍ଥିତ ଥିଲା । (୧୪) । ପିଥୁଣ୍ଡ କଳିଙ୍ଗ ଜିନଙ୍କ ଆଦ୍ୟପୀଠ ଥିଲା । ଋଷଭନାଥଙ୍କ ଲାଞ୍ଛନ ବୃଷଭକୁ ସମ୍ମାନ ଦେଇ ଖାରବେଳ ବଳଦ ପରିବର୍ତ୍ତେ ଗଧଯୋଗ୍ଯ ଲଙ୍ଗଳ ସାହାଯ୍ୟରେ ପିଥୁଣ୍ଡରେ ଭୂମି କର୍ଷଣ କରାଇଥିଲେ । (୧୫) । ରାଜତ୍ୱର ଦ୍ୱାଦଶ ବର୍ଷରେ ମଗଧ ବିଜୟର ସ୍ମାରକୀ ସ୍ୱରୂପ ସେ ନେଲେ ମଗଧରୁ କଳିଙ୍ଗ ଜିନ ପ୍ରତିମୂର୍ତ୍ତି(କଳିଙ୍ଗ-ଜିନାସନ) କଳିଙ୍ଗ ନଗରକୁ ବିଜୟ ଶୋଭାଯାତ୍ରାରେ ଫେରାଇ ଆଣିଥିଲେ । ଏହି କଳିଙ୍ଗ ଜିନ ଖାରବେଳଙ୍କ ରାଜତ୍ୱର ୩୦୦ ବର୍ଷ ପୂର୍ବ ମଗଧର ନନ୍ଦବଂଶୀ ନୃପ ମହାପଦ୍ମନନ୍ଦଙ୍କ ଦ୍ୱାରା ପିଥୁଣ୍ଡରୁ ମଗଧକୁ ଅପହୃତ ହୋଇଥିଲା । ଖାରବେଳ ଏହି କଳିଙ୍ଗ ଜିନ କଳିଙ୍ଗକୁ ଫେରାଇ ଆଣିବା ଦ୍ୱାରା ଜୈନ ଧର୍ମ ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତିର ପ୍ରମାଣ ଦେଇଛନ୍ତି । ତତ୍କାଳୀନ କଳିଙ୍ଗର ଧାର୍ମିକ ଓ ସାଂସ୍କୃତିକ ଜୀବନର ପ୍ରାଣକେନ୍ଦ୍ର ଥିଲା । ଏହି କଳିଙ୍ଗ ଜିନ ।

କଳିଙ୍ଗ ଜିନଙ୍କ ସମ୍ପର୍କରେ ଐତିହାସିକମାନେ ଭିନ୍ନ ଭିନ୍ନ ମତ ପୋଷଣ କରନ୍ତି । ପଣ୍ଡିତ କାଶୀପ୍ରସାଦ ଜୟସ୍ୱାଲ (୧୬) ଏବଂ ରାଖାଲ ଦାସ ବାନର୍ଜି (୧୭) କଳିଙ୍ଗ ଜିନଙ୍କୁ ଭଦଲପୁର ଅଥବା ଭଦ୍ରପୁର (ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ ଆଧୁନିକ ଭଦ୍ରାଚଳମ୍) ଠାରେ ଜନ୍ମିଥିବା ଦଶମ ତୀର୍ଥଙ୍କର ଶୀତଳନାଥଙ୍କ ସହିତ ଚିହ୍ନିତ କରିଅଛନ୍ତି । ଆଉ କେତେକଙ୍କ ମତରେ ତାହା ଦ୍ୱିତୀୟ ଜୈନ ତୀର୍ଥଙ୍କର ଅଜିତନାଥଙ୍କ ପ୍ରତିମୂର୍ତ୍ତି । (୧୮) । ଡ଼ : ନବୀନ କୁମାର ସାହୁ (୧୯) କଳିଙ୍ଗ ଜିନଙ୍କୁ କଳିଙ୍ଗର ତତ୍କାଳୀନ ରାଜଧାନୀ ପିଥୁଣ୍ଡ ନଗରସ୍ଥ ଋଷଭଦେବଙ୍କ ପ୍ରତିମୂର୍ତ୍ତି ବୋଲି ମତ ବ୍ୟକ୍ତ କରିଛନ୍ତି । କିନ୍ତୁ ଆମ୍ଭ ମତରେ ସମ୍ଭବତଃ ମହାବୀରଙ୍କ ପ୍ରତିମାହିଁ କଳିଙ୍ଗ ଜିନ ରୂପେ ପୂଜିତ ହେଉଥିଲା । କାରଣ ୨୪ ଜଣ ତୀର୍ଥଙ୍କରଙ୍କ ମଧ୍ୟରେ ମହାବୀରଙ୍କର ହିଁ କଳିଙ୍ଗ ସହିତ ନିବିଡ଼ ସମ୍ପର୍କ ଥିଲା । ସେ କୁମାରୀ ପର୍ବତରେ ଜୈନଧର୍ମ ପ୍ରଚାର କରିଥିଲେ । ତାଛଡ଼ା ମହାବୀର ତୋଷଳି ଓ ମୋଷଳି ପରିଦର୍ଶନ କରି ସେଠାରେ ଧର୍ମ ପ୍ରଚାର କରିଥିଲେ ବୋଲି ଆବଶ୍ୟକ ସୂତ୍ର (୩୦)ରୁ ଜଣାଯାଏ । ମହାବୀରଙ୍କର ପିତା ସିଦ୍ଧାର୍ଥଙ୍କର ତତ୍କାଳୀନ କଳିଙ୍ଗର ରାଜାଙ୍କ ସହିତ ବନ୍ଧୁତା ଥିବାର ଉଲ୍ଲେଖ ଜୈନ ହରିଭଦ୍ର ସୂରି ବୃତ୍ତି (୩୧)ରେ ରହିଛି । କଳିଙ୍ଗର ମାଠର ବଂଶୀ ରାଜା ଉମାବର୍ମନଙ୍କ ଟେକ୍କଲି ତାମ୍ର ଅଭିଲେଖ (୩୨)ରେ ଉଲ୍ଲିଖିତ ବର୍ଦ୍ଧମାନ-ପୁର ନଗର ଏବଂ ଗଙ୍ଗରାଜା ଇନ୍ଦ୍ରବର୍ମନଙ୍କ ଅଚ୍ୟୁତପୁରମ୍ ତାମ୍ରଲେଖ (୩୩)ରେ ବର୍ଣ୍ଣିତ ସିଦ୍ଧାର୍ଥକ ଗ୍ରାମ ଯଥାକ୍ରମେ ବର୍ଦ୍ଧମାନ ମହାବୀର ଓ ତାଙ୍କ ପିତା ସିଦ୍ଧାର୍ଥଙ୍କ ନାମାନୁସାରେ ନାମିତ ହୋଇଥିବା ଅନୁମିତ ହୁଏ । ଏ ସମସ୍ତ ବିଷୟ ଆଲୋଚନା କଲେ ସ୍ପଷ୍ଟତଃ ସିଦ୍ଧ ହୁଏ ଯେ ମହାବୀର ହିଁ ଅନ୍ୟାନ୍ୟ ତୀର୍ଥଙ୍କର ମାନଙ୍କ ଅପେକ୍ଷା କଳିଙ୍ଗରେ ଅଧିକ ଲୋକପ୍ରିୟ

ଥିଲେ । କେଣ୍ତୁ କଳିଙ୍ଗର ଜନସାଧାରଣ ମହାବୀରଙ୍କ ପ୍ରତିମା ସ୍ଥାପନକରି ତାହା କଳିଙ୍ଗ ଜିନ ରୂପେ ଆରାଧନା କରିଥିବା ଯୁକ୍ତିଯୁକ୍ତ ମନେହୁଏ । (୩୪) ।

ଖାରବେଲ ଶ୍ୱେତାମ୍ବରପନ୍ଥୀ ଜୈନ ଥିଲେ, ମଧ୍ୟ ସେ ଦିଗମ୍ବର ସମ୍ପ୍ରଦାୟ ପ୍ରତି ସମଭାବାପନ୍ନ ଥିଲେ । ରାଜତ୍ୱର ତ୍ରୟୋଦଶ ବର୍ଷରେ କୁମାରୀ ପର୍ବତ (ଉଦୟଗିରି) ଓ କୁମାର ପର୍ବତ (ଖଣ୍ଡଗିରି) ଠାରେ ସର୍ବତ୍ୟାଗୀ ଜପୋଧ୍ୟାପକ ଦିଗମ୍ବର ଜୈନ ଓ ଛିନ୍ନ ଅଥବା ସୂକ୍ଷ୍ମବସ୍ତ୍ର (ଚୀନ ବତାନ) ପରିହିତ ଶ୍ୱେତାମ୍ବର ଜୈନ ଅର୍ହତମାନଙ୍କ ବର୍ଷା ଋତୁରେ (ବର୍ଷା ସିତାନଂ ବା ବର୍ଷା ବାସ) କାର୍ଯ୍ୟକ ବିଶ୍ରାମ (କାୟୁାନସି ଉପ୍ୟାଭ) ନିମନ୍ତେ ସେମାନଙ୍କର ପୂଜକ (ପୂଜାନୁରତ) ଖାରବେଲ ନିଜେ ଏବଂ ନିଜର ମହିଷୀ, ରାଜକୁମାର, ଆତ୍ମୀୟ, ରାଜ କର୍ମଚାରୀ ତଥା ଭୃତ୍ୟମାନଙ୍କ ଦ୍ୱାରା ଏକଶହ ସତରଟି ଆଶ୍ରୟ ସ୍ଥଳୀ (ଗୁମ୍ଫା) ଖନନ କରାଇଥିଲେ । ସେ ଜୈନମାନଙ୍କ ମଧ୍ୟରେ ଶ୍ୱେତବସ୍ତ୍ର ବଣ୍ଟନ କରିଥଲେ । ଏଥିରୁ ସେ ଶ୍ୱେତାମ୍ବର ଜୈନ ଥିବା ପ୍ରମାଣିତ ହୁଏ । ସେହି ତ୍ରୟୋଦଶ ବର୍ଷରେ ଖାରବେଲ ଜୈନ ଅର୍ହତମାନଙ୍କ ଏକ ମହାସଭା ଉଦୟଗିରିଠାରେ ଅନୁଷ୍ଠିତ କରାଇଥିଲେ ବୋଲି କେତେକ ଐତିହାସିକ ମତବ୍ୟକ୍ତ କରନ୍ତି । (୩୫) । ଏହି ସମ୍ମିଳନୀରେ ଭାରତର ବିଭିନ୍ନ ପ୍ରାନ୍ତରୁ ଆଗତ ୩୫୦୦ ଜୈନ ଅର୍ହତ ଓ ଶ୍ରମଣ ସମବେତ ହୋଇ ଧର୍ମ ଚର୍ଚ୍ଚା କରି-ଥିଲେ । ସମ୍ଭବତଃ ହାତୀଗୁମ୍ଫାର ଉର୍ଦ୍ଧ୍ୱଭାଗରେ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଉଦୟଗିରିରେ ବହୁକାଳ ପୂର୍ବରୁ ଗୋଟିଏ ଜୈନ ବସ୍ତୁ ବିଗ୍ରହ (Relic Memorial) ବିଦ୍ୟମାନ ଥିଲା । (୩୬) । ସେଠାରେ ଜୈନମାନେ ଧର୍ମ ଚର୍ଚ୍ଚା କରୁଥିଲେ । ସମ୍ଭବତଃ ସେହିଠାରେ ହିଁ ବିଜୟ ଚକ୍ର ପ୍ରପ୍ରବର୍ତ୍ତିତ (ସୁପବର୍ତ-ବିଜୟ-ଚକେ କୁମାରୀ ପବତେ) ହୋଇ ଥିଲା । ଅର୍ଥାତ୍ ସେଠାରେ ମହାବୀରଙ୍କର ଧର୍ମ ପ୍ରବୃତ୍ତିର ବିଜୟ ଚକ୍ର ପ୍ରବର୍ତ୍ତିତ ହୁଆଯାଏ । ଖାରବେଲ ଏହି ବସ୍ତୁ ବିଗ୍ରହର ଜୀର୍ଣ୍ଣୋଦ୍ଧାର କରିଥିଲେ ।

ମୌର୍ଯ୍ୟ ରାଜତ୍ୱ କାଳରେ ଲୁପ୍ତ ହୋଇଥିବା ଜୈନମାନଙ୍କର ଧର୍ମଗ୍ରନ୍ଥ ସପ୍ତାଙ୍ଗ ଖାରବେଲ ପୁନରୁଦ୍ଧାର କରାଇଥିଲେ । ଏହାଦ୍ୱାରା ଜୈନମାନଙ୍କର ଗୋଟିଏ ବଡ଼ ଅଭାବ ସେ ଦୂର କରିପାରିଥିଲେ । ହାତୀଗୁମ୍ଫା ଅଭିଲେଖର ୧୪ ଶ ଧାଡ଼ିରେ ଆତ୍ମା (ଜୀବ) ଓ ପଦ୍ୟ (ଦେହ)ର ଉଲ୍ଲେଖ ରହିଛି । ଏ ସନ୍ଦର୍ଭରେ ଖାରବେଲଙ୍କ କଥନ ହେଲା ତାଙ୍କର ଆତ୍ମା ଓ ଦେହ ପରସ୍ପର ନିର୍ଭରଶୀଳ (ଶରୀର-କୁ ଆଶ୍ରିତ) । ଖାରବେଲଙ୍କ ଏହି ଉକ୍ତି ଜୈନଧର୍ମର ଜୀବ (ଆତ୍ମା) ଓ ଅଜୀବ (ଦେହ ବା ଶରୀର ଆଦି ଜଡ଼ ପଦାର୍ଥ) ତତ୍ତ୍ୱ ସହ ସମାନ । (୩୭) । ଏଥିରୁ ଖାରବେଲଙ୍କ ଉପରେ ଜୈନ ଦର୍ଶନର ପ୍ରଭାବ ପରିଲକ୍ଷିତ ହୁଏ ।

" କୁମାରୀ ପବତେ ଅରହତେହି ପଖିନ ସଂସିତେହି କାୟୁାନସୀୟାପ୍ୟ ଯାପକାବ କେହି ରାଜଭିତନଂ ଚିନ ବତାନି ବାସାସିତାନଂ ପୂଜାନୁରତ ଉବାସଗ (ଖା) ର ବେଲ ସିରନା ଜୀବ ଦେହ ସମ୍ପିକା ପରିଖାତା" ।। (୩୮)

ଖାରବେଲଙ୍କ ରାଜତ୍ୱ କାଳରେ ଉଦୟଗିରି ଭାରତରେ ଏକ ପ୍ରଧାନ ଜୈନ ପୀଠ ରୂପେ ଖ୍ୟାତ ଲାଭ କରିଥିଲା । ତାହା ଥିଲା ଭାରତର ବିଭିନ୍ନ ପ୍ରାନ୍ତରୁ ଆଗତ ଅର୍ହତ ଓ ଯତି, ତପସ୍ୱୀ ଓ ଋଷି ଏବଂ ସଙ୍ଘାୟନ (ବୌଦ୍ଧ ଭିକ୍ଷୁ) ମାନଙ୍କର ମିଳନ ସ୍ଥଳୀ । ଜୈନ ଧର୍ମାବଲମ୍ବୀ ହେଲେ ହେଁ ଖାରବେଲ ଅନ୍ୟାନ୍ୟ ଧର୍ମ ପ୍ରତି ସହନଶୀଳ ଥିଲେ ଏବଂ ବ୍ରାହ୍ମଣ ଓ ଆଜୀବକମାନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଥିଲେ । ଏହି ଉଦାର ଧର୍ମ ନୀତି ମୂଳରେ ତାଙ୍କର ହିଁ ରାଜ୍ୟ ମହିଷୀ ସିଂହପଥ ରାଣୀଙ୍କ ନିରବଚ୍ଛିନ୍ନ ପ୍ରେରଣା ଥିବା ଅନୁମିତ ହୁଏ । ପ୍ରଜାମାନଙ୍କର ଧର୍ମାନୁଚିନ୍ତା ଓ ପୂଜା ପଦ୍ଧତିରେ ଖାରବେଲ କୌଣସି ପ୍ରତିବନ୍ଧକ ସୃଷ୍ଟି କରୁନଥିଲେ । ସେ ଭାରତର ବିଭିନ୍ନ ପ୍ରାନ୍ତରୁ ଆଗତ ଆଗନ୍ତୁକ ଜୈନ ଅର୍ହତ, ଶ୍ରମଣ, ଆଜୀବକ (ଗୋଶାଳଙ୍କ ଅନୁଗାମୀ), ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ଯତି,ମୁନି, ଋଷି ଏବଂ ବୌଦ୍ଧ ଭିକ୍ଷୁମାନଙ୍କୁ ଅଭ୍ୟର୍ଥନା ଜଣାଇ ସେମାନଙ୍କ ବସବାସ ନିମନ୍ତେ ଉଦୟଗିରି ଗୁମ୍ଫା ସମୂହ ପାର୍ଶ୍ୱରେ ଏକ ସୁରମ୍ୟ ପ୍ରାସାଦ ଏକଶତ ପାଞ୍ଚଲକ୍ଷ ମୁଦ୍ରା ବ୍ୟୟରେ ନିର୍ମାଣ କରାଇ-ଥିଲେ । ଏହି ପ୍ରାସାଦରେ ୩୫ ଲକ୍ଷ ମସୃଣ ପ୍ରସ୍ତର ଫଳକ ବ୍ୟବହୃତ ହୋଇଥିଲା । ପ୍ରାସାଦଟି ନାନା ଆଭରଣ ଓ ବୈଦୁର୍ଯ୍ୟାଚ୍ଛାଦିତ ୫°ଟି ସ୍ତମ୍ଭ (ଚୈତ୍ୟ ଯଷ୍ଟି)ଦ୍ୱାରା ମଣ୍ଡିତ ହୋଇଥିଲା ।

ବିଭିନ୍ନ ଦିଗରେ ଯୁଦ୍ଧ ଅଭିଯାନ କରିଥିବା ବେଳେ ଖାରବେଲ ପଶ୍ଚିମ ଭାରତର ଶତ୍ରୁଞ୍ଜୟ ଓ ଜେରପୁର ଏବଂ ଦକ୍ଷିଣ ଭାରତର ଶ୍ରବଣ ବେଲଗୋଲା ଆଦି ଜୈନ ତୀର୍ଥ ସ୍ଥାନଗୁଡ଼ିକ ପରିଦର୍ଶନ କରିଥିବା ଅନୁମିତ ହୁଏ ।

ହାତୀଗୁମ୍ଫା ଶିଳାଲେଖର ଷୋଡ଼ଶ ଧାଡ଼ିରେ ଖାରବେଲଙ୍କ ଚାରିତ୍ରିକ ମହନୀୟତାର ବର୍ଣ୍ଣନା କରାଯାଇଛି । ସେ ନିଜକୁ କ୍ଷେମ ରାଜ, ବର୍ଦ୍ଧରାଜ, ଧର୍ମରାଜ, ଏବଂ ଭିକ୍ଷୁରାଜ ଆଖ୍ୟା ଦେଇଛନ୍ତି । ଏଥିରୁ ସିଦ୍ଧ ହୁଏ ଯେ ସେ ଥିଲେ ମଙ୍ଗଳାକାଂକ୍ଷୀ ତଥା କ୍ଷମାଶୀଳ,ପରିବର୍ଦ୍ଧନର ଆଧାର ତଥା ଦାନଶୀଳ, ଧର୍ମପ୍ରାଣ ଓ ସତ୍ୟପାଳକ ତଥା ନ୍ୟାୟଶୀଳ । ଭିକ୍ଷୁରାଜ ଉପାଧିରୁ ସେ ଜୈନ ଭିକ୍ଷୁମାନଙ୍କର ରାଜା ଥିବାର ପ୍ରମାଣ ମିଳେ ।

"...କ୍ଷେମ ରାଜାସ ବଧରାଜାସ ଭିକ୍ଷୁରାଜାସ ଧମରାଜା ପସଂତୋ ଅନୁଭବଂତୋ କଲଣାନି" ।

## ଖାରବେଳଙ୍କ ଧର୍ମ ସହିଷ୍ଣୁତା :

ଖାରବେଲ ନିଜର ଦୃଷ୍ଟି, ଶ୍ରୁତି ଓ ଅନୁଭବ ଦ୍ୱାରା ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତ ପ୍ରଜାମାନଙ୍କର ବହୁ କଲ୍ୟାଣମୟ କାର୍ଯ୍ୟ ସମ୍ପାଦନ କରିଥିଲେ ।

ହାତୀଗୁମ୍ଫା ଅଭିଲେଖର ସପ୍ତଦଶ ପଂକ୍ତିରେ ଖାରବେଲଙ୍କୁ 'ସବ—ପାଷଣ୍ଡ ପୂଜକୋ' ଏବଂ 'ସବ ଦେବାୟତନ ସଂକାର କାରକୋ' ରୂପେ ଅଭିହିତ କରାଯାଇଛି । ଅର୍ଥାତ୍ ଖାରବେଲ ସର୍ବ ଧର୍ମର ପୂଜକ, ସର୍ବ ଧର୍ମାବଲମ୍ବୀମାନଙ୍କର ଆଶ୍ରୟଦାତା ଏବଂ ସକଳ

ପ୍ରକାର ଦେବ ମନ୍ଦିର ଗୁଡ଼ିକର ଜୀର୍ଣ୍ଣ ସଂସ୍କାର କରାଇଥିଲେ । ଏଥିରୁ ପ୍ରମାଣିତ ହୁଏ ଯେ ଜୈନଧର୍ମାବଲମ୍ବୀ ହେଲେହେଁ ଖାରବେଳ ଅନ୍ୟାନ୍ୟ ଧର୍ମ ପ୍ରତି ସହନଶୀଳ ଥିଲେ ଏବଂ ବ୍ରାହ୍ମଣ ଏବଂ ଆଜୀବିକ (ଗୋଶାଳଙ୍କ ଅନୁଗାମୀ) ଙ୍କ ପ୍ରତି ସମଭାବାପନ୍ନ ତଥା ସମ୍ମାନ ପ୍ରଦର୍ଶନ କରୁଥିଲେ । ସେ ଜୈନ ଥିଲେ ମଧ୍ୟ ତାଙ୍କର ବାଲ୍ୟ ଓ ଯୌବନର ଶିକ୍ଷା ତତ୍କାଳୀନ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ଯୁବରାଜଙ୍କ ପରି ହୋଇଥିଲା । ତାଙ୍କର ରାଜ୍ୟାଭିଷେକ ଉତ୍ସବ ମଧ୍ୟ ପାରମ୍ପରିକ ବୈଦିକ ରୀତିରେ ନିର୍ଦ୍ଦିଷ୍ଟ ତିଥିରେ ବହୁ ଆଡ଼ମ୍ବର ସହକାରେ ଅନୁଷ୍ଠିତ ହୋଇଥିଲା । ଉକ୍ତଦିନ ସକଳ ପ୍ରକାର ଦେବାୟତନ, ଚୈତ୍ୟ, ମଠ, ବିହାର-ମାନଙ୍କରେ ତାଙ୍କର ଶୁଭକାମନା କରି ପୂଜା, ଆରାଧନା ହୋଇଥିଲା । ତାଙ୍କର ରାଜ୍ୟ ଶାସନ ନୀତି ପ୍ରାଚୀନ ସ୍ମୃତି ସମ୍ମତ ପ୍ରଣାଳୀରେ ଅନୁସୃତ ହେଉଥିଲା । ରାଜତ୍ୱର ଦ୍ୱିତୀୟ ବର୍ଷରେ ଆନ୍ଧ୍ର ସାତବାହନଙ୍କୁ ପରାସ୍ତକରି ବିଜୟୋଲ୍ଲାସ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରିବାପରେ ସେ ଜୈନଧର୍ମ ଶାସ୍ତ୍ର ନିଷିଦ୍ଧ ଉତ୍ସବ, ସମାଜ, ପ୍ରଭୃତି ଅନୁଷ୍ଠାନ ଏବଂ ଗୀତ, ନୃତ୍ୟ, ବାଦ୍ୟ ଇତ୍ୟାଦିର ପ୍ରଦର୍ଶନ ଦ୍ୱାରା ପ୍ରଜାମାନଙ୍କର ଚିତ୍ତ ବିନୋଦନ କରିଥିଲେ । ରାଜତ୍ୱର ଅଷ୍ଟମ ବର୍ଷରେ ସେ ଜୈନ କ୍ଷେତ୍ର ମଥୁରାକୁ ଶତ୍ରୁ ହସ୍ତ (ଯବନ ରାଜ ଦମିତ)ରୁ ରକ୍ଷା କରି ସେଠାରେ ସମସ୍ତ ଗୃହବାସୀ, ଗୃହପତି, ବ୍ରାହ୍ମଣ ଓ ଶ୍ରମଣମାନଙ୍କୁ ପାନ ଭୋଜନ ଦ୍ୱାରା ଆପ୍ୟାୟିତ କରିଥିଲେ ।

ଅଶୋକଙ୍କ ପରି ଖାରବେଳ ଯୁଦ୍ଧ ପରିତ୍ୟାଗ କରି ଧର୍ମ ବିଜୟ ବା ଧର୍ମ ଘୋଷର ପରିକଳ୍ପନା କରିନଥିଲେ । ସେ ଭେରୀ ଘୋଷର ପକ୍ଷପାତୀ ଥିଲେ । ଜୈନ ଧର୍ମର ଉପାସକ ହୋଇମଧ୍ୟ ଖାରବେଳ ଅହିଂସା ନୀତି ପାଳନ କରିବା ପରିବର୍ତ୍ତେ ହିଂସା ପ୍ରଣୋଦିତ ଯୁଦ୍ଧ ଦିଗ୍‌ବିଜୟ ଓ ସାମ୍ରାଜ୍ୟ ବିସ୍ତାରରେ ରାଜତ୍ୱର ଅଧିକାଂଶ ସମୟ ନିର୍ବାହ କରିଥିଲେ । ଏଥିରୁ ପ୍ରମାଣିତ ହୁଏ ଯେ ଜୈନଧର୍ମର ଅହିଂସା ନୀତି ତାଙ୍କର ରାଜନୈତିକ ଜୀବନରେ କୌଣସିପ୍ରକାର ପ୍ରଭାବ ପକାଇପାରି ନଥିଲା । ପ୍ରାଚୀନ ବୈଦିକ ପରମ୍ପରା ଅନୁଯାୟୀ, ରାଜ୍ୟ ଜୟ ଓ ସାମ୍ରାଜ୍ୟ ବିସ୍ତାର ରାଜ୍ୟମାନଙ୍କର କର୍ତ୍ତବ୍ୟ ବୋଲି ସେ ବିବେଚନା କରିଥିଲେ । ତେଣୁ କଳିଙ୍ଗର ରାଜା ଭାବେ ସେ ଏହି କର୍ତ୍ତବ୍ୟ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ଜୀବନରେ ଜୈନଧର୍ମାବଲମ୍ବୀ ଭାବେ ସେ ଅହିଂସା ନୀତି ପାଳନ କରିଥିଲେ । ଖାରବେଳ ସ୍ୱୀୟ ରାଜନୈତିକ ଜୀବନରେ ବୈଦିକ ପରମ୍ପରା ଏବଂ ବ୍ୟକ୍ତିଗତ ଜୀବନରେ ଜୈନ ପରମ୍ପରା ଅନୁସରଣ କରିଥିଲେ । ସେ ରାଜନୀତିକୁ ଧର୍ମ ସହିତ ଜଡ଼ିତ କରିନଥିଲେ ।

ରାଜତ୍ୱର ଶେଷ ବର୍ଷରେ ସେ ଜୈନ ଶ୍ରମଣ ଏବଂ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ଯତି, ମୁନି,ଋଷି ମାନଙ୍କ ନିବାସ ନିମନ୍ତେ ଏକ ବିଶାଳ ପ୍ରାସାଦ (ଗୁମ୍ଫା) ନିର୍ମାଣ କରାଇଥିଲେ ।

କେବଳ ସେତିକ ନୁହେଁ ସେ ଥିଲେ ମଧ୍ୟ ସକଳ ଧର୍ମର ପୂଜକ ସବୁ ଧର୍ମାବଲମ୍ବୀ ମାନଙ୍କର ପୃଷ୍ଟପୋଷକ ତଥା ବିଭିନ୍ନ ଧର୍ମ ସମ୍ପ୍ରଦାୟର ଦେବାଯତନ ବା ଦେବମନ୍ଦିର ମାନଙ୍କର ସଂସ୍କାରକ । ଏଥିରୁ ବିଦିତ ହୁଏ ଯେ ଖାରବେଳ ରାଜ୍ୟର ସକଳ ଧର୍ମାବଲମ୍ବୀ ମାନଙ୍କ ପ୍ରତି ଅନୁରୂପ ସ୍ନେହ, ଶ୍ରଦ୍ଧା ଓ ଅନୁଗ୍ରହ ପ୍ରଦର୍ଶନ କରିଥିଲେ । ଧର୍ମ ନିର୍ବିଶେଷରେ ସେ ସମସ୍ତଙ୍କୁ ସମଦୃଷ୍ଟିରେ ଦେଖୁଥିଲେ, ସମସ୍ତଙ୍କର ବାଣି ଶ୍ରବଣ କରୁଥିଲେ, ସମସ୍ତଙ୍କର ଗୀତ ଅନୁଭବ କରୁଥିଲେ ଏବଂ ସମସ୍ତଙ୍କର କଲ୍ୟାଣ କାମନା କରୁଥିଲେ । "ସେ ନିଜର ଜୈନତ୍ଵର ସଙ୍ଗେ ସଙ୍ଗେ ଉଦାର ଧର୍ମନୀତିର ବ୍ୟାଖ୍ୟାନ କରିବାକୁଯାଇ ରାଜ ଧର୍ମର ଉଚ୍ଚ ଆଦର୍ଶ ମଧ୍ୟ ପ୍ରକାଶ କରିଛନ୍ତି । ସେ ନିଜକୁ ଶାଶ୍ଵତ ନିୟମର ଧାରକ, ସଂରକ୍ଷକ ଓ ପ୍ରବର୍ତ୍ତକ ରୂପେ ଜ୍ଞାନ କରୁଥିଲେ ଏବଂ ନିଜ ପୂର୍ବ ପୁରୁଷ ରାଜର୍ଷି ବସୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଧର୍ମ ନୀତି ଓ ରାଜନୀତିର ସମନ୍ଵୟ ପ୍ରତିଷ୍ଠା ନିମନ୍ତେ ଉଦ୍ୟମ କରିଥିଲେ ।" (୨୯) । ଏହି ଉଦାର ଧର୍ମନୀତି ଓ ମହାନୁଭବତା ଯୋଗୁଁ ସେ କଳିଙ୍ଗର ସକଳ ସମ୍ପ୍ରଦାୟର ଶ୍ରଦ୍ଧା ଓ ପ୍ରୀତିଭାଜନ ହୋଇପାରିଥିଲେ । ସାର୍ବଜନୀନ ଧର୍ମାଭିମୁଖ ଓ ଧର୍ମ କ୍ଷେତ୍ରରେ ସାମ୍ୟ ଓ ଉଦାର ନୀତି ଅବଲମ୍ବନ କରିଥିବା ହେତୁ ଖାରବେଳ ଇତିହାସରେ ଚିରସ୍ମରଣୀୟ ହୋଇ ରହିଛନ୍ତି ।

## ଖାରବେଳଙ୍କ ରାଜତ୍ଵରେ ଗୁମ୍ଫା ସ୍ଥାପତ୍ୟ :

ଉଦୟଗିରି (କୁମାରୀ ପର୍ବତ) ଓ ଖଣ୍ଡଗିରି (କୁମାର ପର୍ବତ)ର ଗୁମ୍ଫା ସ୍ଥାପତ୍ୟ ଖାରବେଳଙ୍କ ରାଜତ୍ଵର ଏକ ବିଶେଷତ୍ଵ । ଏହି ଗୁମ୍ଫା ଗୁଡ଼ିକ ଖାରବେଳ, ତାଙ୍କର ମହିଷୀ, ପୁତ୍ର,ଅନ୍ୟାନ୍ୟ ପରିବାର ବର୍ଗ ଓ କେତେକ ରାଜ କର୍ମଚାରୀଙ୍କ ଦ୍ଵାରା ଖୋଦିତ ହୋଇଥିଲା । ବର୍ଷା ଋତୁରେ ଜୈନ ଅର୍ହତ ଓ ପରିବ୍ରାଜକ ଭିକ୍ଷୁମାନଙ୍କ ଅସ୍ଥାୟୀ ବିଶ୍ରାମ ନିମନ୍ତେ ଏହି ଗୁମ୍ଫା ଗୁଡ଼ିକ ଉଦ୍ଦିଷ୍ଟ ଥିଲା । ଖାରବେଳଙ୍କ ପୃଷ୍ଠପୋଷକତାରେ ଖୋଦିତ ଏହି ଗୁମ୍ଫା-ଗୁଡ଼ିକ ତତ୍କାଳୀନ ପ୍ରସ୍ତର ଖୋଦନ ଶିଳ୍ପର ଜ୍ଵଳନ୍ତ ନିଦର୍ଶନ । ସେହି କାଳରେ ପ୍ରସ୍ତର ଖୋଦନ ଶିଳ୍ପର ପ୍ରାଣ ପ୍ରତିଷ୍ଠିତ ହୋଇଥିଲା ଅତ୍ୟନ୍ତ ବିବେଚନାର୍ହ ।

ଉନ୍ମୁକ୍ତ ଦ୍ଵାର ସଦୃଶ ଏବଂ ସମତଳ ଛାତ ବିଶିଷ୍ଟ ଏହି କ୍ଷୁଦ୍ରାକାର ଗୁମ୍ଫା ଗୁଡ଼ିକ ଦୁଇ/ତିନି ଜଣରୁ ଅଧିକ ବାସିନ୍ଦାଙ୍କ ପକ୍ଷେ ବାସୋପଯୋଗୀ ନଥିଲା । କେତେକ ଗୁମ୍ଫାର ଉଚ୍ଚତା ଏତେ କମ୍ ଯେ ତା ଭିତରକୁ ଆଣ୍ଠେଇ ପ୍ରବେଶ କରିବାକୁ ପଡ଼େ । କେତେକ ଗୁମ୍ଫା ମଣିଷେ ଉଚ୍ଚ । ଗୁମ୍ଫା ଗୁଡ଼ିକରେ ଶୟନ କରିବା ପାଇଁ ଗୋଟିଏ ପାଖ ଉଚ୍ଚ ଓ ଅନ୍ୟ ପାଖ ଗଡ଼ାଣିଆ କରିଯାଇଛି । ଉଚ୍ଚ ପାଖଟି ଶେଇବା ପାଇଁ ତକିଆର କାମଦିଏ । କେତେକ ଗୁମ୍ଫାର ଭିତର ପଟ କାନ୍ଥରେ ଥାକ (self) ରହିଛି । ସେଥିରେ ଜୈନ ଭିକ୍ଷୁମାନେ ଭିକ୍ଷା ପାତ୍ର, ଧର୍ମ ଗ୍ରନ୍ଥ ଓ ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ରଖୁଥିଲେ । କେତେକ ଗୁମ୍ଫାରେ ଏକାଧିକ ପ୍ରକୋଷ୍ଠ ରହିଛି । ଗୁମ୍ଫା ଗୁଡ଼ିକ ଭିତରକୁ ଆଲୋକ ଓ ବାୟୁ ଚଳାଚଳର

ସୁବ୍ୟବସ୍ଥା ଅଛି । ପ୍ରାୟ ପ୍ରତ୍ୟେକ ଗୁମ୍ଫା ସମ୍ମୁଖରେ ଖୋଲାବାରଣ୍ଡା ଏବଂ କେତେକ ବାରଣ୍ଡାର ଉଭୟ ପାର୍ଶ୍ୱରେ ବସିବା ପାଇଁ ବେଞ୍ଚ ରହିଛି । ପ୍ରତ୍ୟେକ ଗୁମ୍ଫାକୁ ପଥର କଟା ପାହାଚ ଅଛି । ଗୁମ୍ଫାଗୁଡ଼ିକୁ ପଥର କଟା ନାଳ ଦ୍ୱାରା ନିକଟବର୍ତ୍ତୀ କୁଣ୍ଡ ଗୁଡ଼ିକରୁ ଜଳ ଯୋଗାଣ କରାଯାଉଥିଲା । ଏହି କୁଣ୍ଡଗୁଡ଼ିକ ହେଲା ଉଦୟଗିରିର ଲଳିତ କୁଣ୍ଡ ଓ ହାତୀ ନିସ୍ରୁଣୀ ଏବଂ ଖଣ୍ଡଗିରିର ଆକାଶ ଗଙ୍ଗା, ରାଧାକୁଣ୍ଡ, ଶ୍ୟାମ କୁଣ୍ଡ ଓ ଗୁପ୍ତ ଗଙ୍ଗା ।

ଉଦୟଗିରିର ହାତୀ ଗୁମ୍ଫା, ସର୍ପ ଗୁମ୍ଫା, ବ୍ୟାଘ୍ର ଗୁମ୍ଫା, ମଞ୍ଚପୁରୀ ଗୁମ୍ଫା, ଜମ୍ବେଶ୍ୱର ଗୁମ୍ଫା, ହରିଦାସ ଗୁମ୍ଫା, ରାଣୀ ଗୁମ୍ଫା ଏବଂ ଖଣ୍ଡଗିରିର ତାତୁଆ ଗୁମ୍ଫା (୧) ଏବଂ ତାତୁଆ ଗୁମ୍ଫା (୨) ଓ ଅନନ୍ତ ଗୁମ୍ଫା ଖାରବେଳଙ୍କ ସମକାଳୀନ ବୋଲି ଜଣାଯାଏ । ଏହି ଗୁମ୍ଫା ଗୁଡ଼ିକରେ ଉତ୍କୀର୍ଣ୍ଣ ଅଭିଲେଖ ଗୁଡ଼ିକ ଖ୍ରୀ ପୂ ପ୍ରଥମ ଶତାବ୍ଦୀର ବୋଲି ନିର୍ଣ୍ଣିତ ହୋଇଛି । ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଦୃଷ୍ଟିରୁ ଏହି ଗୁମ୍ଫା ଓ ବର୍ହିଭୂତ; ସାଞ୍ଚି, ବୋଧଗୟା, ଅମରାବତୀ, ପଥଲକୋରାସ୍ଥ ଗୁମ୍ଫା ଗୁଡ଼ିକ ମଧ୍ୟରେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । (୪୦) । ତେବେ ଅଶୋକଙ୍କ ଦ୍ୱାରା ଜୈନ ଆଜୀବକ ମାନଙ୍କ ପାଇଁ ମଗଧର ଗୋରଥ ଗିରି (ବାରବର୍) ଓ ନାଗାର୍ଜ୍ଜୁନ ପର୍ବତରେ ଖୋଦିତ ଗୁମ୍ଫା ଗୁଡ଼ିକ ଅପେକ୍ଷା ଉଦୟଗିରି ଓ ଖଣ୍ଡଗିରି ଗୁମ୍ଫା ସମୂହ ଅଧିକ ଦୀର୍ଘ, ବିସ୍ତୃତ, ଉଚ୍ଚ, ମସୃଣ ଓ ମନୋରମ । ଗୋରଥଗିରି ଗୁମ୍ଫାରେ ବାରଣ୍ଡା ନଥିବା ବେଳେ ଉଦୟଗିରି ଓ ଖଣ୍ଡଗିରି ଗୁମ୍ଫା ଗୁଡ଼ିକରେ ବହୁ ସ୍ତମ୍ଭ ଶୋଭିତ ଓସାରିଆ ବାରଣ୍ଡାମାନ ରହିଛି । ସ୍ତମ୍ଭ ଶୋଭିତ ବିସ୍ତୃତ ବାରଣ୍ଡାମାନ ଉତ୍କଳୀୟ ଗୁମ୍ଫା ସ୍ଥାପତ୍ୟର ଏକ ବିଶେଷତ୍ୱ । ଖାରବେଳଙ୍କ ସମୟରେ ଖୋଦିତ କେତେକ ଗୁମ୍ଫାର ଏକ ସଂକ୍ଷିପ୍ତ ବିବରଣ ନିମ୍ନରେ ପ୍ରଦତ୍ତ ହେଲା ।

ହାତୀଗୁମ୍ଫାର କପାଳ ଦେଶରେ ଖାରବେଳଙ୍କ ବିଶ୍ୱବିଖ୍ୟାତ ହାତୀଗୁମ୍ଫା ଅଭିଲେଖ ଖୋଦିତ ହୋଇଛି । ହାତୀଗୁମ୍ଫାର ସମ୍ମୁଖ ଭାଗ ସମ୍ପୂର୍ଣ୍ଣ ଉନ୍ମୁକ୍ତ । ସମ୍ଭବତଃ ହାତୀ ଗୁମ୍ଫାଟି ସଭାଗୃହ ରୂପେ ବ୍ୟବହୃତ ହେଉଥିଲା ।

ହାତୀଗୁମ୍ଫାର ପଶ୍ଚିମ ପାର୍ଶ୍ୱରେ ପୂର୍ବାଭିମୁଖୀ ସ୍ଥିତ ସର୍ପଗୁମ୍ଫା ସର୍ପଫଣା ପରି ଦେଖାଯାଏ । ତେଣୁ ତାହା ସର୍ପଗୁମ୍ଫା ନାମରେ ଅଭିହିତ । ସର୍ପଫଣା ତ୍ରୟୋବିଂଶ ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ପ୍ରତୀକ । ସର୍ପ ଗୁମ୍ଫାରେ ଖୋଦିତ ଦୁଇଟି କ୍ଷୁଦ୍ର ଅଭିଲେଖ ହେଲା –

(କ) କମ୍ମସ ହାଲଖି—
ଣାୟ ଚ ପସାଦୋ

(ଖ) ଚୂଲ କମସ କୋଠାଯେୟା ଚ । (୮୧)

ଅର୍ଥାତ୍ କର୍ମ୍ମ (ଖାରବେଳଙ୍କ କର୍ମ୍ମ ସଚିବ) ଏବଂ ତାଙ୍କ ପତ୍ନୀ ହାଲକ୍ଷୀଣାଙ୍କ ଦ୍ୱାରା ସର୍ପ ଗୁମ୍ଫା ଖୋଦିତ ହୋଇଥିଲା ।

ସର୍ପ ଗୁମ୍ଫାର ଉତ୍ତର ପଶ୍ଚିମ ଦିଗକୁ ବ୍ୟାଘ୍ର ଗୁମ୍ଫା ଅବସ୍ଥିତ । ଏହି ଗୁମ୍ଫାର ଅଗ୍ରଭାଗ ବ୍ୟାଘ୍ରମୁଖାକୃତି ସଦୃଶ । ତାହାର ଦ୍ୱାରଦେଶର ଡାହାଣ ପାର୍ଶ୍ୱରେ ଉତ୍କୀର୍ଣ୍ଣ ଅଭି-

ଲେଖରୁ ବ୍ୟାଘ୍ର ଗୁମ୍ଫା ନଗର ଅକ୍ଷଦଂଶ ଅଥବା ନଗର ବଚ୍ଚରପତ ସ୍ଥୁଭୁତଙ୍କ ଦ୍ୱାରା ଖୋଦିତ ହୋଇଥିବା ଜଣାଯାଏ—

'ନଗର ଅକ୍ଷଦଂସ ସ ଭୁତନୋ' ଲେନ'' (୪୨) ।

ଜମ୍ଭେଶ୍ୱର (ଯମେଶ୍ୱର) ଗୁମ୍ଫାର ଦକ୍ଷିଣ ଦ୍ୱାରର ଉର୍ଦ୍ଧ୍ୱଭାଗରେ ଖୋଦିତ ଲିପିରୁ ଜଣାଯାଏ ଯେ ଉକ୍ତ ଗୁମ୍ଫାଟି ଖାରବେଳଙ୍କ ମହାମାତ୍ର (ମହାମଦ) ନାକିୟ ଏବଂ ତାଙ୍କର ପତ୍ନୀ ବାରିୟାଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

'ମହାମଦସ ବାରିୟାୟ (ଭରିୟାୟ) ନାକିୟସ ଲେଣ' (୪୩) ।

ମଞ୍ଚପୁରୀ ଗୁମ୍ଫାଟି ଦ୍ୱିତଳ ବିଶିଷ୍ଟ । ତାହାର ଉପର ମହଲଟି ସ୍ୱର୍ଗପୁରୀ ଅଥବା ବୈକୁଣ୍ଠପୁରୀ ଏବଂ ତଳ ମହଲଟି ମଞ୍ଚପୁରୀ ଅଥବା ମର୍ତ୍ତ୍ୟପୁରୀ ଗୁମ୍ଫା ନାମରେ ଅଭିହିତ । ମଞ୍ଚପୁରୀ ଗୁମ୍ଫାର ଉପର ମହଲ (ସ୍ୱର୍ଗପୁରୀ ଗୁମ୍ଫା)ରେ ଖୋଦିତ ଅଭିଲେଖରୁ ଜଣାଯାଏ ଯେ ତାହା ଖାରବେଳଙ୍କ ଅଗ୍ରମହିଷୀଙ୍କ ଦ୍ୱାରା ନିର୍ମିତ ହୋଇଥିଲା—

୧ମ ଧାଡ଼ି—'ଅରହନ୍ତ' ପସାଦାୟଂ କଲିଙ୍ଗା (ନ') ସ (ମ)ଣାନ' ଲେଣ' କାରିତ' (୧) ରାଜନୋ ଲଲାକ (ସ)

୨ୟ ଧାଡ଼ି—ହାଥି [ସି] ହସମ (ନା) ତସ ଧୁତୁନା କଲିଙ୍ଗ ଚ (କବତନୋ ସିରି-ଖାର) ବେଳସ

୩ୟ ଧାଡ଼ି— ଅଗମହିସି (ନା) (କା)ରିତ' ।। (୪୪) ।

ମଞ୍ଚପୁରୀ ଗୁମ୍ଫାର ତଳ ମହଲରେ ଗୋଟିଏ ବଡ଼ ପ୍ରକୋଷ୍ଠ ରହିଛି । ସେଠାରେ ଦୁଇଟି ଅଭିଲେଖ ଦେଖିବାକୁ ମିଳେ । ଏହି ଅଭିଲେଖ ଦୁଇଟିରୁ ଉକ୍ତ ଗୁମ୍ଫାର ଗୋଟିଏ ଅଂଶ ମହାରାଜ କୁଦେପ ସିରି ଓ ଅନ୍ୟଟି କୁମାର ବଡ଼ୁଖଙ୍କ ଦ୍ୱାରା ନିର୍ମିତ ହୋଇଥିବା ଜଣାଯାଏ

୧ । ''ଐରସ ମହାରାଜସ କଲିଙ୍ଗାଧିପତିନୋ ମହା (ମେଘ ବାହ (ନ) ସ କୁଦେପ ସିରିନୋ ଲେଣଂ ।

୨ । କୁମାର ବଡ଼ୁଖସ ଲେଣ'' (୪୫) ।

ସମ୍ଭବତଃ କୁଦେପସିରି ଖାରବେଳଙ୍କ ଜ୍ୟେଷ୍ଠ ପୁତ୍ର ଓ ଉତ୍ତରାଧିକାରୀ ଥିଲେ । ମଞ୍ଚପୁରୀ ଗୁମ୍ଫାର ତଳ ମହଲରେ ଖାରବେଳ, ତାଙ୍କ ଜ୍ୟେଷ୍ଠ ପୁତ୍ର କୁଦେପସିରି' ପ୍ରଥମା ଓ ଦ୍ୱିତୀୟ ମହିଷୀ ଏବଂ ପାରିଷଦବର୍ଗଙ୍କ ସହ କଳିଙ୍ଗ ଜିନ ମୂର୍ତ୍ତିଙ୍କୁ ଯୁକ୍ତ ହସ୍ତରେ ପ୍ରାର୍ଥନା କରୁଥିବାର ଚିତ୍ର ଖୋଦିତ ହୋଇଛି ।

ହରିଦାସ ଗୁମ୍ଫା ହାତୀ ଗୁମ୍ଫାର ଅନତି ଦୂରରେ ବାମ ପାର୍ଶ୍ୱରେ ଅବସ୍ଥିତ । ସପ୍ତଦଶ ଖ୍ରୀଷ୍ଟାବ୍ଦର ଓଡ଼ିଆ ସିଦ୍ଧ ପୁରୁଷ ହରିଦାସଙ୍କ ନାମରେ ତାହା ନାମିତ । ଇସ୍‌ଲାମଧର୍ମରେ

ଦୀକ୍ଷିତ କରିବା ନିମନ୍ତେ ବାଦଶାହ ଔରଙ୍ଗଜେବ ହରିଦାସଙ୍କ ଉପରେ ନାନା ଅତ୍ୟାଚାର କରିଥିଲେ ବୋଲି କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ରଚିତ 'ନାମ ଚିନ୍ତାମଣି'ରୁ ଜ୍ଞାତ ହୁଏ । —

ହରିଦାସକୁ ଯେବେ ବାଦଶା ଚେଷ୍ଟିଲା ଯାଏ ନଭଣି କଲମା କଲାରେ ।"

— ନାମ ଚିନ୍ତାମଣି (୪୭)

ହରିଦାସ ଗୁମ୍ଫାରେ ଟିକା ଲେଖଟିଏ ଅଛି । ତାହା ହେଲା—

ଚୂଳ କଂମସ ପସାତୋ କୋଠାକେୟଂଚ ।

ଅର୍ଥାତ୍ ରାଜକର୍ମଚାରୀ ଚୂଳକମ୍ମ ରାଜପ୍ରାସାଦ ଭୂଲ୍ୟ ବାରଣ୍ଡାଯୁକ୍ତ ଏହି କୋଠା ତିଆରି କରାଇଥିଲେ । ଏଥିରୁ ପ୍ରମାଣିତ ହୁଏ ଯେ ଏହି ଗୁମ୍ଫାଟି ସପ୍ତଦଶ ଖ୍ରୀଷ୍ଟାବ୍ଦର ଓଡ଼ିଆ ସିଦ୍ଧ ହରିଦାସଙ୍କ ନାମରେ ନାମିତ ହୋଇଥିଲେ ମଧ୍ୟ ତାହା ଖାରବେଳଙ୍କ ଚୂଳକର୍ମଙ୍କ ଦ୍ୱାରା ଖୋଦିତ ଏକ ପ୍ରାଚୀନ ଗୁମ୍ଫା । –

ଉଦୟଗିରିର ଗୁମ୍ଫା ଗୁଡ଼ିକ ମଧ୍ୟରେ ସବୁଠାରୁ ବୃହତ୍, ପ୍ରଶସ୍ତ ଏବଂ ଅତ୍ୟନ୍ତ ଚିତ୍ତାକର୍ଷକ ହେଉଛି ଦ୍ୱିତଳ ବିଶିଷ୍ଟ ରାଣୀଗୁମ୍ଫା । ତାହା 'ରାଣୀନଅର' ଗୁମ୍ଫା ନାମରେ ମଧ୍ୟ ପ୍ରସିଦ୍ଧ । ରାଣୀଗୁମ୍ଫାର ସ୍ଥାପତ୍ୟ ଅତ୍ୟନ୍ତ ମନୋରମ । ରାଣୀଗୁମ୍ଫାର ତଳ ମହଲରେ ଆଠଗୋଟି ଏବଂ ଉପର ମହଲରେ ଛଅଟି କୋଠରୀ ରହିଛି । ଉଭୟ ମହଲର କାନ୍ଥ ଗାତ୍ରରେ ବିଭିନ୍ନ ବୃକ୍ଷ-ଲତା, ପଶୁ-ପକ୍ଷୀ, ନର-ନାରୀଙ୍କ ପ୍ରତିମୂର୍ତ୍ତି, ପଙ୍କଜଗଣ, ଉଡ଼୍ଡୀୟମାନ ବିଦ୍ୟାଧର ବା ଗନ୍ଧର୍ବ, ପ୍ରାକୃତିକ ଦୃଶ୍ୟ ତଥା ନାନା ଭଙ୍ଗିରେ ନୃତ୍ୟରତା ତରୁଣୀମାନଙ୍କର ଚିତ୍ର ଅତି ଚମତ୍କାରଭାବେ ଖୋଦିତ ହୋଇଛି ।

ରାଣୀଗୁମ୍ଫାର ଉପର ମହଲର ବିଭିନ୍ନ ସ୍ଥାନରେ ଖୋଦିତ ଚିତ୍ରାବଳୀ ମନୋମୁଗ୍ଧକର । ତନ୍ମଧ୍ୟରେ ପ୍ରଥମ ଚିତ୍ରଟି ହେଲା ସାଧା ଧୋତି, ଚାଦର ଏବଂ ମୁଣ୍ଡରେ ପଗଡ଼ି ପରିହିତ ଏବଂ ନାନା ଅଳଙ୍କାରରେ ଭୂଷିତ ଉଡ଼ନ୍ତା ଗନ୍ଧର୍ବ ଜୈନ ଧର୍ମର ଶ୍ରୀ ବତ୍ସ ଧର୍ମ ଚିହ୍ନକୁ ପଦ୍ମପୁଷ୍ପ ମାଳ୍ୟ ଅର୍ପଣ କରୁଛନ୍ତି ।

ଦ୍ୱିତୀୟ ଚିତ୍ରରେ ଖୋଦିତ ହୋଇଛି ଜଣେ ବୀର ପୁରୁଷ ଓ ଦଶ ଜଣ ନାରୀଙ୍କର ପଦ୍ମ ପୁଷ୍କରିଣୀରେ ସ୍ନାନରତବନ୍ୟ ହସ୍ତୀ ଓ ହସ୍ତିନୀଙ୍କ ସହିତ ସଂଘର୍ଷ । ଜଣେ ନାରୀ ସମ୍ମୁଖ ଭାଗରେ ଦଣ୍ଡାୟମାନ ହୋଇ ନିଜର ଏକ ଓଜନିଆ ଅଳଙ୍କାର (ସମ୍ଭବତଃ ପାହୁଜ) କୁ ହସ୍ତୀ ଆଡ଼କୁ ନିକ୍ଷେପ କରୁଛନ୍ତି । ବୀର ପୁରୁଷ ଜଣକ ଏକ ବୃହତ୍ ଦଣ୍ଡ ସାହାଯ୍ୟରେ ହସ୍ତୀଙ୍କର ପ୍ରତିରୋଧ କରି ଆତ୍ମରକ୍ଷା କରୁଛନ୍ତି । ତୃତୀୟ



(ଶ୍ରୀ ବତ୍ସ ସଙ୍କେତ)

ଦୃଶ୍ୟରେ ଏକ ଗୁମ୍ଫା ସମ୍ମୁଖରେ ଜଣେ ପୁରୁଷ, ଖଣ୍ଡା ଓ ଢ଼ାଲ ଧରିଥିବା ନାରୀ ମଧ୍ୟରେ ଯୁଦ୍ଧ ହେଉଥିବା ଏବଂ ପୁନଶ୍ଚ ପୁରୁଷଜଣକ ଉକ୍ତ ନାରୀଙ୍କୁ ଅରଣ୍ୟ ମଧ୍ୟରେ ଉଠାଇ ନେଇ-ଯାଉଥିବାର ଚିତ୍ର ରହିଛି । ଚତୁର୍ଥ ଦୃଶ୍ୟରେ ରାଜା (ଖାରବେଳ) ଅରଣ୍ୟରେ ଶୀକାର କରିବାର ଚିତ୍ର ଅଛି । ନିକଟରେ ଜଣେ ଘୋଡ଼ା ଓ ତିନିଜଣ ପରିଚାରକଙ୍କ ଚିତ୍ର ଅଙ୍କିତ ହୋଇଛି । ଜଣେ ଭୃତ୍ୟ ଡାହାଣ ହସ୍ତରେ ଚାମର ଏବଂ ବାମ ହସ୍ତରେ ଛତ୍ର, ଅନ୍ୟ ଜଣେ ଖଣ୍ଡା ଏବଂ ଅନ୍ୟ ଜଣେ ଭୃତ୍ୟ ବାମ ସ୍କନ୍ଧରେ ପାତ୍ର ଥିବା ଏକ ଭାର ବହନ କରୁଛନ୍ତି । ଖାରବେଳ ଏକ ମୃଗକୁ ଶର ନିକ୍ଷେପ କରୁଛନ୍ତି । ନିକଟସ୍ଥ ବୃକ୍ଷ ଶାଖାରେ ଜଣେ ଯୁବତୀ (ଖାରବେଳଙ୍କ ରାଣୀ) ବସିଛନ୍ତି । ସେ ରାଜାଙ୍କୁ ଶର ନିକ୍ଷେପ ନକରିବାକୁ ସଙ୍କେତ ଦେଇ ଅହିଂସା ନୀତିର ଗୁରୁତ୍ୱ ପ୍ରତିପାଦନ କରୁଛନ୍ତି । ପଞ୍ଚମ ଦୃଶ୍ୟରେ କୁଇ ଜଣ ନୃତ୍ୟରତା ତରୁଣୀଙ୍କର ଚିତ୍ର ରହିଛି । ତିନି ଜଣ ନାରୀ ସେଠାରେ ମୃଦଙ୍ଗ, କରତାଳ ଓ ବୀଣା ବାଦନ କରୁଛନ୍ତି ସଙ୍ଗୀତର ସ୍ୱର ସଙ୍ଗେ ମିଶାଉଛନ୍ତି । ତତ୍ର ଲଳିତ ମୁଦ୍ରାରେ ଉପବିଷ୍ଟ ଖାରବେଳ ତାଙ୍କ ଅଗ୍ରମହିଷୀ ଓ ପାଞ୍ଚଜଣ ପରିଚାରିକାଙ୍କ ସହ ସଙ୍ଗୀତ, ନୃତ୍ୟ ଓ ବାଦ୍ୟ ଉପଭୋଗ କରୁଛନ୍ତି ।

ରାଣୀଗୁମ୍ଫାର ତଳ ମହଲାରେ ମଧ୍ୟ ବିଭିନ୍ନ ଦୃଶ୍ୟ ପରିଦୃଷ୍ଟ ହୁଏ । ବାମ ଓ ଡାହାଣ ଉଭୟ ପାର୍ଶ୍ୱରେ ପ୍ରକୋଷ୍ଠ ମାନ ରହିଛି । ମଧ୍ୟ ଭାଗରେ ଏକ ପ୍ରଶସ୍ତ ଆୟତାକାର ପ୍ରାଙ୍ଗଣ ରହିଛି । ସେଠାରେ ଧର୍ମ ସମ୍ବନ୍ଧୀୟ ଆଲୋଚନା ସଭା ଅନୁଷ୍ଠିତ ହେଉଥିଲା । ପ୍ରକୋଷ୍ଠ ଦ୍ୱାର ଗୁଡ଼ିକର ଉର୍ଦ୍ଧ୍ୱାଂଶରେ ଜୈନ ଧର୍ମର କେତେକ ଉପାଖ୍ୟାନ ଏବଂ ଖାରବେଳଙ୍କ ରାଜତ୍ୱର କେତେକ ଘଟଣା ଚିତ୍ରାକାରରେ ଖୋଦିତ ହୋଇଛି । ତାଛଡ଼ା ସ୍ଥାନେ ସ୍ଥାନେ ହସ୍ତୀ, ସିଂହ, ଅଶ୍ୱ, ମୃଗ ଓ ମର୍କଟମାନଙ୍କର ଚିତ୍ର ମଧ୍ୟ ଅଙ୍କିତ ହୋଇଛି । ଦ୍ୱାର ପ୍ରାନ୍ତରେ ସୈନିକ ରୂପି ପ୍ରହରୀମାନଙ୍କର ପ୍ରତିମୂର୍ତ୍ତି ନିଖୁଣ ଭାବେ ଖୋଦନ କରାଯାଇଛି । ତଳ ମହଲାର ସମ୍ମୁଖ ଭାଗରେ ଖାରବେଳଙ୍କ ଦିଗ୍ ବିଜୟର କେତେକ ଘଟଣା ଅଙ୍କିତ ହୋଇଅଛି । ପ୍ରଥମେ କଳିଙ୍ଗ ନଗରର ରାଜ-ଦାଣ୍ଡରେ ଖାରବେଳଙ୍କ ଚତୁରଙ୍ଗ ସେନାଙ୍କର ଯୁଦ୍ଧ ଯାତ୍ରା କରୁଥିବା ଏବଂ ରାଜପଥ ପାର୍ଶ୍ୱସ୍ଥ ଅଟ୍ଟାଳିକା ଗୁଡ଼ିକର ବାରଣ୍ଡା ଓ ଗବାକ୍ଷରେ ଦଣ୍ଡାୟମାନ ପ୍ରଜାଙ୍କର ଶୁଭେଚ୍ଛା ଜ୍ଞାପନ ଦୃଶ୍ୟ ପରିଦୃଷ୍ଟ ହୁଏ । ଅନ୍ୟ ଏକ ଚିତ୍ରରେ ଜଣେ ରାଜା ନତଜାନୁ ହୋଇ ରାଜ ଛତ୍ର ଶୋଭିତ ଖାରବେଳଙ୍କ ପାଦ ବନ୍ଦନା କରୁଥିବାର ଦୃଶ୍ୟ ରହିଛି । ତାହା ହେଉଛି ମଗଧ ରାଜ ବୃହସ୍ପତି ମିତ୍ରଙ୍କ ଆତ୍ମ ସମର୍ପଣ ଦୃଶ୍ୟ । ଅନ୍ୟ ଏକ ଚିତ୍ରରେ କଳିଙ୍ଗ ସେନା ବିଜୟୋଲ୍ଲାସରେ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ ଏବଂ ମସ୍ତକରେ ପୂର୍ଣ୍ଣ କୁମ୍ଭ ବହନ କରି ମହିଳାମାନଙ୍କର ଖାରବେଳଙ୍କୁ ଅଭିନନ୍ଦନ ଜ୍ଞାପନ ତଥା ତାଙ୍କ ପଦ ପ୍ରକ୍ଷାଳନର ଦୃଶ୍ୟ ପ୍ରଦର୍ଶିତ ହୋଇଛି ।

ଗଣେଶ ଗୁମ୍ଫାରେ ଦୁଇଟି ପ୍ରକୋଷ୍ଠ ଓ ପାଞ୍ଚଟି ସ୍ତମ୍ଭଯୁକ୍ତ ଗୋଟିଏ ବାରଣ୍ଡା ରହିଛି । ପରବର୍ତ୍ତୀ କାଳରେ ପ୍ରତିଷ୍ଠିତ ହୋଇଥିବା ଗଣେଶ ମୂର୍ତ୍ତି ସମ୍ମୁଖସ୍ଥ ଅଂଶକୁ ଅଧିକ ପ୍ରସିଦ୍ଧ

କରିବା ନିମନ୍ତେ ଦୁଇଟି ସ୍ତମ୍ଭ ଅପସାରଣ କରିଥିଲେ । ଗୁମ୍ଫାର ପ୍ରତ୍ୟେକ ପ୍ରକୋଷ୍ଠକୁ ଦୁଇଟି ଲେଖାଏଁ ଦ୍ୱାରେଟି ପ୍ରବେଶ ଦ୍ୱାର ରହିଛି । ଦ୍ୱାରଗୁଡ଼ିକର ଉର୍ଦ୍ଧ୍ୱଭାଗରେ ବିଭିନ୍ନ ଚିତ୍ର ଅଙ୍କିତ ହୋଇଛି । ଦ୍ୱାରଦେଶରେ ଦୁଇଟି ହସ୍ତୀ ଦ୍ୱାରପାଳ ରୂପେ ଦଣ୍ଡାୟମାନ । ମଧ୍ୟ ଯୁଗରେ ଡାହାଣ ପ୍ରକୋଷ୍ଠରେ ଗଣେଶ ମୂର୍ତ୍ତି ଏବଂ ବାମ ପ୍ରକୋଷ୍ଠରେ ଯୋଗ ମୁଦ୍ରାରେ ଗୋଟିଏ ତୀର୍ଥଙ୍କର ମୂର୍ତ୍ତି ଖୋଦିତ ହୋଇଥିଲା । ଗଣେଶଙ୍କ ମୂର୍ତ୍ତି ଅନୁସାରେ ଗୁମ୍ଫାଟିର ନାମ ଗଣେଶ ଗୁମ୍ଫା ହୋଇଥିଲା । ଗଣେଶ ମୂର୍ତ୍ତିଙ୍କ ଡାହାଣ ପଟେ ପାଞ୍ଚପଂକ୍ତି ବିଶିଷ୍ଟ ଏକ ଶିଳା-ଲେଖ ଖୋଦିତ ହୋଇଛି । ଭୌମରାଜା ପ୍ରଥମ ଶାନ୍ତିକରଙ୍କ ରାଜତ୍ୱରେ ୨୭ ଖ୍ରୀ ଅ ରେ ରାଜ ବିନୟକ ସିମ୍ଭ ଏବଂ ତାଙ୍କ ପୁତ୍ର ନନ୍ନଟଙ୍କ ଦ୍ୱାରା ଏହି ଶିଳାଲେଖଟି ଉତ୍କୀର୍ଣ୍ଣ ହୋଇଥିଲା (୨୭) । ଏହି ଗୁମ୍ଫାରେ ଖୋଦିତ ଚିତ୍ରଗୁଡ଼ିକ ମଧ୍ୟରେ ନାରୀ ଓ ପୁରୁଷ ମଧ୍ୟରେ ଯୁଦ୍ଧ ଏବଂ ଶେଷରେ ପୁରୁଷ ଦ୍ୱାରା ନାରୀ ହରଣର ଦୃଶ୍ୟ ପ୍ରଦର୍ଶିତ ହୋଇଛି । ଅନ୍ୟ ଗୋଟିଏ ଚିତ୍ରରେ ଭବ ଭାସଙ୍କ ପ୍ରଣୀତ 'ସ୍ୱପ୍ନ—ବାସବଦତ୍ତା' ଆଖ୍ୟାନଟି ପରିଦୃଷ୍ଟ ହୁଏ ।

ଖଣ୍ଡଗିରିର ଅନନ୍ତ ଓ ତାତ୍ୱା (ତାତୋଆ) ଗୁମ୍ଫା ଦ୍ୱୟ ଖାରବେଳଙ୍କ ସମସାମୟିକ ଏବଂ ଅନ୍ୟାନ୍ୟ ଗୁମ୍ଫା ଗୁଡ଼ିକ ମଧ୍ୟ ପରର । ଅନନ୍ତ ଗୁମ୍ଫା ଉଚ୍ଚ ସମତଳ ସ୍ତମ୍ଭ ବିଶିଷ୍ଟ ଏକ ଦୀର୍ଘାକାର ପ୍ରକୋଷ୍ଠ । ତାହା ସମ୍ମୁଖସ୍ଥ ପ୍ରାଙ୍ଗଣ ଜୈନଭିକ୍ଷୁ ଓ ଉପାସକ ମାନଙ୍କ ଧର୍ମସଭା ପୀଠରୂପେ ବ୍ୟବହୃତ ହେଉଥିବା ଅନୁମାନ କରାଯାଏ । ଅନନ୍ତ ଗୁମ୍ଫାରେ ସ୍ତମ୍ଭ ଓ ତୋରଣ ଦ୍ୱାରା ସୁସଜ୍ଜିତ ଚାରୋଟି ପ୍ରବେଶ ପଥ ରହିଛି । ସ୍ତମ୍ଭ ଗୁଡ଼ିକରେ ଖୋଦିତ ଚିତ୍ରଗୁଡ଼ିକ ମଧ୍ୟରେ ପୂର୍ଣ୍ଣକୁମ୍ଭ, ଉଲଟ ପଦ୍ମ ତୋରଣଧାରୀ ବିଭିନ୍ନ ପ୍ରାଣୀ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଅନନ୍ତ ଗୁମ୍ଫାରେ ପ୍ରଥମେ ଖାରବେଳ ଆର୍ଯ୍ୟ-ପାରସିକ ଶୈଳୀରେ ସ୍ତମ୍ଭମାନ (Indo-Persipolitan Pillars) ନିର୍ମାଣ କରିଥିଲେ । ଅନନ୍ତ ଗୁମ୍ଫାର ତୋରଣ ଗୁଡ଼ିକ ମଧ୍ୟ ନାନା କାରୁକାର୍ଯ୍ୟରେ ପରିପୂର୍ଣ୍ଣ । ପ୍ରଥମ ତୋରଣରେ ପଦ୍ମ ଏବଂ ପୁଷ୍ପମାଲ୍ୟ, ଦ୍ୱିତୀୟ ଓ ତୃତୀୟ ତୋରଣରେ ସିଂହ ଓ ବୃଷଭଙ୍କ ସହ ପକ୍ଷମାନଙ୍କର ରଣ କ୍ରୀଡ଼ା ଏବଂ ଚତୁର୍ଥ ତୋରଣରେ ଶତଦଳ ସହ ଉଡ଼ନ୍ତାସ୍ୱମାନ ମରାଳ ମାଳିନୀଙ୍କ ଦୃଶ୍ୟ ଉତ୍କୀର୍ଣ୍ଣ କରାଯାଇଛି ।

ଅନନ୍ତ ଗୁମ୍ଫାର ବହିର୍ଭାଗ କାନ୍ଥର ଉର୍ଦ୍ଧ୍ୱାଂଶ ମଧ୍ୟ ବିବିଧ ଚିତ୍ରରେ ପରିପୂର୍ଣ୍ଣ । ସେଗୁଡ଼ିକ ମଧ୍ୟରୁ ପ୍ରଥମ ଚିତ୍ରଟିରେ ଚତୁର୍ଦନ୍ତ ବିଶିଷ୍ଟ ବିଶାଳକାୟ ରାଜହସ୍ତୀର ଉଭୟ ପାର୍ଶ୍ୱରେ ଦୁଇଟି ହସ୍ତିନୀ ଶୁଣ୍ଢରେ ନୀଳୋତ୍ପଳ ଦଳ ଧାରଣ କରିଛନ୍ତି । ଦ୍ୱିତୀୟ ଚିତ୍ରରେ ଚାରୋଟି ଅଶ୍ୱଯୁକ୍ତ ରଥରେ ଉପବିଷ୍ଟ ସୂର୍ଯ୍ୟଦେବ, ତାଙ୍କର ପତ୍ନୀଦ୍ୱୟ ସଂଜ୍ଞା ଓ ଛାୟାଦେବୀ ଏବଂ ରାକ୍ଷସ ପ୍ରଦର୍ଶିତ ହୋଇଛନ୍ତି । ଏହି ଚିତ୍ରରେ ଚନ୍ଦ୍ର ଏବଂ ନକ୍ଷତ୍ର ଖଚିତ ଆକାଶ ମଧ୍ୟ ଅଙ୍କିତ ହୋଇଛି । ସୂର୍ଯ୍ୟଙ୍କର ପ୍ରାଚୀନ ମୂର୍ତ୍ତିଗୁଡ଼ିକ ମଧ୍ୟରେ ଅନନ୍ତ ଗୁମ୍ଫାର ସୂର୍ଯ୍ୟମୂର୍ତ୍ତି ଅନ୍ୟତମ । ତୃତୀୟ ଚିତ୍ରରେ ପଦ୍ମାସନା ଗଜଲକ୍ଷ୍ମୀଙ୍କ ଚିତ୍ର ଏବଂ ଚତୁର୍ଥ ଚିତ୍ରରେ ଜଣେ ନାରୀ ନିଜ ସହଚରୀମାନଙ୍କ ସହ ବୃକ୍ଷ (କଳ୍ପବୃକ୍ଷ) ପୂଜା କରୁଥିବାର ଦୃଶ୍ୟ ଖୋଦିତ

ହୋଇଛି । ତୋରଣ ଗୁମ୍ଫକର ଉଭୟ ପାର୍ଶ୍ୱରେ ପଞ୍ଚଫଣା ବିଶିଷ୍ଟ ସର୍ପର ଚିତ୍ର ଅଛି । ପାର୍ଶ୍ୱନାଥଙ୍କ ଲାଞ୍ଛନ ହେଉଛି ସର୍ପ । ତେଣୁ ଅନନ୍ତ ଗୁମ୍ଫା ପାର୍ଶ୍ୱନାଥଙ୍କୁ ଉତ୍ସୃଷ୍ଟ ହୋଇଥିବା ସୂଚିତ ହୁଏ । ଅନନ୍ତ ଗୁମ୍ଫାର ଅନ୍ତର୍ଭାଗ କାନ୍ଥରେ ନନ୍ଦପଦ, ଶ୍ରୀବତ୍ସ, ସ୍ୱସ୍ତିକ, ବୃକ୍ଷଚୈତ୍ୟ ପ୍ରଭୃତ ଜୈନଧର୍ମର ପବିତ୍ର ଚିହ୍ନ ଖୋଦିତ ହୋଇଛି । ସେହିଠାରେ ଚ୍ଛମରଧାରୀ ଓ ବିଦ୍ୟାଧରଙ୍କ ସମେତ ଏକ ଅସମ୍ପୂର୍ଣ୍ଣ ତୀର୍ଥଙ୍କର ମୂର୍ତ୍ତି ଦେଖିବାକୁ ମିଳେ । ଗୁମ୍ଫାର ବାରଣ୍ଡା ଉପରେ ଥିବା ଅଭିଲେଖରୁ ଜଣାଯାଏ ଯେ ଅନନ୍ତ ଗୁମ୍ଫାଟି ଦୋହଦ ଶ୍ରମଣଙ୍କ ନିମନ୍ତେ ଖୋଳାଯାଇଥିଲା—

"ଦୋହଦ ଶମଣ [ ୧ ]ନଂ ଲେଣଂ"

ବାରଣ୍ଡା ବାହାର ପାହାଡ ଦେହରେ ଅନ୍ୟ ଏକ ଲିପି ଅଛି । ସେଥିରୁ କେତେକ ଅକ୍ଷର ଲିଭିଗଲାଣି । ଲିପିଟି ହେଲା '— X x X କୋଠାଜେୟା X ' (୪୮)

ଅନନ୍ତ ଗୁମ୍ଫା ନିକଟରେ ତାତ୍ତ୍ୱା (ତାତୋଓ୍ୱା, ଗୁମ୍ଫା ଦ୍ୱୟ ତଳ ଉପର ହୋଇ ରହିଛି । ସମ୍ମୁଖରେ ସ୍ତମ୍ଭ ଶୋଭିତ ବାରଣ୍ଡା ରହିଛି । ପ୍ରଥମ ତାତ୍ତ୍ୱା ଗୁମ୍ଫାରେ ଦୁଇଟି ପ୍ରବେଶ ଦ୍ୱାର ଅଛି । ଗୁମ୍ଫାଟିର ଛାତ ସମତଳ ଏବଂ ଚଟାଣଟି ପଛ ପଟକୁ ଉଚ୍ଚ ଓ ଆଗ ପଟକୁ ଗଡ଼ାଣିଆ ହୋଇଛି । ଦୁଇଟି ତୋରଣରେ ସୁନ୍ଦର ଚିତ୍ର ରହିଛି । ଡ଼ାହାଣ ତୋରଣରେ ଦୁଇଟି ତାତ୍ତ୍ୱା (ଶୁକ ପକ୍ଷୀ) ର ଚିତ୍ର ଖୋଦିତ ହୋଇଛି । ବାରଣ୍ଡା ସମ୍ମୁଖରେ ଧୋତି ଚଦର ପରିହିତ ଦୁଇଟି ଦ୍ୱାରପାଳ ରହିଛନ୍ତି । ଉଭୟଙ୍କ ହାତରେ ଖଣ୍ଡା ଅଛି । ତୋରଣ ଦୁଇଟିର ମଧ୍ୟ ଭାଗରେ ଦ୍ୱାର ଉପରେ ଉତ୍କୀର୍ଣ୍ଣ ଶିଳାଲେଖରୁ ଜଣାପଡ଼େ ଯେ ତତ୍ତ୍ୱା ଗୁମ୍ଫାଦ୍ୱୟର ନିର୍ମାତା ଥିଲେ ଖାରବେଳଙ୍କ ପାଦମୂଳିକ (ରାଜ ପଦାଶ୍ରିତ) କୁସୁମ । —' ପାଦ ମୂଳିକସ କୁସୁମସ ଲେଣଂ '(୪୧)'

ଦ୍ୱିତୀୟ ତାତ୍ତ୍ୱା ଗୁମ୍ଫାଟି ପ୍ରଥମଟି ଅପେକ୍ଷା ଆକାରରେ ବଡ଼ ଏବଂ ତାହାର ଅଳ୍ପ ଉପରେ କିଛି ଦୂରରେ ଅବସ୍ଥିତ । ଦ୍ୱିତୀୟ ତାତ୍ତ୍ୱା ଗୁମ୍ଫାରେ ପାଞ୍ଚୋଟି ପ୍ରବେଶ ଦ୍ୱାର ତୋରଣ ଦ୍ୱାର ସୁଶୋଭିତ । ସମ୍ମୁଖରେ ଦୁଇଟି ସ୍ତମ୍ଭଯୁକ୍ତ ବାରଣ୍ଡା ରହିଛି । ପ୍ରତ୍ୟେକ ତୋରଣ ଉପରେ ନନ୍ଦପଦ ଚିହ୍ନ ଅଛି । ଡ଼ାହାଣ ଓ ମଝି ତୋରଣରେ ଦୁଇଟି ଚଭୁଆ ଓ ଦୁଇଟି ଚକୁଆ (ଚକ୍ରବାକ)ଙ୍କ ଚିତ୍ର ଅଛି । ତୋରଣର ନିମ୍ନଭାଗରେ ମଣ୍ଡୁଫେଣା, ପୁଷ୍ପହାର ଓ ପଦ୍ମ ଓ ପଦ୍ମକଢ଼ର ଚିତ୍ର ଖୋଦିତ ହୋଇଛି । ଭିତର ପଛ ପଟ କାନ୍ଥରେ ଏକ ଲିପି ଖୋଦିତ ହୋଇଛି । ତାହାର ଅଧିକାଂଶ ଅକ୍ଷର ଲିଭିଗଲାଣି । ଲିପିଟି ହେଲା— ' X x x x ' ସ୍ୱପୁତସ କସ୍ୟା x X x ' ସେହି କାନ୍ଥର ଅନ୍ୟଏକ ସ୍ଥାନରେ ଛଅଧାଡ଼ି ବିଶିଷ୍ଟ ବ୍ରାହ୍ମୀ ବର୍ଣ୍ଣମାଳା ଖୋଦିତ ହୋଇଛି । ଡ଼ : ନବୀନ କୁମାର ସାହୁଙ୍କ ମତରେ (୫୦) ସମ୍ଭବତଃ ତାହା ଥିଲା ନିରକ୍ଷରମାନଙ୍କୁ ଲିପି ଶିକ୍ଷା ଦେବାର ଏକ ବ୍ୟବସ୍ଥା ।

ଖାରବେଳଙ୍କ ସମୟରୁ ଭାରତରେ ଜୈନଧର୍ମର ପ୍ରଧାନ ପୀଠରୂପେ ପ୍ରସିଦ୍ଧ ଉଦୟଗିରି ଓ ଖଣ୍ଡଗିରିର ଗୁମ୍ଫା ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ଅଭିଲେଖ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ପ୍ରତ୍ନତତ୍ତ୍ୱବିତ୍, ଐତିହାସିକ, କଳିତତ୍ତ୍ୱବିତ୍ ତଥା ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରେ । ଏହି ଜୈନ ଗୁମ୍ଫା ସମୂହ ଏବଂ ତହିଁସ୍ଥ ବିଭିନ୍ନ ଚିତ୍ରାବଳୀ ଓ ଶିଳାଲିପି କେବଳ ଖାରବେଳଙ୍କ ଧର୍ମାନୁରାଗ ଓ ପ୍ରାଚୀନ ଉତ୍କଳୀୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ କଳା କୌଶଳର ମୂକ ସାକ୍ଷୀ ରୂପେ ଦଣ୍ଡାୟମାନ ନୁହେଁ, ତାହା ଖାରବେଳଙ୍କୁ ଏକାଧାରରେ ଜଣେ ଦେଶପ୍ରାଣ, ସ୍ୱଦେଶ ବତ୍ସଳ, ଓ ପ୍ରଜାବତ୍ସଳ ଶାସକ, ଦିଗ୍‌ବିଜୟୀ ବୀର, କଳାନୁରାଗୀ ତଥା ଜୈନ-ଧର୍ମ ଓ ସଂସ୍କୃତିର ସର୍ବଶ୍ରେଷ୍ଠ ପୃଷ୍ଠପୋଷକ ରୂପେ ପ୍ରତିପାଦିତ କରେ । ଯଥାର୍ଥରେ ସେ ଥିଲେ ପ୍ରାଚୀନ କଳିଙ୍ଗର କୁଶଳୀ ସୂତ୍ରଧର ।

**ପାଦଟୀକା :**

୧. Anguttara Nikaya, Pali Text Society I, p 213, IV, pp 252-56, ଜୈନ ଭଗବତୀ ସୂତ୍ର, ସର୍ଗ, ୧୫, ଉଦ୍ଦେଶ c.

୨. Bhandarkar, carmichael Lectures (1918), p 52, H.C. Raychoudhury, Political History of Ancient India, p 118 (5th Edition), Pargiter, Ancient Indian Historical Tradition, p 272.

୩. ଶ୍ରୀ ଜନସେନାଚାର୍ଯ୍ୟଙ୍କ ହରିବଂଶ ପୁରାଣ, ୧୬, ୮୩୮.

୪. ହରିବଂଶ, ୧୨. ୩୨.

୫. Archaeological Survey Report, vol XVI, p 69.

୬. D.C.Surcar, Geography of Ancient and Medieval India, p 55.

୭. Jataka, VI, pp 511-21

୮. ପଦ୍ମ ଚରିତ୍ରମ୍, ୫, ୧୬୮-୨୫୧, ବାରାଣସୀ, ୧୯୨୨.

୯. କଥାସରିତ୍ ସାଗର, ୧୨, ୭.

୧୦. ତିଲକ ମଞ୍ଜରୀ, ପୃ ୨୫, ନିର୍ଣ୍ଣୟ ସାଗର ପ୍ରେସ୍

୧୧. J.B.O.R.S, vol XVII, p 435,

୧୨. ଖାରବେଳଙ୍କ କାଳ ନିରୂପଣ ସମ୍ପର୍କରେ ଡ଼ : ନବୀନ କୁମାର ସାହୁଙ୍କ Orissa State Museum ଦ୍ୱାରା ପ୍ରକାଶିତ 'Kharavela', pp.32-53 ଦ୍ରଷ୍ଟବ୍ୟ । ତାହା ୧୯୮୪ ରେ ପ୍ରକାଶିତ ହୋଇଥିଲା ।

୧୩. Epigraphia Indica, volXIII, p 160.

୧୪. ଦୁର୍ଗାପ୍ରସାଦଙ୍କ ସମ୍ପାଦିତ କାମସୂତ୍ର, ପୃ ୧୩୦.

୧୫. B·M Barua ଙ୍କ ମତରେ ଏହି 'ମହା ବିଜୟ ପ୍ରାସାଦ' ଯାହା ନଗର ଭିତରେ ଗାଇରେ ନିର୍ମିତ ହୋଇଥିଲା –Indian Historical Quarterly vol XIV, p 466, p 478.

୧୬. ଡ଼ : ନବୀନ କୁମାର ସାହୁ, ଓଡ଼ିଆ ଜାତିର ଇତିହାସ, ପୃ [illegible]

୧୭. ହାତୀଗୁମ୍ଫା ଅଭିଲେଖ ୧୨ ଶ ଧାଡ଼ି ।

୧୮. B. M· Barua ଉକ୍ତ ଶିଳାଲେଖ ବୋଲି ପାଠ କରିଛନ୍ତି ।

୧୯. ହାତୀଗୁମ୍ଫା ଅଭିଲେଖ ୧୨ ଶ ଧାଡ଼ି ।

୨୦. Sasikanta, The Hathigumpha Inscription of Kharavela and the Bhabru Edict of Asoka—A critical study, p 60.

୨୧. ଏହି ପଞ୍ଚନମସ୍କାର ଭଳି ବୌଦ୍ଧ ଧର୍ମରେ ମଧ୍ୟ ତିନି ବନ୍ଦନା ରହିଛି, ଯଥା

'ବୁଦ୍ଧଂ ଶରଣଂ ଗଚ୍ଛାମି
ଧର୍ମଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି

୨୨. S. Levi, Indian Antiquery vol LV, pp 145-147, 1926.

୨୩. ଉତ୍ତରାଧ୍ୟୟନ ସୂତ୍ର, ୨୧, ୧-.

୨୪. Ptolomy, VII, 1, 1[illegible] and 93.

୨୫. N.K.Sahu, Utkal University, History of Orissa, vol I, p 353 (1961).

୨୬. Epigraphia Indica, vol XX, p 85.

୨୭. History of Orissa, vol I, pp 60-61, Indian Antiquary, vol II, p 36.

୨୮. A.C. Mittal An Early History of Orissa, p 145.

୨୯. N.K.Sahu, Utkal University History of Orissa, vol I, p 145 (1961).

୩୦. ଆବଶ୍ୟକ ସୂତ୍ର, ପୃ ୨୧୯ ୨୨୦.

୩୧. ଦଶଭକ୍ତସ୍ୟ ବୃତ୍ତି, (ଆଗମୋଦୟ ସମିତି), ପୃ, ୨୧୮ ୨୨୦; J.B.O.R S, vol III, p 223.

୩୨. S N.Rajguru, Inscriptions of Orissa, vol I, part II, pp 4-6.

୩୩. Epigraphia Indica, vol III, pp 127-130
୩୪. A K.Rath, 'A note on the Relation of Parsvanatha and Mahavira with Kalinga', Indian History Congress, proceedings of the 39th session. p 140, (Hyderabad, 1978)
୩୫. Sasikant, the Hathigumpha inscription of Kharavela and the Bhabru Edict of Asoka A critical Study, pp 62-63, Delhi, 1971.
୩୬. J.B.O.R S, vol III, part IV, pp 425-505.
୩୭. Mrs Sinclair Stevenson, The Heart of Jainism, chapter VIII.
୩୮. ହାତୀଗୁମ୍ଫା ଅଭିଲେଖର ୧୪ ଶ ଧାଡ଼ି,
୩୯ ଡ଼ : ନବୀନ କୁମାର ସାହୁ, ଓଡ଼ିଆ ଜାତିର ଇତିହାସ (ପ୍ରାଚୀନ କଳିଙ୍ଗ), ପୃ ୧୪୪.
୪୦. B.M. Barua, Old Brahmi Inscriptions, pp 307-14.
୪୧. I bid, pp 91-94.
୪୨. I bid, pp 99-100.
୪୩. I bid, pp 105-106, Indian Historical Quarterly, vol XIV. No I (1938) pp 158-166,
୪୪. Select Inscriptions, B.K II, No 92, pp 213-214.
୪୫. Epigraphia Indica, vol XIII, p 160, J. Fergusson and J Burges, Cave temples of India, pp 75-76, London, 1880.
୪୬. Dr. N.K. Sahu, Kharavela, p 209.
୪୭. Epigraphia Indica, vol XIII, p 67.
୪୮. Dr N.K. Sahu, Kharavela, p 363, R.P.Mahapatra, Udayagiri and Khandagiri caves, pp 258-259 (1981)
୪୯. B.M. Barua, Old Brahmi Inscriptions pp 127-130.
୫୦. ଡ଼ : ନବୀନ କୁମାର ସାହୁ, ଓଡ଼ିଆ ଜାତିର ଇତିହାସ, ପୃ ୧୬୪.

## ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖ

ସର୍ବ ପ୍ରଥମେ ୧୮୨୦ ଖ୍ରୀ. ଅ.ରେ ଆଣ୍ଡ୍ରୁ ଷ୍ଟାର୍ଲିଙ୍ଗ (Andrew Stirling) ହାତୀଗୁମ୍ଫା ଶିଳାଲେଖର ସନ୍ଧାନ ପାଇଥିଲେ । ସେ ଏହି ବୃହତ୍ ଶିଳାଲେଖର ଏକ ଧ୍ୱସ୍ତ-

ୟୁଷ ୧ ୬୨ ରେ Asiatic Researches, vol XV ପତ୍ରିକା ଏବଂ ସ୍ୱୀୟ ଗ୍ରନ୍ଥ, "An Account, Geographical, Satistical and historical of Orissa or Cuttack" ରେ ପ୍ରକାଶ କରିଥିଲେ । ସେହିଦିନ ଠାରୁ ଏହି ଶିଳାଲେଖ ପ୍ରତ୍ନତତ୍ତ୍ୱବିତ୍ ଏବଂ ଲିପିତତ୍ତ୍ୱବିତ୍ ମାନଙ୍କର ଦୃଷ୍ଟି ଆକର୍ଷଣ କରିଅଛି । ପ୍ରଥମେ James princep ଏହି ଶିଳାଲେଖ ପାଠ କରି ତାହା ୧୮୩୭ ଖ୍ରୀ.ଅ.ରେ Journal of Asiatic Society of Bengal, vol VI, pp 1072-1022 ରେ ପ୍ରକାଶ କରିଥିଲେ । ତାଙ୍କପରେ ୧୮୬୨ ଖ୍ରୀ.ଅ ରେ Alexander cunningham ଙ୍କ ପ୍ରଣୀତ corpus Inscriptionum Indcarum vol I ଗ୍ରନ୍ଥ ଏବଂ ୧୮୮୦ ରେ ରାଜେନ୍ଦ୍ରଲାଲ ମିତ୍ରଙ୍କ ଗ୍ରନ୍ଥ Antiquities of Orissa, vol II, ଗ୍ରନ୍ଥରେ ଏହି ଶିଳାଲେଖର ପାଠ ପ୍ରକାଶ ପାଇଥିଲା । ତେବେ ପ୍ରଥମେ ପଣ୍ଡିତ ଭଗବାନ ଲାଲ୍ ଇନ୍ଦ୍ରଜୀତ୍ ଏହି ଶିଳାଲେଖ ଶୁଦ୍ଧ ଭାବରେ ପାଠ କରିଥିଲେ । ଏହି ଶିଳାଲେଖର ସଂଶୋଧିତ ପାଠ ସେ ୧୮୮୫ ଖ୍ରୀ. ଅ. ରେ ଭିଏନା ଠାରେ ଅନୁଷ୍ଠିତ ପ୍ରାଚ୍ୟବିଦ୍ୟା ବିଶାରଦଙ୍କ ଆନ୍ତର୍ଜାତିକ କଂଗ୍ରେସର ଷଷ୍ଠ ଅଧିବେଶନରେ (Sixieme congres International dis-orientalistes) ଉପସ୍ଥାପିତ କରିଥିଲେ । ତାହା 'Actes du Sixieme Congres International Das Orientalists, part III, Section-2 (1885)'ରେ ପ୍ରକାଶିତ ହୋଇଥିଲା । ତଥାପି ଏହି ଲେଖ ଦୁର୍ବୋଧ ହୋଇ ରହିଲା । କ୍ରମଶଃ ଜେ. ଜି ବୁହ୍ଲର୍ (J. G. Buhler), ଜେ. ଏଚ୍. ଫ୍ଲିଟ୍ (J.H.Fleet), ଏଚ୍ ଲ୍ୟୁଡ଼ର (H. Buder), F.W. Thomas Sten Konow ପ୍ରଭୃତି ବିଶିଷ୍ଟ ପାଶ୍ଚାତ୍ୟ ଐତିହାସିକ ଓ ଲିପିତତ୍ତ୍ୱବିତ୍ ମାନେ ବିଭିନ୍ନ ସମୟରେ ଏହି ଅଭିଲେଖ ପାଠ କରିଥିଲେ । F. W. Thomas ଏବଂ Sten Konowଙ୍କ ନୂତନ ଆଲେକ ସମ୍ବଳିତ ସଂଶୋଧିତ ପାଠୋଦ୍ଧାର ଯଥାକ୍ରମେ Annual Report of the Archaeological Survey of India, 1922-23' ଏବଂ 'Acta orientalia, vol I, pp 12-42, 1923' ରେ ପ୍ରକାଶିତ ହୋଇଥିଲା ।

ଭାରତୀୟ ଐତିହାସିକ ଓ ଲିପିବିଜ୍ଞାନୀମାନଙ୍କ ମଧ୍ୟରେ ରାଖାଲ ଦାସ ବାନାର୍ଜୀ, ପଣ୍ଡିତ କାଶୀପ୍ରସାଦ ଜୟସ୍ୱାଲ୍, ବେଣୀମାଧବ ବଡ଼ୁଆ, ଦୀନେଶଚନ୍ଦ୍ର ସରକାର, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନବୀନକୁମାର ସାହୁ ପ୍ରଭୃତି ହାତୀଗୁମ୍ଫା ଅଭିଲେଖର ପାଠୋଦ୍ଧାର କରି ଗବେଷଣାମୂଳକ ପ୍ରବନ୍ଧ ତଥା ଗ୍ରନ୍ଥମାନ ରଚନା କରିଛନ୍ତି । ୧୯୧୩ ଖ୍ରୀ. ଅ. ରେ ରାଖାଲ ଦାସ ବାନାର୍ଜୀ ହାତୀଗୁମ୍ଫା ପରିଦର୍ଶନ କରି ଅଭିଲେଖର ଏକ ଛାପ (estampage) ଉଠାଇଥିଲେ । ୧୯୧୭ ଖ୍ରୀ. ଅ.ରେ ପଣ୍ଡିତ କାଶୀପ୍ରସାଦ ଜୟସ୍ୱାଲ୍ ଉଦୟଗିରି ପରିଦର୍ଶନ କରିଥିଲେ । ସେ ଲେଖାଟିର ସମସ୍ତ ଅଂଶ ଶୁଦ୍ଧ ଭାବରେ ପାଠ କରି ତାହା

Journal of Bihar and Orissa Research Society, vol IV ରେ ପ୍ରକାଶ କରିଥିଲେ । ରାଖାଲଦାସ ବାନାର୍ଜି ଓ ପଣ୍ଡିତ ଜୟସ୍ୱାଲ୍ ମିଳିତ ଭାବରେ ହାତୀଗୁମ୍ଫା ଅଭିଲେଖ ଉପରେ ଅଧିକ ଗବେଷଣା କରି ବିବରଣମାନ ପ୍ରକାଶ କରିଥିଲେ । ଉକ୍ତ ବିବରଣମାନ Journal of Bihar and Orissa Research society, vol III, No 4 (1917), vol IV, No 1 (1918), vol XIII, Nos 3—4 (1927), vol XIV, No 1 (1928), Epigraphia Indica, vol XX, part V (1930), pp 71-89, ପ୍ରଭୃତି Journal (ପ୍ରତ୍ରିକା)ରେ ପ୍ରକାଶିତ ହୋଇଛି ।

ବିଜୟଚନ୍ଦ୍ର ମଜୁମ୍‌ଦାର, ରମାପ୍ରସାଦ ଚନ୍ଦ ଏବଂ ବେଣୀମାଧବ ବଡ଼ୁଆ ପ୍ରଭୃତି ଐତିହାସିକମାନେ ଯୁକ୍ତିଯୁକ୍ତ ଭାବରେ ଜୟସ୍ୱାଲ୍‌ଙ୍କ ପାଠରେ କେତେକ ତ୍ରୁଟି ପରିଲକ୍ଷିତ କରିଥିଲେ । ସେମାନେ ଜୟସ୍ୱାଲଙ୍କ ପାଠରେ କେତେକାଂଶ ଅକାଟ୍ୟ ଯୁକ୍ତି ଦ୍ୱାରା ଅଗ୍ରାହ୍ୟ କରିଥିଲେ । ୧୯୨୯ରେ ବେଣୀମାଧବ ବଡ଼ୁଆ ହାତୀଗୁମ୍ଫା ସମେତ ଅନ୍ୟାନ୍ୟ ଗୁମ୍ଫାରେ ଖୋଦିତ ଅଭିଲେଖର ସମ୍ପାଦନା କରିଥିଲେ Old Brahmi Inscriptions in the Udayagiri and Khandagiri Caves' ନାମକ ଗ୍ରନ୍ଥରେ । ବିଖ୍ୟାତ ଲିପିତତ୍ତ୍ୱବିତ୍ ଦୀନେଶଚନ୍ଦ୍ର ସରକାରଙ୍କ 'Select Inscriptions Bearing on Indian History and Civilization, vol-I—From the Sixth century B-C to the sixth century A-D I (1942) ଗ୍ରନ୍ଥରେ ମଧ୍ୟ ହାତୀଗୁମ୍ଫା ଅଭିଲେଖ ସମ୍ପର୍କରେ ବହୁ ଗବେଷଣାମୂଳକ ଲେଖାମାନ ରହିଛି ।

ହାତୀଗୁମ୍ଫା ଶିଳାଲେଖରେ ୧୭ଟି ଧାଡ଼ି ଅଛି । ପ୍ରତ୍ୟେକ ଧାଡ଼ିରେ ୯୦ ରୁ ୧୦୦ ପର୍ଯ୍ୟନ୍ତ ଅକ୍ଷର ଖୋଦିତ ହୋଇଛି । ଶିଳାଲେଖଟିର ଦୈର୍ଘ୍ୟ ୪.୭୪ ମିଟର ଏବଂ ପ୍ରସ୍ଥ ୧୭ ମିଟର । କାଳର କରାଳ ଗତିରେ ଅଭିଲେଖଟିର କେତେକାଂଶ ବିନଷ୍ଟ ହୋଇଯାଇଥିବାରୁ ଅଦ୍ୟାବଧି ତାହାର ସମ୍ପୂର୍ଣ୍ଣ ନିର୍ଭୁଲ ପାଠୋଦ୍ଧାର ହୋଇପାରିନାହିଁ । ହେଲେ ହେଁ ଉପରୋକ୍ତ ଐତିହାସିକ ଓ ଲିପି ତତ୍ତ୍ୱବିତ୍‌ମାନଙ୍କ ଉଦ୍ୟମ ଫଳରେ ଅଭିଲେଖର ପୂର୍ଣ୍ଣାଙ୍ଗ ପାଠୋଦ୍ଧାର ଅନେକାଂଶରେ ସଠିକ୍ ଭାବରେ ହୋଇପାରିଛି ।

ହାତୀଗୁମ୍ଫା ଶିଳାଲେଖ ଖାରବେଳଙ୍କ ଏକ ସମୟାନୁକ୍ରମିକ ତଥା ଧାରାବାହିକ ଜୀବନ ବୃତ୍ତାନ୍ତ । ଅଶୋକ, ଚନ୍ଦ୍ରଗୁପ୍ତ କିମ୍ବା ଅନ୍ୟ କୌଣସି ରାଜାଙ୍କ ଅଭିଲେଖରେ ଏପରି ସମୟାନୁକ୍ରମିକ ତଥା ଧାରାବାହିକ ଭାବରେ ଘଟଣାବଳୀ ଲିପିବଦ୍ଧ ହୋଇନାହିଁ । ଏ ଦୃଷ୍ଟିରୁ ହାତୀଗୁମ୍ଫା ଶିଳାଲେଖ ଅଦ୍ୱିତୀୟ । ଏଭଳି ଶିଳାଲେଖ ଦ୍ୱାରା ଧାରାବାହିକ ଇତିହାସ ସଙ୍କଳନ ସହଜ ଓ ସୁଗମ ହୋଇଥାଏ ।

ହାତୀଗୁମ୍ଫା ଅଭିଲେଖରେ ଖୋଦିତ ଅକ୍ଷରଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା—

| | | | | | | | | |
|---|---|---|---|---|---|---|---|---|
| 𑀅 | 𑀆 | 𑀇 | 𑀈 | 𑀉 | 𑀊 | 𑀏 | 𑀐 | 𑀑 |
| (ଅ) | (ଆ) | (ଇ) | (ଈ) | (ଉ) | (ଊ) | (ଏ) | (ଐ) | (ଓ) |
| 𑀓 | 𑀔 | 𑀕 | 𑀖 | 𑀘 | 𑀙 | 𑀚 | 𑀝 | 𑀞 |
| (କ) | (ଖ) | (ଗ) | (ଘ) | (ଚ) | (ଛ) | (ଜ) | (ଟ) | (ଠ) |
| 𑀟 | 𑀡 | 𑀢 | 𑀣 | 𑀤 | 𑀥 | 𑀦 | 𑀧(𑀧) | 𑀩 |
| (ଡ) | (ଣ) | (ତ) | (ଥ) | (ଦ) | (ଧ) | (ନ) | (ପ) | (ବ) |
| 𑀪 | 𑀫 | 𑀬 | 𑀭 | 𑀮 | 𑀯(𑀯) | | 𑀲 | 𑀳 |
| (ଭ) | (ମ) | (ଯ) | (ର) | (ଲ) | (ବ)/(ଵ) | | (ସ) | (ହ) |

ହାତୀଗୁମ୍ଫା ଅଭିଲେଖର ପାଠୋଦ୍ଧାର ନିମ୍ନରେ ପ୍ରଦତ୍ତ ହେଲା—

୧ମ ଧାଡ଼ି - ★ ନମୋ ଅର (୧) ହଂତାନମ [I] ନମେ ସବସିଧାନଂ [II] ଐରେଣ ମହାରଜେନ ମହାମେଘ ବାହନେନ ଚେତ (୨) ରାଜବସ ବଧନେନ ପସଥସୁଭଲଖନେନ (୩) ଚତୁରଂତ ଲୁଠ [ଣ] ଗୁଣ ଉପେତେନ (୪) କଲିଙ୍ଗାଧିପତିନା ସିରି ଖାରବେଲେନ

୨ୟ ଧାଡ଼ି—[ପ] ଦରସ ବସାନି ସିରିକଡ଼ାର ସରିରବତା କୀଡ଼ିତା କୁମାର କୀଡ଼କା [II] ତତୋ ଲେଖ-ରୂପ-ଗଣନା-ବ୍ୟବହାର-ବିଧି ବିସାରଦେନ ସବବିଜା-ବଦାତେନ ନବ ବସାନି ଯୋବରଜଂ (୫) ପସାସିତାଂ (୬) .ସଂପୁଣ ଚତୁ-ବିସତି ବସୋ ତଦାନି ବଧମାନ ସେସୟୋବନାଭି ବିଜୟୋ ତତିୟେ

୩ୟ ଧାଡ଼ି—କଲିଙ୍ଗ ରାଜବଂସେ ପୁରିସୟୁଗେ ମହାରାଜ ଭିସେଚନଂ ପାପୁନାତି (୭) [II] ଅଭିସିତୋମତୋଚ ପଧମେ ବସେ ବାତ ବିହତ (୮)-ଗୋପୁର -ପାକାର-ନିବେସନଂ ପଟିସଂଖାରୟତି କଲିଙ୍ଗ ନଗରି ଖିବୀର (୮) [·]-ସୀତଲ ତଡ଼ାଗ-ପାଡ଼ିୟୋଚ ବଂଧାପୟତି ସବୁୟାନ ପ [ଟି] ସଂଠପନଂ (୯) ଚ

୪ର୍ଥ ଧାଡ଼ି—କାରୟତି ପନତିସାହି ସତ—ସହସେହି [II] ପକତିୟୋ ଚ ରଂଜୟତି [II] ଦୁତିୟେ ଚ ବସେ ଅଚତୟିତା ସାତକନିଂ (୧୦) ପଛିମ-ଦିସଂ ହୟ-ଗଜ-ନର-ରଧବହୁଲଂ ଦଂଡଂ ପଠାପୟତି [II] କହ୍ନବେଣାଂ ଗତାୟ

(୧୧) ଚ ସେନାୟ ବତାସିତଂ (୧୨) ଅସିକ ନଗରଂ (୧୩) [II] ତତୀୟେ ପୁନ ବସେ

୫ ମ ଧାଡ଼ି—ଗଂଧବ ବେଦ-ବୁଧୋ ଦଂପ-ନତ-ଗୀତ-ବାଦିତ-ସଂଦସନାହି ଉସବ-ସମାଜ-କାରାପନାହି-ଚ କୀଡ଼ାପୟତି ନଗରିଂ (୧୪) [II] ତଥା ଚବୁଥେ ବସେ ବିଜାଧରାଧିବାସଂ ଅହତପୁବଂ (୧୫) କଲିଙ୍ଗ ପୁବରାଜ ନିବେସିତଂ (୧୬) ..ବିତଧ ମୁକୁଟେ ସବିଲମଢିତେ (୧୭) ଚ ନିଖିତ ଛତ

୬ ଷ୍ଠ ଧାଡ଼ି—ଭିଙ୍ଗାରେ ହିତରତନ ସାପତେୟେ ସବ ରଠିକ ଭୋଜକେ ପାଦେ ବଂଦାପୟତି [II] ପଂଚମେ ଚ ଦାନି ବସେ ନନ୍ଦରାଜ ତିବସସତ ଓଘାଟିତଂ ତନସୁଲିୟ ବାଟା ପନାଡ଼ିଂ ନଗରଂ ପବେସ [ୟ] ତି ସୋ .. (୧୮) [II] ଅଭିସିତୋ ଚ ଛଟେ ବସେ ରାଜସେୟଂ (୧୯) ସଂଦସୟଂ ତୋ

୭ ମ ଧାଡ଼ି—ସବ-କର-ପଣ-ଅନୁଗହ-ଅନେକାନି ସତ ସହସାନି ବିସଜତି ପୋର (୨୦) ଜାନପଦଂ [II] ସତମେ ଚ ବସେ ପସାସତୋ (୨୧) ବଜିର ଘର ବଠି ଧୁସିତ ଘରିନି ସାମତୁକ ପଦଅଂଣ ସଂତପଦ (୨୨) [II] ଅଠମେ ଚ ବସେ ମହତି-ସେନାୟ ମଧୁରଂ ଅନୁପତୋ ଗୋରଧଗିରିଂ

୮ ମ ଧାଡ଼ି—ଘାତପୟିତା ରାଜଗହାନଂ (୨୩) ପପୀଡ଼ାପୟତି [II] ଏତିନଂ (୨୪) ଚ କଂମ-ପଦାନ ପନାଦେନ (୨୫) ସଂତତ (୨୬) ସେନ-ବାହନେ ବିପମୁଂଚତୁଂ ମଧୁରଂ ଅପଯାତୋ ଯବନ ରାଜ (୨୭) ..ମ . (୨୮) ସବ ଘରବାସିନଂ ଚ ସବ ଗହପତିନଂ ଚ ପାନଭୋଜନଂ ଦଦାତି [II] କଲିଂଗଯାତି ପଲବଭର-

୯ ମ ଧାଡ଼ି—କପରୁଖେ (୨୯)-ହୟ-ଗଜ-ନର-ରଧ ସହଯାତି (୩୦) ସବଘର ବାସିନଂ (୩୧) ଚ ସବରାଜ ଭତକାନଂଚ ସବ ଗହପତି କାନଂଚ ସବ ବଂହ୍ମଣାନଂଚ ପାନ-ଭୋଜନଂ ଦଦାତି [II] ଅରହତାନଂ (ନଗଂଆନଂ) ସମଣାନଂ ଚ .. ଦଦାତି ସତସହ ସେହି [II] ନବମେ ଚ ବସେ

୧୦ ମ ଧାଡ଼ି—ବେଡ଼ୁରିୟ-କଲିଙ୍ଗ-ରାଜନିବାସଂ (୩୨) ମହାବିଜୟ ପାସାଦଂ କାରୟତି ଅଠତିସାୟ ସତ ସହ ସେହି [II] ଦଶମେ ଚ ବସେ କଲିଙ୍ଗ ରାଜବଂସାନଂ ତତୀୟ-ଯୁଗ-ସଗାବସାନେ କଲିଂଗ-ପୁବରାଜାନଂ ଯସସକାରଂ କାରାପୟତି ସତଶହ ସେହି ][I] ଏକାଦସମେ ଚ ବସେ (୩୩)...ପାୟାତାନାଂ(୩୪) ଚ ମଣି ରତନାନି ଉପଲଭତେ (୩୫) [II]

୧୧ ଶ ଧାଡ଼ି—କଲିଂଗ (୩୬) ପୁବରାଜନିବେସିତଂ (୩୭) ପିଥୁଣ୍ଡ ଗଧବନଂଗଳେନ କାସୟତି (୩୮) [II] ଜନପଦ ଭାବନଂ (୩୯) ଚ ତେରସ-ବସ-ସତ-କତଂ ଭିଦତି ତମିର ଦେହ (୪୦) ସଘାତଂ [II] ବାରସମେ ଚ ବସେ [ସେନାହି] (୪୧) ସତ ସହ ସେହି ବିତାସୟତି ଉତରାପଧ ରାଜାନୋ

୧୨ ଶ ଧାଡ଼ି—ମାଗଧାନାଂ (୪୨) ଚ ବିପୁଲଂ ଭୟଂ ଜନୟତୋ ହଥୀସଂ (୪୩) ଗଙ୍ଗାୟ ପାୟୟତି [II] ମଗଧାନଂ ଚ ରାଜାନଂ ବହସତିମିତଂ ପାଦେ ବଂଦାପୟତି [II] ନଂଦ ରାଜ-ନୀତଂ କାଲିଙ୍ଗ ଜିନଂ (୪୪)ସନିବେସଂ — ରାଜଗହ-ରତନାନ ପଡିହାରେହି (୪୫) ଅଙ୍ଗ ମାଗଧ ବସୁଂଚ ନୟତି (୪୬) [II]

୧୩ ଶ ଧାଡ଼ି —ଖାସ୍ତ-ଜଠର-ଲଖିଲ-ଗୋପୁରାନ ସିହରାନ ନିବେସୟତି [II] ସତ-ବାସ୍ତିକା ରତନଂ ପେସୟଂତି [II] ଅଭୁତଂ ଅଛରିୟଂ ହଥୀସ-ପସବଂ ପରିହରଂତି [II] ମିଗ-ହୟ-ହଥୀ ଉପନାମୟଂତି [II] ପଣ୍ଡ୍ୟ ରାଜା ବିବିଧାଭରଣାନ ମୁତା-ମଣି-ରତନାନ ଆହରାପୟତି ଇଧ ସତ ସହସାନ [II]

୧୪ ଶ ଧାଡ଼ି — ... ..ସିନୋ ବସୀ କରୋତି [II] ତେରସମେ ଚ ବସେ ସୁପବତ-ବିଜୟ ଚକେ କୁମାରୀ-ପବତେ ଅରହତେ ପରୀନବସତେ ହି କାୟନିସୀଦୀୟାୟା-ପୂଜାବକେହି (୪୭) ରାଜଭିତିନଂ ଚିନ ବତାନ ବସାସିତାନଂ (୪୮) ପୂଜା-ନୁରତ(୪୯) ଉବାସଗ [ଖା] ର ବେଲ ସିରନା ଜୀବଦେହ ସୟିକା (୫୦) ପରିଖାତା (୫୧) [II]

୧୫ ଶ ଧାଡ଼ି—ସତ-ଦଶ-ଲେଣ ସତଂ କାରାପିତଂ [II] ସକତ (୫୨) ସମଣ ସୁବିହିତାନଂ ଚ ସବ-ଦିସାନଂ (୫୩) ଯତିନଂ ତାପସ-ଇସିନଂ ସଂଘିୟନଂ ଅରହତ ନିସୀଦିୟା ସମୀପେ ପଭାରେ (୫୪) ଚ ବରାକର ସମୁଥାପିତାହି ଅନେକ ଯୋଜନାହିତାହି ପନତୀସାହି-ସତ-ସହସାହି ସିଲାହି ସିଂହପଥ ରାନି ସିନ୍ଧୁଲାୟ ନିସୟାନି (୫୫)

୧୬ ଶ ଧାଡ଼ି —ପଟଲକ (୫୬) ଚତରେ (୫୭) ଚ ବେଡୁରିୟ ଗଭେଥଭେ (୫୮) ପତିଥାପୟତି ପନତରିୟ ସତ ସହ ସେହି [II] ବେଡୁରିୟ-ନୀଲ ବୋଛିନଂ (୫୯) ଚ ଚୋୟଠ ଅଙ୍ଗ (୬୦) ସଂତିକଂ (୬୧) ତୁରିୟଂ ଉପାଦୟତି [II] ଖେମରାଜା ସ ବଢରାଜା (୬୨)ସ ଭିଖୁରାଜା ସ ଧମରାଜା ପସଂତୋ ସୁନଂତୋ ଅନୁଭବଂତୋ କଲାଣାନି

୧୭ ଶ ଧାଡ଼ି—ଗୁଣବିସେସ କୁସଲୋ ସବ ପାସଂଡ ପୂଜକୋ ସବଦେବାୟତନ ସକାର (୬୩) କାରକୋ ଅପତିହତ-ଚକ-ବାହନ-ବଲୋ (୬୪) ଚକଧରେ (୬୫) ଗୁତଚକୋ ପବତ ଚକୋ ରାଜସି ବସୁ କୁଲ (୬୬) ବିନିସିତୋ (୬୭) ମହାବିଜୟୋ ରାଜା ଖାରବେଲ ସିରି [II]

**ପାଦଟୀକା**

* ପ୍ରଥମ ପାଞ୍ଚଟି ଧାଡ଼ିର ବାମ ପଟେ ଉପରେ ବଜ୍ର ମଙ୍ଗଳ ଓ ତଳେ ସ୍ୱସ୍ତିକ ଚିହ୍ନ ଖୋଦିତ ହୋଇଛି ।

୧. କେ ପି ଜସ୍ୱାଲ – ଅସ୍ତ

୨. ଆର ଡ଼ି ବାନାର୍ଜି – ଚେଢ

୩. ବି ଏମ ବଡ଼ୁଆ – ଲଖଣେନ

୪. ଦିନେଶଚନ୍ଦ୍ର ସରକାର – ଯୋବରଜ

୫. ବଡ଼ୁଆ – ଭୃଣ ଉପେଭେନ, ଜସ୍ୱାଲ ଗୁଣୋପଗଭେନ

୬. ବଡ଼ୁଆ – ବସାସିତଂ

୭ ଜସ୍ୱାଲ୍ – ମାସ୍ୱାଗ୍ଜା ଭିସେଚନଂ

୮. ଜସ୍ୱାଲ୍ – ବାଚ-ବଦ୍ଧତ

୯. ବଡ଼ୁଆ – ପଟ୍ଟିସଠାପନଂ, ସରକାର – ପଟ୍ଟିସ୍ଥପନଂ

୧୦. ବଡ଼ୁଆ ସାତକର୍ଣିଂ, ସରକାର ସାତକଂନ

୧୧. ବଡ଼ୁଆ – କହଣବେଂନାଂ

୧୨. ବଡ଼ୁଆ – ବିଭାସିଢ

୧୩. ଜସ୍ୱାଲ୍ ଏବଂ ବାନାର୍ଜି – ମୂସିକ ନଗରଂ, ବଡ଼ୁଆ – ଅସବ ନଗରଂ

୧୪. ସରକାର – ନଗରଂ

୧୫. ବଡ଼ୁଆ – ଅରକଡ ପୁରଂ

୧୬. ବଡ଼ୁଆ – ପୁବରାଜାନଂ ଧମେନ

୧୭. ବଡ଼ୁଆ – ସବିଲମଢଳେ ଚ, ଜସ୍ୱାଲ ଓ ବାନାର୍ଜୀ; ସବିଲଂଢଳେ ଚ

୧୮. ବଡ଼ୁଆ – ସତ ସହ ସେଦ୍ଧ ଚ ଖନାପସ୍ୱଢ

୧୯ ଜସ୍ୱାଲ୍ – ରାଜସୁଯ୍ଂ, ବଡ଼ୁଆ – ରାଜସିରଂ

୨୦. ଜସ୍ୱାଲ – ପୋରଂ

୨୧. ବଡ଼ୁଆ – ଅସସଭୋ ।

୨୨. ବଡ଼ୁଆ – ବଜିର ଘର ଖଢସ୍ୱ ସତ ଘଟାନ ସ ମଢକ ପଦପନଂ ସଂଢ ପଦ...
ଜସ୍ୱାଲ – ବଜିର ଘର ବଢ ଧୂସିତ ଘରନ ସ ମଢୁକ ପଦ ଫୁଗ ।

୨୩. ତ୍ରିନେସପ୍ – ରାଜଗଭଂ
ଭନଂହାମ୍ – ରାଜଗଂଭୁ
ଇନ୍ଦ୍ରଜୀ – ରାଜଗହନପଂ

୨୪. ଇନ୍ଦ୍ରଜୀ – ଏସିନଂ

୨୫. ଜସ୍ୱାଲ୍ – ସନାଦେନ

୨୬. ପ୍ରିନ୍ସେପ୍ — ସଂବାତ; ଇନ୍ଦ୍ରଜୀ-ସବତ, ଜୟସ୍ୱାଲ — ସ୍ରବତ
ବଡ଼ୁଆ — ସଖିତ, ପବଂତ

୨୭. ବଡ଼ୁଆ — ଯେବ ନରଦୋ

୨୮. ଷ୍ଟେନ୍ କୋନା ଓ — ତମିତ, ଜୟସ୍ୱାଲ୍ — ତ୍ରମିଟ,
ବଡ଼ୁଆ - ସବଘ

୨୯. ଜୟସ୍ୱାଲ୍ — କଲ୍ପରୁଖେ

୩୦. ଇନ୍ଦ୍ରଜୀ — ସହ-ସ୍ୱତ, ଜୟସ୍ୱାଲ୍ — ସହସ୍ରଂତେ

୩୧. ପ୍ରିନ୍ସେପ୍ — ଘର ବସପ, କନିଂହମ୍ — ଘର ବସସ୍ୱ,
ଇନ୍ଦ୍ରଜୀ — ଘର ବସଢ

୩୨. ଜୟସ୍ୱାଲ୍ — ମାନତଗଜ ସନବାସଂ

୩୩. ବଡ଼ୁଆ — କପରୁଖ ହୟଗଜ ନର ବଧ

୩୪. ଜୟସ୍ୱାଲ — ଉସ୍ୱାତାନଂ

୩୫. ବଡ଼ୁଆ - ସହସ୍ରାତ

୩୬. ଜୟସ୍ୱାଲ — ସଂଡ଼େତ

୩୭. ଜୟସ୍ୱାଲ — ଅବରାଜ ନବେସିତଂ, ସର୍କାର୍ — ପୂର୍ବ ରାଜ-ନିବେସିତଂ

୩୮. ବଡ଼ୁଆ — ନଗଲେ ନେକାସୟତ,
ଜୟସ୍ୱାଲ — ଦଲଭ ନଙ୍ଗଲେ ନେକାସୟତ

୩୯. ଜୟସ୍ୱାଲ୍ — ଜନପଦଂ ଭବନ
ବଡ଼ୁଆ — ଅନୁପଦ ଭବନଂ

୪୦. ଇନ୍ଦ୍ରଜୀ — ତମର ଦେହ ସଘାତଂ
ଜୟସ୍ୱାଲ୍ — ବମିର ଦେଷ ସଘାତଂ
ବଡ଼ୁଆ — ତମିର ଦହ

୪୧. ବଡ଼ୁଆ — ସିବକାନଂ

୪୨. ଜୟସ୍ୱାଲ୍ — ମଗଧାନଂ

୪୩. ଜୟସ୍ୱାଲ — ହଥୀସ୍ତ, ହଥୀ ସୁଙ୍ଗ ଗୀସୁ [·]

୪୪. ବଡ଼ୁଆ — କଲିଙ୍ଗ ଜନାସନଂ

୪୫. ଜୟସ୍ୱାଲ୍ — ପଡ଼ୀହାରେହ
ବଡ଼ୁଆ — ନପୁନେହ

୪୬. ଜୟସ୍ୱାଲ — ନେୟାତ

୪୭. ଜୟସ୍ୱାଲ୍ — ଯାପ — ଜାବକେନ୍ଦ୍ର

ବଡୁଆ — ରାଜଭଟ କେନ୍ଦ୍ର

କନିଂହମ — ଯାପୂଜକେନ୍ଦ୍ର

୪୮. ଜୟସ୍ୱାଲ — ବାସାସିତାନ

ବଡୁଆ — ବସାସିତାନଂ

୪୯. ବଡୁଆ — ପୂଜାନୁରତ

୫୦. ଜୟସ୍ୱାଲ — ଜୀବଦେହ ସିରକା

ବଡୁଆ — ଜୀବଦେହ ସୟିକା

୫୧. ଜୟସ୍ୱାଲ — ପଲ୍ଲଖିତା; ବଡୁଆ — ପନଖାତା

୫୨. ଜୟସ୍ୱାଲ — ସ୍ତୁଲୁତଂ

୫୩. ପ୍ରିନ୍‌ସେପ୍ — ସ୍ତୁତଦସାନଂ; ଜୟସ୍ୱାଲ୍ — ସାତ ଦସାନଂ,

ବଡୁଆ — ସତ ଦସାନଂ

୫୪. ପ୍ରିନସେପ ଏବଂ କନିଂହମ୍ — ସ୍ତୁଲ୍ଲରେ; ସର୍କାର — ପାଲ୍ଲରେ

୫୫. ବଡୁଆ — ଚେତୟାନ ଚକବପୟତ

୫୬. ପ୍ରିନ୍‌ସେପ୍ — ପଟଲକେ, କନିଂହମ୍ ଏବଂ ଇନ୍ଦ୍ରଜୀ — ପଟାଲକେ;

ଜୟସ୍ୱାଲ୍ — ପଟଲକୋ

୫୭. ଜୟସ୍ୱାଲ୍ — ଚତୁରେ

୫୮. ଜୟସ୍ୱାଲ୍ — ଥଂଭେ

୫୯. ବଡୁଆ — ବାଚ୍ଛିନେ

୬୦. ପିନ୍‌ସେପ୍ — ବ୍ରେୟୁଥ ଅଗି

କନିଂହମ୍ — ବ୍ରେୟୁଢ଼ ଅଗେ

ଇନ୍ଦ୍ରଜୀ — ବ୍ରେୟୁଥ ଅଗେ

ବଡୁଆ — ବ୍ରେୟୁଢ଼ ଅଂଗେ

୬୧. ପ୍ରିନସେପ ଓ କନିଂହମ୍ — ସଢକ

ଇନ୍ଦ୍ରଜୀ — ସଢଲ୍ଲ

ଜୟସ୍ୱାଲ୍ ଓ ବଡୁଆ — ସଢକଂ

୬୨. ବଡୁଆ — ବଧଗଜା

୬୩. ଜୟସ୍ୱାଲ — ସଖାର

ସର୍କାର୍ — ସକାର

୭୪. ଜୟସ୍ୱାଲ୍— ଅପଠନ୍ତ— ଚକି—ବାହ୍ନ—ବନେ

୭୫. ଜୟସ୍ୱାଲ—ଚକଧୂର

୭୬. ଜୟସ୍ୱାଲ— ଦଶକୁଲ; ବଡ଼ୁଆ—ବଂଶକୁଲ

୭୭. ଭଗ୍ନହମ୍ — ବନଗଡ

ଜୟସ୍ୱାଲ୍ ଓ ସରକାର—ବନର୍ଜି ଭୋ।

---

"ନମୋ ଅରହଂତାଣଂ
ନମୋ ସିଦ୍ଧାଣଂ
ନମୋ ଆୟୂରୀୟାଣଂ
ନମୋ ଉଭଟ୍‌ଟ୍ୟାୟାଣଂ
ନମୋ ଲୋଏ ସବ୍‌ବସାହୂଣଂ"

—o—

# ଷଷ୍ଠ ଅଧ୍ୟାୟ

## ମଧ୍ୟ ଯୁଗୀୟ ଓଡ଼ିଶାରେ ଜୈନ ଧର୍ମ

ଜୈନଧର୍ମ ଚେଦିବଂଶୀୟ ରାଜା ଖାରବେଳଙ୍କ ପୃଷ୍ଠପୋଷକତାରେ ଗୌରବର ଶୀର୍ଷ ସ୍ଥାନରେ ଉପନୀତ ହୋଇଥିଲା । ମହାମେଘବାହନ ଖାରବେଳଙ୍କ ଆନୁକୂଲ୍ୟରେ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ଜୈନଧର୍ମ କଳିଙ୍ଗର ରାଷ୍ଟ୍ରଧର୍ମ ରୂପେ କପରି ପ୍ରତିଷ୍ଠା ଲାଭ କରିଥିଲା ତାହା ପୂର୍ବ ଅଧ୍ୟାୟରେ ସୂଚିତ ହୋଇଛି (୧) । ଚେଦୀ ବଂଶର ପତନ ପରେ ରାଜ-କୃପାରୁ ବଞ୍ଚିତ ହୋଇ ଜୈନ ଧର୍ମର ପୂର୍ବ ଗୌରବ କ୍ରମଶଃ ହ୍ରାସ ପାଇଲା । ବୌଦ୍ଧଧର୍ମ, ବିଶେଷତଃ ମହାଯାନ ବୌଦ୍ଧଧର୍ମର ଅଭ୍ୟୁଦୟ, ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ,ଶୈବଧର୍ମର ପ୍ରାଧାନ୍ୟ, ଜୈନ ସଙ୍ଘର ପରସ୍ପରବିରୋଧୀ ଗଚ୍ଛ ସୃଷ୍ଟି, ଦିଗମ୍ବର ଓ ଶ୍ୱେତାମ୍ବର ସମ୍ପ୍ରଦାୟ ମଧ୍ୟରେ ସମନ୍ୱୟ ତଥା ସଂହତିର କ୍ରମ ବିପର୍ଯ୍ୟୟ ଆଦି କାରଣ ଯୋଗୁଁ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ମଧ୍ୟଭାଗରୁ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗରେ ଜୈନ ଧର୍ମର ପ୍ରଭାବ ଓ ପ୍ରତିପତ୍ତି ବ୍ୟାହତ ହେଲା । ଏହା ସତ୍ତ୍ୱେ କଳିଙ୍ଗରେ ଜୈନଧର୍ମ ତାହାର ସତ୍ତା ହରାଇନଥିଲା ।

ଚେଦି ରାଜତ୍ୱର ଅବସାନ ପରେ କଳିଙ୍ଗ କିଛିକାଳ ପାଇଁ ସାତବାହନ ଓ ପରେ କୁଶାଣବଂଶୀ ରାଜାଙ୍କ ଶାସନାଧୀନ ଥିଲା ବୋଲି କେତେକ ଐତିହାସିକ ମତବ୍ୟକ୍ତ କରନ୍ତି । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ମୁରୁଣ୍ଡ ରାଜା ଧର୍ମ ଦାମୋଦର ଜୈନଧର୍ମର ପୃଷ୍ଠ-ପୋଷକତା କରିଥିଲେ । (୨) । ତୃତୀୟ ଓ ଚତୁର୍ଥ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଉତ୍ତର ପୂର୍ବାଞ୍ଚଳରେ ନାଗବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ସେମାନେ ଓଡ଼ିଶାର କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲା, ବିହାରର ରାଞ୍ଚି ଓ ସିଂହଭୂମି ଜିଲ୍ଲା ଏବଂ ପଶ୍ଚିମବଙ୍ଗର ମେଦିନୀପୁର, ବାଙ୍କୁଡ଼ା ଓ ମାନଭୂମ ଜିଲ୍ଲାକୁ ନେଇ ବିନ୍ଧ୍ୟାଟବୀ ନାମକ ଏକ ରାଜ୍ୟ ସ୍ଥାପନ କରିଥିଲେ । ଏହି ବଂଶର ପ୍ରବଳ ପ୍ରତାପୀ ମହାରାଜା ଶତ୍ରୁଭଞ୍ଜ ଜୈନଧର୍ମର ପୃଷ୍ଠପୋଷକ ଥିବା ଆସନ ପାଟ ଶିଳାଲେଖ (୩) ରେ ସୂଚିତ ହୋଇଛି । କେନ୍ଦୁଝର ଜିଲ୍ଲାର ଆସନ-ପାଟରୁ ପ୍ରାପ୍ତ ଏହି ଅଭିଲେଖରେ ଉଲ୍ଲେଖ ଅଛି ଯେ, ଶତ୍ରୁଭଞ୍ଜ ବ୍ରହ୍ମଚାରୀ, ଚରକ, ପରିବ୍ରାଜକ, ବୌଦ୍ଧଭିକ୍ଷୁ ଓ ନିର୍ଗ୍ରନ୍ଥ (ଜୈନ ଭିକ୍ଷୁ) ମାନଙ୍କୁ ମୁକ୍ତ ହସ୍ତରେ ଦାନ କରିଥିଲେ । "...ବ୍ରହ୍ମଚାରୀ ଚରକ .....ପରିବ୍ରାଜକ—ଭିକ୍ଷୁ ନିର୍ଗ୍ରନ୍ଥ... ବର୍ଣ୍ଣାଶ୍ରମ—ବର୍ଷଂ(ଷ) ଅ – ବିହାର – କାମ୍ୟେନ ପାଷାଣ୍ଡ । ଭିକ୍ଷା ଦେଇ" । (ଆସନପାଟ ଶିଳାଲେଖର ଅଷ୍ଟମ ଧାଡ଼ି) । ଆସନ ପାଟର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ତଥା ପୋଡ଼ାସିଙ୍ଗିଡ଼ି, ବଇଲା ପର୍ବତ, ବୈଦାଖିଆ ଓ ଯୋଗୀଛିଟା ପ୍ରଭୃତି ସ୍ଥାନରେ ବହୁ ତୀର୍ଥଙ୍କର ଓ ଶାସନ ଦେବୀଙ୍କ ମୂର୍ତ୍ତି ଏବଂ ଜୈନ ଚୌମୁଖ ଓ ମନ୍ଦିର ଆଦି ଜୈନକୀର୍ତ୍ତି ଦେଖିବାକୁ ମିଳେ ।

ଜୈନ ଗ୍ରନ୍ଥ ଅଭିଧାନ ରାଜେନ୍ଦ୍ରରୁ ଜଣାଯାଏ ଯେ, କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଅଞ୍ଚଳରେ ଜୈନଧର୍ମ ଲୋକପ୍ରିୟ ହୋଇପାରିଥିଲା । ସେଠାରେ ବର୍ଷରେ ଆଠଦିନ ବ୍ୟାପି ଜୈନ ଉତ୍ସବ ପାଳିତ ହେଉଥିଲା । (୪) । ଏଥିରୁ ପ୍ରମାଣିତ ହେଉଛି ଯେ, ଶଲ୍ଭୁଭଞ୍ଜଙ୍କ ପ୍ରୋତ୍ସାହନରେ ଖିଜ୍ଞାଂଟଲୀ ରାଜ୍ୟରେ ଜୈନଧର୍ମର ବିକାଶ ଘଟିଥିଲା ।

ଖ୍ରୀ.ଅ. ୩୫୦ ରୁ ୪୯୮ ମଧ୍ୟରେ ମାଠରବଂଶୀ ରାଜାମାନେ କଳିଙ୍ଗର ଦକ୍ଷିଣାଞ୍ଚଳ (ଆଧୁନିକ ଗଞ୍ଜାମ, ଶ୍ରୀକାକୁଲମ୍, ବିଜୟନଗରମ୍ ଓ ବିଶାଖାପଟନମ୍ ଜିଲ୍ଲା) ରେ ରାଜତ୍ୱ କରୁଥିଲେ । ସେମାନେ ବ୍ରାହ୍ମଣ୍ୟ ଧର୍ମର ସମର୍ଥକ ଥିଲେ ମଧ୍ୟ ଜୈନଧର୍ମ ପ୍ରତି ସହନଶୀଳ ଥିଲେ । ମାଠର ରାଜା ଉମାବର୍ମନ୍ (ଖ୍ରୀ.ଅ.୩୬୦-୩୯୫) ଓ ନନ୍ଦ ପ୍ରଭଞ୍ଜନ ବର୍ମନ୍ (ଖ୍ରୀ ଅ.୪୮୦-୪୯୮) ମହାବୀରଙ୍କ ଅନୁଗାମୀ ଥିଲେ । ତେଣୁ ବର୍ଦ୍ଧମାନ ମହାବୀରଙ୍କ ନାମାନୁସାରେ ଉମାବର୍ମନ୍ ବର୍ଦ୍ଧମାନପୁର ନାମକ ନଗର ପ୍ରତିଷ୍ଠା କରିଥିଲେ ଏବଂ ଉକ୍ତ ନଗରରୁ ତାମ୍ରଶାସନ ଦାନ କରିଥିଲେ । (୫) ।

ମୌଦ୍ଗଲ (ମୁଦ୍ଗଲ) ବଂଶୀୟ ରାଜା ଶମ୍ଭୁଯଶଙ୍କ ରାଜତ୍ୱକାଳ (ଖ୍ରୀ.ଅ ୫୮୦-୬୩୦) ରେ ଉତ୍ତର ତୋଷଳୀ (ବାଲେଶ୍ୱର, କଟକ ଓ ପୁରୀଜିଲ୍ଲା) ରେ ଜୈନଧର୍ମର ଅସ୍ତିତ୍ୱ ଥିଲା । ଶମ୍ଭୁଯଶଙ୍କ ସୋରୋ ତାମ୍ରଶାସନ (୬) ରେ 'ଘଣ୍ଟାକର୍ଣ୍ଣ କ୍ଷେତ୍ର'ର ଉଲ୍ଲେଖ ରହିଛି । ଜୈନମାନେ ଘଣ୍ଟାକର୍ଣ୍ଣଙ୍କୁ ଦେବତାରୂପେ ପୂଜା କରନ୍ତି । କେତେକ ସ୍ଥାନରେ ଜୈନମାନେ ମହାବୀରଙ୍କୁ ଘଣ୍ଟାକର୍ଣ୍ଣ ରୂପେ ଅର୍ଚ୍ଚନା କରନ୍ତି । ହିନ୍ଦୁ ସମ୍ପ୍ରଦାୟରେ ମଧ୍ୟ ଘଣ୍ଟାକର୍ଣ୍ଣ ପୂଜାର ପରମ୍ପରା ଅଛି । ଘଣ୍ଟାକର୍ଣ୍ଣ ସର୍ବବ୍ୟାଧି ନିବାରକ ତଥା ସର୍ବଉପଦ୍ରବ ସଂହାରକ ରୂପେ ବିବେଚିତ । ରେଖାପଞ୍ଚମୀ (ଭାଦ୍ରପଦ କୃଷ୍ଣ ପଞ୍ଚମୀ) ଦିନ ହିନ୍ଦୁମାନେ ଘଣ୍ଟାକର୍ଣ୍ଣଙ୍କୁ ସ୍ୱ ସ୍ୱ ଗୃହରେ ରକ୍ଷା କବଚରୂପେ ପୂଜା କରନ୍ତି ।-

"ଘଣ୍ଟାକର୍ଣ୍ଣ ମହାବୀର ସର୍ବବ୍ୟାଧି ନିବାରଣ
ସର୍ବୋପଦ୍ରବ ସଂହାର ବିଦ୍ରାବଣ ହରିପ୍ରିୟେ ॥
କଣ୍ଠେ ଯସ୍ୟ ମହାଜ୍ୱାଳ ଭୂଷଣଂ ଯସ୍ୟ ପନ୍ନାଗାଃ ।
ତେଜାଂସି ତସ୍ୟ ଦେବସ୍ୟ ରକ୍ଷଂ ତୁ ମମ ମନ୍ଦିରମ୍ ॥" (୭)

ଏହି ମନ୍ତ୍ରଟି ଗୋଟିଏ ତାଳପତ୍ରରେ ଲେଖି ତାହା ଗୃହ ସ୍ତମ୍ଭରେ ଖୋସିବା ପ୍ରଥା ଏବେ ମଧ୍ୟ ଓଡ଼ିଶାର କେତେକ ପୁରପଲ୍ଲୀରେ ପ୍ରଚଳିତ ଅଛି । ଉକ୍ତ ସୋରୋ ତାମ୍ରଲେଖରୁ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ତୋଷଳୀରେ ଜୈନଧର୍ମର ପ୍ରଭାବ ଥିବା ବିଦିତ ହୁଏ । ଉକ୍ତ ତାମ୍ରଲେଖରୁ ପୁଣି ପ୍ରମାଣିତ ହୁଏ ଯେ, ପୂର୍ବେ ସୋରୋଠାରେ ଘଣ୍ଟାକର୍ଣ୍ଣ ଜୈନସମ୍ପ୍ରଦାୟର ଏକ ଦେବତା ଭାବରେ ପୂଜିତ ହେଉଥିବାରୁ ତାହା 'ଘଣ୍ଟାକର୍ଣ୍ଣ କ୍ଷେତ୍ର' ନାମରେ ପ୍ରସିଦ୍ଧ ଥିଲା ।

ମାଠର ରାଜତ୍ୱ ପରେ ଗଙ୍ଗମାନେ (ପୂର୍ବ ବା ପ୍ରାଚୀନ ଗଙ୍ଗ ବଂଶ) କଳିଙ୍ଗରେ ୪୯' ଅ. ରେ ରାଜତ୍ୱ ଆରମ୍ଭ କରିଥିଲେ । ମହୀଶୂରର ଶ୍ରବଣ ବେଲଗୋଲା ଅଭିଲେଖ

(୮) ପୂର୍ବଗଙ୍ଗ (Early Gangas or Eastern Gangas) ରାଜାମାନଙ୍କର ବଂଶ ପରମ୍ପରା ଓ ପୌରାଣିକ ଆଖ୍ୟାନ ବିବୃତ ହୋଇଛି । ସେହି ବିବରଣୀରୁ ଜଣାଯାଏ ଯେ ଏକଦା ଗଙ୍ଗ ବଂଶର ଦଡ଼ିଗ୍ ଓ ମାଧବ ନାମକ ଦୁଇଜଣ ଯୁବରାଜ ନୂତନ ରାଜ୍ୟ ଅନ୍ୱେଷଣରେ ଅଯୋଧ୍ୟାରୁ ଦକ୍ଷିଣ ଭାରତ ଅଭିମୁଖେ ଯାତ୍ରା କରିଥିଲେ । ପଥ ମଧ୍ୟରେ ସିଂହନନ୍ଦି ନାମକ ଜଣେ ଜୈନ ଆଚାର୍ଯ୍ୟଙ୍କ ଠାରୁ ରାଜକୁମାର ଦ୍ୱୟ ଦୀକ୍ଷା ଗ୍ରହଣ କରିଥିଲେ । ସିଂହନନ୍ଦିଙ୍କ ପରାମର୍ଶ କ୍ରମେ ଦଡ଼ିଗ୍ ମହୀଶୂରର ଗଙ୍ଗବାଡ଼ି ଠାରେ ଏବଂ ମାଧବ କଳିଙ୍ଗରେ ରାଜ୍ୟ ସ୍ଥାପନ କଲେ । ମହୀଶୂରର ଗଙ୍ଗ ରାଜାମାନେ ଜୈନଧର୍ମ ଗ୍ରହଣ କରିଥିବାରୁ ସେମାନଙ୍କ ରାଜକୀୟ ମୁଦ୍ରା ତଥା ଅଭିଲେଖରେ ହସ୍ତୀ ଚିହ୍ନ ଅଙ୍କିତ ହେଉଥିଲା । କିନ୍ତୁ କଳିଙ୍ଗର ଗଙ୍ଗ ରାଜାମାନେ ପ୍ରଥମେ ଜୈନ ଥିଲେ ମଧ୍ୟ ପରେ ଶୈବ ଧର୍ମରେ ଦୀକ୍ଷିତ ହୋଇ ସ୍ୱୀୟ ତାମ୍ର ଶାସନର ରାଜକୀୟ ମୁଦ୍ରାରେ ବୃଷଭ ଚିହ୍ନ ଅଙ୍କନ କରାଇଥିଲେ ।

ଗୌଡ଼ (ବଙ୍ଗ)ର ରାଜା ଶଶାଙ୍କ ସପ୍ତମ ଖ୍ରୀଷ୍ଟାବ୍ଦର ପ୍ରଥମ ଦଶକ ସୁଦ୍ଧା ତୋଷାଳୀ ଓ କୋଙ୍ଗୋଦ ଅଧିକାର କରିଥିଲେ । ସେ ଶୈବ ଧର୍ମର ଉପାସକ ଥିଲେ । ମଞ୍ଜୁଶ୍ରୀ ମୂଳକଳ୍ପ ଗ୍ରନ୍ଥରୁ ଜଣାଯାଏ ଯେ ଶଶାଙ୍କ ବୌଦ୍ଧ ଓ ଜୈନ ଧର୍ମର ଅଶେଷ କ୍ଷତି ସାଧନ କରିଥିଲେ ।

"ଦାହାପଯୁତ ଦୁର୍ମେଧଃ ତୀର୍ଥିକସ୍ୟ ବଚେରତଃ ।
ତତୋ ସ କ୍ରୋଧ ଲୁବ୍ଧସ୍ତୁ ମିଥ୍ୟାମାନହ୍ୟ ସମତଃ ॥
ବିହାର ରାମ ଚୈତ୍ୟାଂଶ୍ଚ ନିର୍ଗ୍ରନ୍ଥାବସଥାଂ ଭୁବି ।
ମେଷ୍ୟତେ ଚ ତଦା ସର୍ବା ବୃଦ୍ଧିରୋଧ ମକାରକଃ ॥ (୯) "

ଅର୍ଥାତ୍ 'ଧର୍ମଧ୍ୱଜୀ ମାନଙ୍କର କଥା ଦ୍ୱାରା ପରିଚାଳିତ ହୋଇ ସେହି ଦୁର୍ମେଧ (ଶଶାଙ୍କ) କ୍ରୁଦ୍ଧ, ଲୁବ୍ଧ ଓ ମିଥ୍ୟାଭିମାନୀ ହୋଇ ନିର୍ଗ୍ରନ୍ଥ (ଜୈନ) ମାନଙ୍କର ବିହାର, ଆରାମ, ଚୈତ୍ୟ, ଆବାସ ଭୂମି ଆଦି ଦଗ୍ଧୀଭୂତ କରିଦେବ ଏବଂ ଧର୍ମ ସାଧନରେ ବାଧା ସୃଷ୍ଟି କରିବ । (୧୦) । ଫଳରେ ଓଡ଼ିଶାରେ ଜୈନଧର୍ମର ଅଗ୍ରଗତି କିଛି କାଳ ପାଇଁ ବ୍ୟାହତ ହୋଇଥିଲା । ତେବେ ପରବର୍ତ୍ତୀ କାଳରେ ରାଜ ପୃଷ୍ଠପୋଷକତା ଲାଭ କରି ଜୈନଧର୍ମ ଓ ସ୍ଥାପତ୍ୟର ପୁନରୁତ୍ଥାନ ହୋଇଥିଲା ।

ମଧ୍ୟ ଯୁଗରେ (ଖ୍ରୀ ଅ ୬୦୦-୧୨୦୦) ଶୈଳୋଦ୍ଭବ, ଭଞ୍ଜ, ସୋମବଂଶୀ, ଗଙ୍ଗ ଓ ସୂର୍ଯ୍ୟବଂଶୀ ଗଜପତି ରାଜତ୍ୱ କାଳରେ ରାଜ କୃପା ଓ ଜନ ସମର୍ଥନ ଲାଭ କରି ଜୈନ ଧର୍ମ ଓ ସ୍ଥାପତ୍ୟ ଉଜ୍ଜୀବିତ ହୋଇଥିଲା । (୧୧) । ଏହି ସମୟରେ ବୌଦ୍ଧ, ଶାକ୍ତ, ଶୈବ ଓ ବୈଷ୍ଣବ ଧର୍ମ ସହିତ ଜୈନ ଧର୍ମ ଏକ ଜୀବନ୍ତ ଧର୍ମ ରୂପେ ସ୍ଥିତି ଲାଭ କଲା । ଜୈନ କଳା ଓ ସ୍ଥାପତ୍ୟର ଚରମ ବିକାଶ ଘଟିଥିଲା ।

ଚୀନ ପରିବ୍ରାଜକ ହୁଏନ୍ ସାଂ ୬୩୮ ଖ୍ରୀ ଅ ରେ ଓଡ୍ର (ଉତ୍କଳ), କୋଙ୍ଗୋଦ ଓ କଳିଙ୍ଗ ପରିଦର୍ଶନ କରିଥିଲେ । ସେତେବେଳେ କୋଙ୍ଗୋଦରେ ୧୦,୦୦୦ ରୁ ଅଧିକ ତୀର୍ଥିକ (ଜୈନ) ଏବଂ କଳିଙ୍ଗରେ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ନିର୍ଗ୍ରନ୍ଥ (ଜୈନ) ମାନେ ସର୍ବାଧିକ ବୋଲି ହୁଏନ୍ ସାଂ ସ୍ୱୀୟ ଭ୍ରମଣ ବୃତ୍ତାନ୍ତରେ ଲିପିବଦ୍ଧ କରିଛନ୍ତି । (୧୨) । ଏଥିରୁ ପ୍ରମାଣିତ ହୁଏ ଯେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ କୋଙ୍ଗୋଦ ଓ କଳିଙ୍ଗରେ ଜୈନ ଧର୍ମ ଲୋକପ୍ରିୟ ହୋଇପାରିଥିଲା ।

ସପ୍ତମ ଖ୍ରୀଷ୍ଟାବ୍ଦରୁ ଅଷ୍ଟମ ଖ୍ରୀଷ୍ଟାବ୍ଦର ମଧ୍ୟଭାଗ ପର୍ଯ୍ୟନ୍ତ ଶୈଳୋଦ୍ଭବ ରାଜାମାନେ କୋଙ୍ଗୋଦରେ ରାଜତ୍ୱ କରିଥିଲେ । ମହାନଦୀଠାରୁ ମହେନ୍ଦ୍ରଗିରି ପର୍ଯ୍ୟନ୍ତ ବ୍ୟାପ୍ତ କୋଙ୍ଗୋଦ ରାଜ୍ୟରେ ଶୈଳୋଦ୍ଭବ ରାଜାମାନଙ୍କ ପ୍ରୋତ୍ସାହନରେ ବିଭିନ୍ନ ଧର୍ମ ସମ୍ପ୍ରଦାୟର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସମ୍ଭବପର ହୋଇଥିଲା । ଶୈଳୋଦ୍ଭବ ରାଜାମାନେ ଶୈବଧର୍ମାବଲମ୍ବୀ ହେଲେହେଁ ଜୈନଧର୍ମ ପ୍ରତି ଉଦାର ଥିଲେ । ପ୍ରଥମ ମାଧବରାଜ (ଖ୍ରୀ ଅ ୬୬୫-୬୯୫)ଙ୍କ ବାଣପୁର (୧୩) ଏବଂ ପାରିକୁଦ (୧୪) ତାମ୍ରଲେଖରୁ ଜଣାପଡ଼େ ଯେ ସେ ସମୟରେ କୋଙ୍ଗୋଦରେ ମୁନିଋଷିମାନେ ବଲ୍କଳ ଓ ଅଜିନ ପରିଧାନ ପୂର୍ବକ କଠୋର ଯୋଗ ସାଧନା ଓ ତପସ୍ୟା କରୁଥିଲେ । ସେମାନଙ୍କ ମଧ୍ୟରୁ କେତେକ ଗୃହତ୍ୟାଗ ତଥା ସାଂସାରିକ ମୋହମାୟା ଛିନ୍ନ କରି ଅରଣ୍ୟ କନ୍ଦ୍ରା ଗୁମ୍ଫାରେ ଦିଗମ୍ବର ଅବସ୍ଥାରେ ନିରାହାର ପୂର୍ବକ ତପସ୍ୟା କରୁଥିଲେ । କେତେକ ସାଧୁ କେବଳ ବାୟୁ, ଜଳ ଏବଂ ଫଳାହାର କରି ଧ୍ୟାନମଗ୍ନ ରହୁଥିଲେ । ଅନ୍ୟ କେତେକ ପ୍ରଚଣ୍ଡ ରୌଦ୍ର ତାପରେ ମଧ୍ୟାହ୍ନ ସୂର୍ଯ୍ୟଙ୍କ ପ୍ରତି ଦୃଷ୍ଟି ନିବଦ୍ଧ କରି ଯୋଗାଭ୍ୟାସ କରୁଥିଲେ । ଫଳରେ ସେମାନଙ୍କ ମୁଖମଣ୍ଡଳ ସୂର୍ଯ୍ୟଙ୍କ ସହସ୍ରରଶ୍ମିର ଜ୍ୱାଳାରେ ଦଗ୍ଧୀଭୂତ ହୋଇଯାଉଥିଲା । ତଥାପି ସେମାନେ ଯୋଗସାଧନାରୁ ନିବୃତ୍ତ ନହୋଇ ତହିଁରେ ଅଟଳ ରହୁଥିଲେ ।

ଏ ପ୍ରସଙ୍ଗରେ ଜୈନ ଭଗବତୀ ସୂତ୍ର (୧୫) ରୁ ବିଦିତ ହୁଏ ଯେ ମହାବୀର କୂର୍ମଗ୍ରାମଠାରେ ବୈଶ୍ୟାୟନଙ୍କ ଠାରୁ ଏ ଧରଣର ଯୋଗ ପଦ୍ଧତି ଶିକ୍ଷା କରିଥିଲେ । ଅତଏବ ବୈଶ୍ୟାୟନଙ୍କ ଅନୁସୃତ ଯୋଗସାଧନ ପ୍ରଣାଳୀ ଶୈଳୋଦ୍ଭବ ରାଜତ୍ୱକାଳରେ କୋଙ୍ଗୋଦରେ ମଧ୍ୟ ପ୍ରଚଳିତ ଥିବା ପ୍ରମାଣିତ ହୁଏ । ଜୈନମାନଙ୍କ ପରି କୋଙ୍ଗୋଦରେ ଋଷିମାନେ କଠୋର ଆତ୍ମସଂଯମ ପୂର୍ବକ ଯୋଗସାଧନା ଓ ତପସ୍ୟା କରୁଥିଲେ । ସୁତରାଂ ସେମାନେ ଜୈନ ଥିବା ନିଃସନ୍ଦେହ । ଫଣିତ ବାଣପୁର ଓ ପାରିକୁଦ ତାମ୍ରଲେଖରୁ ସେହି ସମ୍ପର୍କୀୟ ଉଦ୍ଧୃତ ନିମ୍ନରେ ପ୍ରଦତ୍ତ ହେଲା ।—

"କେଚିଦ୍ ବନ୍ୟ ମୃଗେଣ ସାର୍ଦ୍ଧମଚରନ୍ ସ୍ଥାଂତାଂ ସ୍ଥିତି ର୍ଲିଲୟା
କେଚିଦ୍ ଦଗ୍ଧମୁଖା ସହସ୍ର କିରଣ ଜ୍ୱାଳାବଳି ପ୍ରେଂଖିଣଃ ।
କେଚିଦବଲକଲନ ସ୍ଥିତା ଜିନଧରାଃ କେଚ କ୍ଷୁଟାଧାମ୍ନଃ

ନାନାରୂପ ଧରାସ୍ତପନ୍ତ ମୂନସ୍ତୋ ଉଦ୍ୟାଗ୍ରଦା ଢାଂକ୍ଷିଣଃ ।।
କେଚ ଚ୍ଛେଁଳଗୁହୋ ଦରେଷୁ ନସୁଭା ଧୂମାବଳୀ ପାସ୍ଥିନଃ
ଅନେ୍ୟ ବାସ୍ତୁ ଫଳାମ୍ବଭୂକ୍ଷନରତାଃ କେଚନ୍ନିରହାରକାଃ ।।

ଶୈଳୋଦ୍ଭବ ରାଜା ଦ୍ୱିତୀୟ ଧର୍ମରାଜ 'ମାନଭିତ (ଖ୍ରୀ ଅ ୬୯୫-୭୩୦) ନଚେ ଶୈବ ଥିଲେ ଏବଂ ବୈଦିକ ଯଜ୍ଞାନୁଷ୍ଠାନ କରାଇଥିଲେ । କିନ୍ତୁ ତାଙ୍କର ମହିଷୀ କଲ୍ୟାଣ-ଦେବୀ ଜୈନଧର୍ମର ପୃଷ୍ଠପୋଷକତା କରିଥିଲେ । ସେ ଜୈନଧର୍ମର ଅଭିବୃଦ୍ଧି ନିମନ୍ତେ ଭୂମି ଦାନ କରିଥିଲେ । ତାହା ଦ୍ୱିତୀୟ ଧର୍ମରାଜଙ୍କ ବାଣପୁର ତାମ୍ରଲେଖରେ ବର୍ଣ୍ଣିତ ହୋଇଛି । ତାମ୍ରଲେଖର ଉକ୍ତ ଅଂଶଟି ନିମ୍ନରେ ପ୍ରଦତ୍ତ ହେଲା—

"ଅର୍ହତାଚାର୍ଯ୍ୟ ନାସିଚନ୍ଦ୍ର । ପ୍ରତି ଶିଷ୍ୟ ଏକଶାଟ ପ୍ରବୃଦ୍ଧ ଚନ୍ଦ୍ର ।
ଯାବତ୍ ଜୀବିତ । ବଳୀ, ସତ୍ର, ଚରୁ ପ୍ରବର୍ତ୍ତିନାୟ ।।
ଭଗବତ୍ୟା ଶ୍ରୀରାଜ୍ଞୀ ଶ୍ରୀ କଲ୍ୟାଣ ଦେବୀ । ଖୋରଣ ବିଷୟ ସମ୍ବଦ୍ଧ । ପୂର୍ବଖଣ୍ଡ ରଳେଣ୍ଡି ଟିର୍ମିର ଗ୍ରାଣି । ଖଣ୍ଡ ସୀମ ସମ୍ବଦ୍ଧ ମଧୁବାଟକ ଗ୍ରାମ ଟିର୍ମିର ଦ୍ୱୟଂପାଦଃ(୧୭) ।

ଅର୍ଥାତ୍ ରାଣୀ କଲ୍ୟାଣ ଦେବୀ କୋଙ୍ଗୋଦ ମଣ୍ଡଳ ଅନ୍ତର୍ଗତ ଖୋରଣ ବିଷୟର ମଧୁବାଟକ ଓ ଖଣ୍ଡଗ୍ରାମର ସୀମାଠାରେ ଦୁଇ ଟିର୍ମିର ଏବଂ ପୂର୍ବଖଣ୍ଡ ରଳେଣ୍ଡିଠାରେ ତିନି ଟିର୍ମିର ପରମିତ ଭୂମି ରାଜାଙ୍କ ଅନୁମୋଦନ କ୍ରମେ ଅର୍ହତାଚାର୍ଯ୍ୟ ନାସିଚନ୍ଦ୍ରଙ୍କର ଶିଷ୍ୟ ଏକଶାଟ ପ୍ରବୃଦ୍ଧ ଚନ୍ଦ୍ରଙ୍କୁ ଦାନ କରିଥିଲେ । ଏକଶାଟ ପ୍ରବୃଦ୍ଧ ଚନ୍ଦ୍ର ଜୈନ ସମ୍ପ୍ରଦାୟର ଆଚାର୍ଯ୍ୟ ଥିଲେ । ତାଙ୍କର ଭରଣପୋଷଣ ତଥା ଦେବୀ ଭଗବତୀଙ୍କ ବଳୀ, ସତ୍ର, ଚରୁ (ଭୋଜ) ପ୍ରଭୃତି ସେବା ଉଦ୍ଦେଶ୍ୟରେ ଏହି ଭୂମି କଲ୍ୟାଣ ଦେବୀଙ୍କ ଦ୍ୱାରା ପ୍ରଦତ୍ତ ହୋଇ-ଥିଲା । ଏଥିରୁ ଜ୍ଞାତ ହୁଏ ଯେ ସପ୍ତମ ଓ ଅଷ୍ଟମ ଖ୍ରୀଷ୍ଟାବ୍ଦରେ ଶ୍ୱେତାମ୍ବରପନ୍ଥୀ ଜୈନମାନେ କୋଙ୍ଗୋଦରେ ବାସ କରୁଥିଲେ । ବାଣପୁରରେ ପ୍ରତିଷ୍ଠିତ ଭଗବତୀ ଦେବୀଙ୍କ ମନ୍ଦିରର ରକ୍ଷଣାବେକ୍ଷଣ ତଥା ଦେବୀଙ୍କ ଭୋଗରାଗର ଦାୟିତ୍ୱ ଶ୍ୱେତାମ୍ବର ଜୈନଧର୍ମର ଏକଶାଟ ଆଚାର୍ଯ୍ୟମାନଙ୍କ ଉପରେ ନ୍ୟସ୍ତ ଥିଲା । ('୭) ।

ଦ୍ୱିତୀୟ ଧର୍ମରାଜ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକ ଥିଲେ ମଧ୍ୟ ତାଙ୍କ ରାଣୀଙ୍କ ଜୈନଧର୍ମ ପ୍ରତି ଉଦାରଭାବ ବାସ୍ତବିକ୍ ମହତ୍ତ୍ୱପୂର୍ଣ୍ଣ । ଶୈଳୋଦ୍ଭବ ରାଜାମାନଙ୍କ ଜୈନ ଧର୍ମ ପ୍ରତି ସହନଶୀଳତା କୋଙ୍ଗୋଦରେ ସାମ୍ପ୍ରଦାୟିକ ସଦ୍ଭାବ ତଥା ସହଜ ପ୍ରତିଷ୍ଠା କରିବା ଦିଗରେ ସହାୟକ ହୋଇଥିଲା । ଶୈଳୋଦ୍ଭବ ରାଜଧାନୀ ବାଣପୁର ନିକଟରେ ବହୁ ଜୈନ କୀର୍ତ୍ତି ପରିଦୃଷ୍ଟ ହୁଏ । ଅତୀତ ରାଜପୁରରୁ ଆବିଷ୍କୃତ ବ୍ରୋଞ୍ଜର ୧୦ଟି ଜୈନ ମୂର୍ତ୍ତି ଅଧୁନା ବାଣପୁରର ଦକ୍ଷ ପ୍ରଜାପତି ମନ୍ଦିର ବେଢ଼ାସ୍ଥ ଭୂଦେମା ମନ୍ଦିର କାନ୍ଥରେ ସ୍ଥାପିତ ହୋଇଛି । (୧୮) ଉପରୋକ୍ତ ତାମ୍ରଲିପି ଓ ଜୈନ ମୂର୍ତ୍ତିମାନଙ୍କରୁ ପ୍ରମାଣିତ ହୁଏ ଯେ ଶୈଳୋଦ୍ଭବ ରାଜତ୍ୱ କାଳରେ ବାଣପୁର ଜୈନ ଧର୍ମର ଏକ ପ୍ରଧାନ କେନ୍ଦ୍ର ଥିଲା ।

ହୁଏନ୍ ସାଂଙ୍କ ଭ୍ରମଣ ବୃତ୍ତାନ୍ତରୁ ଜଣାଯାଏ ଯେ, ସପ୍ତମ ଖ୍ରୀଷ୍ଟାବ୍ଦରେ କଳିଙ୍ଗରେ ବିଭିନ୍ନ ସମ୍ପ୍ରଦାୟର ଲୋକମାନେ ବାସ କରୁଥିଲେ । ସେମାନଙ୍କ ମଧ୍ୟରେ ନିର୍ଗ୍ରନ୍ଥ (ଜୈନ) ମାନେ ସର୍ବାଧିକ ଥିଲେ । (୧୧) । ଏହି ସମୟରେ ପ୍ରସିଦ୍ଧ ବୌଦ୍ଧ ପଣ୍ଡିତ ଧର୍ମକୀର୍ତ୍ତିଙ୍କ ଆଶ୍ରମ କୋରାପୁଟ ଜିଲ୍ଲାର ଗୁଣପୁର ସବ୍‌ଡିଭିଜନ୍ ଅନ୍ତର୍ଗତ ପଦ୍ମପୁର ନିକଟବର୍ତ୍ତୀ ଜଗମଣ୍ଡା ପାହାଡ଼ରେ ଅବସ୍ଥିତ ଥିଲା । ଜଗମଣ୍ଡା ପାହାଡର ଶିଖର ଦେଶରେ ଅବସ୍ଥିତ ନୀଳ-କଣ୍ଠେଶ୍ୱର ମନ୍ଦିର ଗାତ୍ରରେ ଏକ ଶିଳାଲିପି (୨୦) ଖୋଦିତ ହୋଇଛି । ସେଥିରେ ଧର୍ମ-କୀର୍ତ୍ତିଙ୍କର ନାମୋଲ୍ଲେଖ ଅଛି । କାଞ୍ଚୀର ସୁପ୍ରସିଦ୍ଧ ବ୍ରାହ୍ମଣ ପଣ୍ଡିତ ତଥା ନୈୟାୟିକ କୁମାରିଲ ଭଟ୍ଟଙ୍କୁ ଧର୍ମକୀର୍ତ୍ତି ତର୍କ ଦ୍ୱାରା ନ୍ୟାୟଶାସ୍ତ୍ରରେ ପରାଜିତ କରିଥିଲେ । ସେ କଳିଙ୍ଗର ଜୈନାଚାର୍ଯ୍ୟମାନଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିବାକୁ ଉଦ୍ୟମ କରିଥିଲେ । କିନ୍ତୁ ଏଥିରେ ସେ କୃତକାର୍ଯ୍ୟ ହୋଇପାରିନଥିଲେ । କଳିଙ୍ଗରେ ଜୈନଧର୍ମର ପ୍ରଭାବ ଅବ୍ୟାହତ ରହିଥିଲା । (୨୧) ।

ଘୁମୁସର, ମୟୂରଭଞ୍ଜ, କେନ୍ଦୁଝର, ବୌଦ୍ଧ ଏବଂ ଦଶପଲ୍ଲା ଅଞ୍ଚଳରେ ପ୍ରାକ୍ ମଧ୍ୟ-ଯୁଗରେ ରାଜତ୍ୱ କରୁଥିବା ଭଞ୍ଜ ରାଜାମାନଙ୍କର ପୂର୍ବପୁରୁଷ ଥିଲେ ଗଣଦଣ୍ଡ ବୀରଭଦ୍ର । ସେ ଥିଲେ ଭଞ୍ଜ ବଂଶର ସଂସ୍ଥାପକ । ସେ ଜୈନ ଧର୍ମ ଗ୍ରହଣ କରିଥିଲେ । (୨୨) । ଉଖୁଣ୍ଡା ତାମ୍ର ଲେଖ (୨୩) ଏବଂ କେଶରୀ ତାମ୍ର ଲେଖ (୨୪)ରୁ ବୀରଭଦ୍ରଙ୍କ ଜନ୍ମ ବୃତ୍ତାନ୍ତ ଓ ରାଜପଦ ଲାଭ କରିବା ପ୍ରସଙ୍ଗ ପ୍ରକଟିତ ହୁଏ । ବୀରଭଦ୍ର ବଶିଷ୍ଟ ମୁନିଙ୍କୁ ଜୈନ ଦର୍ଶନ ସମ୍ବନ୍ଧରେ ଦୀକ୍ଷା ଦାନ କରିଥିଲେ । ଭଞ୍ଜ ରାଜାମାନଙ୍କ ପ୍ରଦତ୍ତ ତାମ୍ର ଫଳକର ଉର୍ଦ୍ଧ୍ୱ ଭାଗରେ ସଂଯୁକ୍ତ ରାଜକୀୟ ମୁଦ୍ରା (Seal)ରେ ଚନ୍ଦ୍ର, ବୃଷଭ, ପଦ୍ମ ଏବଂ ସିଂହ ଲାଞ୍ଛନ ଅଙ୍କିତ ହୋଇଛି । ଏଠାରେ ସ୍ମରଣ କରାଯାଇପାରେ ଯେ ଜୈନ ତୀର୍ଥଙ୍କର ଋଷଭନାଥ, ପଦ୍ମପ୍ରଭ, ଚନ୍ଦ୍ରପ୍ରଭ ଏବଂ ମହାବୀରଙ୍କ ଲାଞ୍ଛନ ଯଥାକ୍ରମେ ବୃଷଭ, ରକ୍ତ କମଳ, ଚନ୍ଦ୍ର ଏବଂ ସିଂହ । ଏତଦ୍‌ବ୍ୟତୀତ ଭଞ୍ଜରାଜାଙ୍କ ଶାସନାଧୀନ ମୟୂରଭଞ୍ଜରେ କେନ୍ଦୁଝର, ବୌଦ୍ଧ, ଘୁମୁସର ଓ ଦଶପଲ୍ଲା ଅଞ୍ଚଳରେ ବହୁ ଜୈନ ମୂର୍ତ୍ତି ବିସ୍ମୃତ ଭାବରେ ରହିଛି । (୨୫) । ଏଥିରୁ ଜୈନ ଧର୍ମ ଭଞ୍ଜରାଜାମାନଙ୍କର ପୃଷ୍ଠପୋଷକତା ଲାଭ କରିଥିବା ପ୍ରତିପାଦିତ ହୁଏ ।

ଓଡ଼ିଶାରେ ସୋମବଂଶୀ ଅଥବା କେଶରୀ ବଂଶର ରାଜତ୍ୱ କାଳରେ (ଖ୍ରୀ.ଅ. ୮୮୨—୧୧୧୦) ଶୈବ ଧର୍ମ ଉନ୍ନତିର ଶୀର୍ଷ ସ୍ଥାନରେ ଉପନୀତ ହୋଇଥିଲେ ହେଁ ଜୈନଧର୍ମର ସ୍ଥିତି ଅକ୍ଷୁର୍ଣ୍ଣ ରହିଥିଲା । ଏହି ସମୟରେ ଶୈବଧର୍ମ ଓ ଜୈନଧର୍ମ ସମାନ୍ତରାଳ ଭାବରେ ପ୍ରଚଳିତ ଥିଲା । ସୋମବଂଶୀ ରାଜା ଉଦ୍ୟୋତ କେଶରୀଙ୍କ ରାଜତ୍ୱ କାଳରେ (ଖ୍ରୀ.ଅ. ୧୦୪୦—୧୦୬୫) ଖଣ୍ଡଗିରି ଜୈନଧର୍ମ, କଳା ଓ ସଂସ୍କୃତିର ଏକ ପ୍ରଧାନ ପୀଠ ରୂପେ ପୁନଃ ପ୍ରତିଷ୍ଠା ଲାଭ କଲା । ଖଣ୍ଡଗିରିସ୍ଥ ଲଲାଟେନ୍ଦୁ କେଶରୀ ଗୁମ୍ଫାରେ ଖୋଦିତ ଏକ ଶିଳାଲେଖ ଏବଂ ନବ ମୁନି ଗୁମ୍ଫାରେ ଉତ୍କୀର୍ଣ୍ଣ ଦୁଇଟି ଅଭିଲେଖରୁ ଏହାର ପ୍ରମାଣ ମିଳେ । ଏହି ଶିଳାଲେଖ ଗୁଡ଼ିକରେ ଖଣ୍ଡଗିରି ଠାରେ ଜୈନ ଭିକ୍ଷୁମାନଙ୍କର କାର୍ଯ୍ୟକଳାପ

ସମ୍ପର୍କରେ ଉଲ୍ଲେଖ ରହିଛି । ଉଦ୍ୟୋତକେଶରୀଙ୍କ ଅଷ୍ଟମ ବର୍ଷରେ କୁମାର ପର୍ବତ (ଖଣ୍ଡଗିରି)ରେ ନବମୁନି, ବାରଭୁଜ ଏବଂ ଲଲାଟେନ୍ଦୁ କେଶରୀ ଗୁମ୍ଫାମାନ ଖୋଦିତ ହୋଇ-ଥିଲା ।

ରାଖାଲଦାସ ବାନାର୍ଜିଙ୍କ ଦ୍ୱାରା ଲଲାଟେନ୍ଦୁ କେଶରୀ ଗୁମ୍ଫାର ପାଞ୍ଚପଂକ୍ତି ବିଶିଷ୍ଟ ଶିଳାଲେଖର ପାଠୋଦ୍ଧାର ନିମ୍ନରେ ପ୍ରଦତ୍ତ ହେଲା—

୧. ଓଁ ଶ୍ରୀ ଉଦ୍ୟୋତ କେଶରୀ—ବିଜୟ—ରାଜ୍ୟ ସମ୍ବତ ୫
୨. ଶ୍ରୀ କୁମାର ପବତ—ସ୍ଥାନେ ଜୀର୍ଣ୍ଣ ବାପି ଜୀର୍ଣ୍ଣ ଇସଣ
୩. ଉଦ୍ୟୋତିତ ତସ୍ମିନ ଥାନେ ଚତୁର୍ବିଂଶତି ତୀର୍ଥଙ୍କର
୪. ସ୍ଥାପିତ ପ୍ରତିଷ୍ଠା କାଲେ ହର୍ଉପପ ଯଶନନ୍ଦିକ
୫. ଭ୍ରଦତ ଦ୍ରଥ ଶ୍ରୀ ପାର୍ଶ୍ୱନାଥସ୍ୟ କର୍ମ—ଖସ୍ୱଃ (୨୭)

ଅର୍ଥାତ୍ ଉଦ୍ୟୋତକେଶରୀଙ୍କ ରାଜତ୍ୱର ପଞ୍ଚମ ବର୍ଷରେ ଖଣ୍ଡଗିରିସ୍ଥିତ ଧ୍ୱସ୍ତ-ପ୍ରାପ୍ତ ପୁଷ୍କରିଣୀ ଓ ମନ୍ଦିରମାନଙ୍କର ସଂସ୍କାର କରି ଲଲାଟେନ୍ଦୁ କେଶରୀ ଗୁମ୍ଫା ଗାତ୍ରରେ ଚତୁର୍ବିଂଶ ତୀର୍ଥଙ୍କର ମୂର୍ତ୍ତି ସ୍ଥାପନ କରିଥିଲେ । ତତସ୍ଥ ଏକ ମନ୍ଦିରରେ ଶ୍ରୀ ପାର୍ଶ୍ୱନାଥଙ୍କ ପ୍ରତିମା ପ୍ରତିଷ୍ଠା କରାଯାଇଥିଲା । ଯଶନନ୍ଦି ନାମକ ଜଣେ ଜୈନାଚାର୍ଯ୍ୟ ପାର୍ଶ୍ୱନାଥ ବିଗ୍ରହର ଅର୍ଚ୍ଚନାବିଧି ନିମନ୍ତେ ନିଯୁକ୍ତ ହୋଇଥିଲେ ।

କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ (୨୭) ଦ୍ୱାରା ଉକ୍ତ ଶିଳାଲେଖର ସଂଶୋଧିତ ପାଠ ନିମ୍ନରେ ଉଦ୍ଧୃତ ହେଲା —

୧. ଓଁ ଶ୍ରୀମଦ୍—ଉଦ୍ୟୋତକେଶରୀ—ବିଜୟ ରାଜ୍ୟ ସମ୍ବତ ୫୪୧
୨. ଶ୍ରୀ—କୁମାର—ପର୍ବତ—ସ୍ଥାନେ ଜୀର୍ଣ୍ଣ-ବାପି-ଜୀର୍ଣ୍ଣ—ପୁଷ୍କରିଣୀ
୩. ଉଦ୍ଧାଟିକୃତ ସ୍ଥାନେ ପାନେ ଚତୁର୍ବିଂଶତି ତୀର୍ଥଙ୍କର
୪. ସ୍ଥାପିତ ସତ୍—ନ—ପାଷାଣ୍ଡ—ହାନିପି (ନ୍ୟ -ଅପି) ଶ୍ରୀ ଜତ—ସ ଦାମ୍ନି କ
୫. ହୋବ (ଧ / ଓଦସ୍ୱାମ୍ ଶ୍ରୀ ପାର୍ଶ୍ୱନାଥସ୍ୟ କର୍ମ ହେତୁଃ ।

ଅର୍ଥାତ୍ ୫୦୧ ଗଙ୍ଗାବ୍ଦ (ଖ୍ରୀ.ଅ. ୧୦୪୫)ରେ ଶ୍ରୀ ଉଦ୍ୟୋତ କେଶରୀଙ୍କ ରାଜତ୍ୱ କାଳରେ କୁମାର ପର୍ବତ (ଖଣ୍ଡଗିରି)ରେ ଜୈନ ଭିକ୍ଷୁମାନଙ୍କ ସ୍ନାନ ପାନାଦି ନିମନ୍ତେ ଜୀର୍ଣ୍ଣକୂପ ଓ ପୁଷ୍କରିଣୀ ଗୁଡ଼ିକ ସଂଶୋଧିତ ଏବଂ ଚତୁର୍ବିଂଶ ତୀର୍ଥଙ୍କରଙ୍କ ମୂର୍ତ୍ତି ଗୁମ୍ଫା ଗାତ୍ରରେ ସ୍ଥାପିତ ହୋଇଥିଲା । ଯଦି କୌଣସି ଧର୍ମଦ୍ରୋହୀ ଏସବୁ ନଷ୍ଟ କରେ ତେବେ ସେ ନଷ୍ଟିତ ରୂପେ ଶ୍ରୀ ପାର୍ଶ୍ୱନାଥଙ୍କ କ୍ରୋଧକୁ ଉଦ୍ଦୀପନ କରିବ ।

ନବମୁନି ଗୁମ୍ଫାର ଶିଳାଲେଖ ରାଖାଲଦାସ ବାନାର୍ଜି (୨୮) ନିମ୍ନପ୍ରକାରେ ପାଠ କରିଛନ୍ତି—

୧ । ଓଁ ଶ୍ରୀମଦ୍—ଉଦ୍ୟୋତକେଶରୀ ଦେବସ୍ୟ ପ୍ରବର୍ଦ୍ଧମାନେ ବିଜୟ ରାଜ୍ୟ ସମ୍ଭତ ୧୮
୨ । ଶ୍ରୀ ଆର୍ଯ୍ୟ ସଘ ପ୍ରତିବଦ୍ଧଙ୍କ— ଗହ— କୁଳ—ବିନିର୍ଗତ—ଦେଶିଗଣ ଆମ୍ନାୟ—
ଶ୍ରୀ କୁଳଚନ୍ଦ୍ର

୩ । ଭଟ୍ଟାରକସ୍ୟ ତସ୍ୟ ଶିଷ୍ୟ—ଶୁଭ ଚନ୍ଦ୍ରସ୍ୟ

ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ (୨୧) ସଂଶୋଧିତ ପାଠ ହେଲା—

୧ । ଓଁ ଶ୍ରୀମଦ ଉଦ୍ୟୋତକେଶରୀ ଦେବସ୍ୟ ପ୍ରବର୍ଦ୍ଧମାନେ ବିଜୟ ରାଜ୍ୟେ ସମ୍ଭତ ୧୮
୨ । ଶ୍ରୀ ଆର୍ଯ୍ୟସଙ୍ଘ— ପ୍ରତିବଦ୍ଧ— ଗ୍ରହଦବାଳ — ବିନିର୍ଗତ -- ଋଷିଗଣ ଆମ୍ନାୟ
ଶ୍ରୀ କୁଳଚନ୍ଦ୍ର—

୩ । ଭଟ୍ଟାରକସ୍ୟ ତସ୍ୟ ଶିଷ୍ୟ ଶୁଭଚନ୍ଦ୍ରସ୍ୟ । X ତେ ୧

ରାଖାଲ ଦାସ ବାନାର୍ଜି ଏବଂ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ପଠନରେ କିଞ୍ଚିତ ପ୍ରଭେଦ ରହିଥିଲେ ମଧ୍ୟ ସଚିତ ଶିଳାଲେଖର ସାରମର୍ମ ହେଲା—ଉଦ୍ୟୋତକେଶରୀଙ୍କ ରାଜତ୍ୱର ଅଷ୍ଟାଦଶ ବର୍ଷରେ (ଖ୍ରୀ.ଅ.୧୦୫୫) ଶ୍ରୀ କୁଳଚନ୍ଦ୍ର ଭଟ୍ଟାରକଙ୍କ ଶିଷ୍ୟ ଶୁଭଚନ୍ଦ୍ର ଶ୍ରୀ ଆର୍ଯ୍ୟ ସଙ୍ଘ ସମ୍ପୃକ୍ତ ଏବଂ ଗହଦ ବାଳ (ଉତ୍ତର ପ୍ରଦେଶର ଗଡ଼ୱାଲ)ରୁ ଆଗତ ମୁନିଋଷି (ଜୈନମୁନି) ଗଣଙ୍କ ଆଶ୍ରୟ (ଆବାସ) ନିମନ୍ତେ ଏହି ଗୁମ୍ଫା (ନବମୁନି ଗୁମ୍ଫା) ମନ୍ଦିର ନିର୍ମିତ ହୋଇଥିଲା ।

ନବମୁନି ଗୁମ୍ଫାର ଅନ୍ୟ ଏକ ଶିଳାଲିପି (୩୦) ହେଲା—

୧ । ଓଁ ଶ୍ରୀ ଆଚାର୍ଯ୍ୟ—କୁଳଚନ୍ଦ୍ରସ୍ୟ ତସ୍ୟ
୨ । ଶିଷ୍ୟ ଚେଲ୍ଲ ଶୁଭଚନ୍ଦ୍ରସ୍ୟ
୩ । ଛତ୍ର ଧ୍ୱଜ

ଅର୍ଥାତ୍ ଆଚାର୍ଯ୍ୟ କୁଳଚନ୍ଦ୍ରଙ୍କ ଚେଲ୍ଲା (ଶିଷ୍ୟ) ଶୁଭଚନ୍ଦ୍ର ଛତ୍ରଧ୍ୱଜ ଅର୍ପଣ କରିଥିଲେ । ଏହି ଛତ୍ରଧ୍ୱଜ ଜୈନ ତୀର୍ଥଙ୍କରଙ୍କୁ ଅର୍ପିତ ହୋଇଥିବା ମନେହୁଏ । ତୀର୍ଥଙ୍କରଙ୍କୁ ଅଥବା ବୋଧିସତ୍ତ୍ୱଙ୍କୁ ଛତ୍ରଧ୍ୱଜ ଉତ୍ସର୍ଗ କରିବାର ପରମ୍ପରା ଯଥାକ୍ରମେ ଜୈନ ଓ ବୌଦ୍ଧ ସମ୍ପ୍ରଦାୟରେ ସେ ସମୟରେ ପ୍ରଚଳିତ ଥିଲା ।

ଲଲାଟେନ୍ଦୁ କେଶରୀ ଓ ନବମୁନି ଗୁମ୍ଫାସ୍ଥ ଶିଳାଲେଖ ଗୁଡ଼ିକରୁ ପ୍ରମାଣିତ ହୁଏ ଯେ ଉଦ୍ୟୋତ କେଶରୀଙ୍କ ରାଜତ୍ୱ କାଳରେ ଖଣ୍ଡଗିରିରେ ଗୁମ୍ଫା ମନ୍ଦିର ନିର୍ମିତ ହୋଇ ତହିଁରେ ଜୈନ ତୀର୍ଥଙ୍କର ମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା । ସୁଦୂର ଗଡ଼ୱାଲରୁ ଜୈନ-ଭିକ୍ଷୁମାନେ ଖଣ୍ଡଗିରି ଆସି ସେଠାରେ ଅବସ୍ଥାନ କରୁଥିଲେ । ଜୈନାଚାର୍ଯ୍ୟ ଶୁଭଚନ୍ଦ୍ର, ଯଶନନ୍ଦ ଓ ଅନ୍ୟାନ୍ୟ ଜୈନ ବିଦ୍ୱାନ୍‌ମାନେ ଚତୁର୍ବିଂଶ ତୀର୍ଥଙ୍କରଙ୍କୁ ଆରାଧନା କରିବା ସଙ୍ଗେ ସଙ୍ଗେ ଜୈନଧର୍ମ ଓ ଦର୍ଶନ ଉପରେ ପ୍ରବଚନ ଦେଉଥିଲେ । ସେମାନଙ୍କ ସ୍ନାନ, ପାନ ଓ ଆବାସ ନିମନ୍ତେ ଜୀର୍ଣ୍ଣ କୂପ ଓ ପୁଷ୍କରିଣୀର ପୁନରୁଦ୍ଧାର ତଥା ଗୁମ୍ଫାମାନ ଖୋଦନ

କରାଯାଇଥିଲା । ଶୈବ ଧର୍ମାବଲମ୍ବୀ ହେଲେ ହେଁ ଉଦ୍ୟୋତକେଶରୀ ଯେ ଜୈନ ଧର୍ମ ପ୍ରତି ଉଦାରତା ପ୍ରଦର୍ଶନ ପୂର୍ବକ ଉକ୍ତ ଧର୍ମର ଉନ୍ନତି ସାଧନ କରିଥିଲେ ତାହା ବାସ୍ତବିକ ପ୍ରଣିଧାନଯୋଗ୍ୟ ।

ପୂର୍ବରୁ ବର୍ଣ୍ଣାଯାଇଛି ଯେ ହୁଏନ୍ ସାଂଙ୍କର କଳିଙ୍ଗରେ ପରିଭ୍ରମଣ ବେଳେ ସେଠାର ଅଧିକାଂଶ ଅଧିବାସୀ ନିର୍ଗ୍ରନ୍ଥ (ଜୈନ) ସମ୍ପ୍ରଦାୟର ଥିଲେ । କଳିଙ୍ଗର ଗଙ୍ଗରାଜାମାନେ ପ୍ରଥମେ ଜୈନ ଥିଲେ । ମଧ୍ୟଯୁଗରେ ସେମାନେ ଶୈବଧର୍ମ ଗ୍ରହଣ କଲେ ମଧ୍ୟ ଜୈନ ଧର୍ମ ପ୍ରତି ଉଦାର ଥିଲେ । ଗଙ୍ଗରାଜା ଚତୁର୍ଥ ଦେବେନ୍ଦ୍ର ବର୍ମନ୍ (ଖ୍ରୀ.ଅ.୮୪୯)ଙ୍କ ବାଙ୍ଗାଲେର୍ ତାମ୍ରଲେଖ (୩୧) ର ରାଜକୀୟ ମୁଦ୍ରା (Royal Seal)ରେ କଳିଙ୍ଗର ଗଙ୍ଗବଂଶୀୟ ରାଜକୀୟ ଲାଞ୍ଛନା ବୃଷଭ ପରିବର୍ତ୍ତେ ମସ୍ତକରୁ ଶାଖା ଗଙ୍ଗରାଜାଙ୍କ ହସ୍ତୀ ଲାଞ୍ଛନ ଅଙ୍କିତ ହୋଇଛି । ସମ୍ଭବତଃ ଚତୁର୍ଥ ଦେବେନ୍ଦ୍ର ବର୍ମନ୍ ଜୈନ ଧର୍ମରେ ଦୀକ୍ଷିତ ହୋଇଥିବାରୁ ହସ୍ତୀ ଲାଞ୍ଛନ ଖୋଦନ କରିଥିଲେ । ଏହି ସମୟରେ ବିଶାଖାପାଟଣା ଜିଲ୍ଲାର ରାମତୀର୍ଥମ (ଗୁରୁଭକ୍ତ କୋଣ୍ଡା) ନାମକ ପାହାଡ଼ (୩୨)ରେ ଏକ ଜୈନ ସଂସ୍ଥା ଏବଂ କୋରାପୁଟ ଜିଲ୍ଲାର ନନ୍ଦପୁର, ସୁଆଇ, ଭୈରବସିଂହପୁର, କାମତା, ବୋରିଗୁମ୍ମା, ନବରଙ୍ଗପୁର, ମାଳି ନୂଆଗାଁ (୩୩) ଆଦି ସ୍ଥାନରେ ଜୈନ ବିଗ୍ରହମାନ ପ୍ରତିଷ୍ଠା କରାଯାଇଥିଲା । ଗଙ୍ଗରାଜାମାନଙ୍କ ରାଜତ୍ୱକାଳରେ ଓଡ଼ିଶାରେ ପ୍ରଥମେ ଶୈବ ଓ ପରେ ବୈଷ୍ଣବ ଧର୍ମ ପ୍ରାଧାନ୍ୟ ଲାଭ କରିଥିଲେ ମଧ୍ୟ ଜୈନଧର୍ମର ସ୍ଥିତି ଅପ୍ରତିହତ ରହିଥିଲା । ଗଙ୍ଗରାଜାମାନଙ୍କ ପ୍ରୋତ୍ସାହନରେ ଜୈନଧର୍ମ କଳିଙ୍ଗରେ ସମୃଦ୍ଧ ହୋଇପାରିଥିଲା ।

ଅନନ୍ତ ବର୍ମା ଚୋଡ଼ଗଙ୍ଗଦେବଙ୍କ ପୁତ୍ର ଅନନ୍ତ ବର୍ମା ରାଜରାଜ ଦ୍ୱିତୀୟ (ଖ୍ରୀ.ଅ. ୧୧୭୦-୧୧୯୦)ଙ୍କ ରାଜତ୍ୱର ଏକାଦଶ ବର୍ଷରେ(ଶକାବ୍ଦ ୧୧୦୦ ଅର୍ଥାତ୍ ଖ୍ରୀ ଅ.୧୧୭୮) କନ୍ନମ ନାୟକ (ସେଠୀ) ନାମକ ଜନୈକ ଜଣେ ସାମନ୍ତ ରାଜା ରାମରାମ ଗିରି (ଆଧୁନିକ ରାମତୀର୍ଥମ୍) ସ୍ଥିତ ଏକ ମନ୍ଦିରରେ ଜୈନ ବିଗ୍ରହ ପ୍ରତିଷ୍ଠା କରିଥିଲେ । ଏହି ଜୈନ ମନ୍ଦିର ଗଙ୍ଗରାଜା ରାଜରାଜ ଦ୍ୱିତୀୟଙ୍କ ନାମାନୁସାରେ 'ରାଜରାଜ ଜିନାଳୟ' ନାମରେ ନାମିତ ହୋଇଥିଲା । ଭୋଗପୁରର ବଣିକମାନେ ଏହି ମନ୍ଦିରରେ ଦୀପ ପ୍ରଜ୍ଜ୍ୱଳିତ କରିବା ନିମନ୍ତେ ଭୂମିଦାନ କରିଥିଲେ । ତାହା ବିଶାଖାପାଟଣା ଜିଲ୍ଲାର ଭିମିଲିପଟ୍ଟନମ୍ ତାଲୁକାସ୍ଥିତ ଭୋଗପୁରମ୍ ଗ୍ରାମରେ ଥିବା ଏକ ଶିଳାଲେଖ (୩୪)ରୁ ଜ୍ଞାତ ହୁଏ । ତାହା ନିମ୍ନରେ ପ୍ରଦତ୍ତ ହେଲା—

"ଶକାବ୍ଦେ ନଭଖେନ୍ଦୁଚନ୍ଦ୍ର ଗଣିତେ ଶ୍ରୀଭୋଗପୁରସ୍ଥା" ପ୍ରଭୁଃ
ଶ୍ରୀମାନ୍ କନମ ନାୟକ ସ୍ୱପ୍ରତିମାର୍ଙ୍କିତ୍ଵ ଜନ ଷ୍ଠାରନାମ୍
ତସ୍ୟାଗାର ମସିକାରଶ୍ଚ ବଲାସବ୍ ସୌନ୍ଦେଷ୍ଟଧା କ୍ଷତ୍ରରମ୍
ରାମାରାମ ଗିରେସ୍ତଥା ଜନ ପଦାବାଜ୍ ସକ୍ତ ଚକ୍ରିସ୍ୟମ୍ ।"

ଏହି ଶିଳାଲେଖର ୧୮ ଓ ୧୯ ଧାଡ଼ିରେ ଉଲ୍ଲେଖ ଅଛି ଯେ, ରାଜରାଜ ଜିନାଳୟରେ ଅମ୍ବିକାଦେବୀଙ୍କ ମୂର୍ତ୍ତି ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ଅମ୍ବିକା ହେଉଛନ୍ତି ଦ୍ୱାବିଂଶ ତୀର୍ଥଙ୍କର ନେମୀନାଥଙ୍କ ଶାସନ ଦେବୀ ଅଥବା ଯକ୍ଷିଣୀ (୩୫) । ଅତଏବ ରାଜରାଜ ଜିନାଳୟରେ ଉଭୟ ନେମୀନାଥ ଓ ତାଙ୍କ ଯକ୍ଷିଣୀ ଅମ୍ବିକାଦେବୀଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇ ପୂଜିତ ହେଉଥିଲେ । ସମ୍ମୋହନ ତନ୍ତ୍ର ଅନୁସାରେ ନିମ୍ନୋକ୍ତ ଧ୍ୟାନ ଅମ୍ବିକା ଦେବୀଙ୍କ ପ୍ରତି ଉଦ୍ଦିଷ୍ଟ—

"ଉଦୟଦ୍ ଭାସ୍ୱତ୍ ସମଭ୍ୟାମ୍ ବହତ ନବକ୍ଷୁବାମିନ୍ଦୁ ଖଣ୍ଡାବନଦ୍ଧା ।
ଦ୍ୟୋତନ୍ନୂଳ ତ୍ରିନେତ୍ରଂ ବିବିଧ ମଣିଗଣୈ ଭୂଷିତାଂଗରଗଂ
ହରଗ୍ରୈବେୟ କାଞ୍ଚିଗୁଣ ମଣିବଲୟାଦେବୀ ଚନ୍ଦାମ୍ବରାଧ୍ୟମ୍
ଅମ୍ବା ପାଶାଙ୍କୁଶେଷ୍ଟାମ୍ଭୟ ବରଦା କରମ୍ ଅମ୍ବିକାଂ ତଂ ନମାମି" (୩୬)

ଖ୍ରୀଷ୍ଟୀୟ ଏକାଦଶ-ଦ୍ୱାଦଶ ଶତାବ୍ଦୀରେ ଜୈନ ଭକ୍ତମାନେ କଳିଙ୍ଗରେ 'ଜିନ କୋଲ' ନାମକ ଏକ ମାପ କାଠି (Measuring Rod) ପ୍ରଚଳନ କରିଥିବାର ଉଲ୍ଲେଖ ଗଙ୍ଗରାଜାମାନଙ୍କ ପ୍ରଦତ୍ତ ତାମ୍ରଲେଖମାନଙ୍କରେ ରହିଛି । (୩୭) । ଖ୍ରୀ ଅ: ୧୦୪୫ରୁ ୧୧୯୦ ମଧ୍ୟରେ ଗଙ୍ଗରାଜାମାନେ ଏହି ତାମ୍ର ଶାସନ ଗୁଡ଼ିକ ଦାନ କରିଥିଲେ । 'ଜିନକୋଲ'ଦ୍ୱାରା ମନ୍ଦିରର ଉଚ୍ଚତା ତଥା ଦେବୋତ୍ତର ଭୂମିଗୁଡ଼ିକର ଆୟତନ ମାପ କରାଯାଉଥିଲା । ମଧ୍ୟଯୁଗୀୟ ଓଡ଼ିଶାରେ ପ୍ରଦତ୍ତ ତାମ୍ରଲେଖଗୁଡ଼ିକର ଲେଖକ ତଥା ଖୋଦକମାନଙ୍କ ମଧ୍ୟରୁ ଅନେକ ଜୈନଧର୍ମାବଲମ୍ବୀ ଥିବା ଜଣାଯାଏ । ସେମାନଙ୍କ ମଧ୍ୟରେ ଖଣ୍ଡିଚନ୍ଦ୍ର, ସର୍ବଚନ୍ଦ୍ର, ଭାନୁଚନ୍ଦ୍ର, ବିନୟଚନ୍ଦ୍ର, ଦେବଚନ୍ଦ୍ର, ପଲ୍ଲବଚନ୍ଦ୍ର, ମାତୃଚନ୍ଦ୍ର, ଦାମଚନ୍ଦ୍ର, ପଦ୍ମଚନ୍ଦ୍ର ଆଦି ଉଲ୍ଲେଖଯୋଗ୍ୟ । (୩୮) ।

ସୂର୍ଯ୍ୟବଂଶୀ ଗଜପତି ରାଜତ୍ୱ କାଳରେ (ଖ୍ରୀ.ଅ. ୧୪୩୫-୧୫୪୦) ମଧ୍ୟ ଓଡ଼ିଶାରେ ଜୈନଧର୍ମର ପ୍ରଭାବ ଅପ୍ରତିହତ ଥିଲା । ଏହି ସମୟରେ ଖଣ୍ଡଗିରିର ନିଶୂଳ ଗୁମ୍ଫା ନିର୍ମିତ ହୋଇଥିଲା । ଏହି ଗୁମ୍ଫାରେ ଚତୁର୍ବିଂଶ ଜୈନତୀର୍ଥଙ୍କରଙ୍କ କମନୀୟ ମୂର୍ତ୍ତି ସ୍ଥାପିତ ହୋଇଛି । ପାର୍ଶ୍ୱନାଥଙ୍କ ମସ୍ତକରେ ସର୍ପଫଣା ଛତ୍ରାକାରରେ ପ୍ରସାରିତ ହୋଇଛି । ଏଠାରେ ଋଷଭନାଥଙ୍କ ତିନୋଟି ପ୍ରତିମୂର୍ତ୍ତି ଦେଖିବାକୁ ମିଳେ ।

ଗଜପତି ରାଜତ୍ୱ କାଳରେ ଓଡ଼ିଆ ସାହିତ୍ୟରେ ଜୈନଧର୍ମ ଓ ଦର୍ଶନର ପ୍ରଭାବ ପ୍ରତିଭାତ ହୁଏ । କପିଳେନ୍ଦ୍ର ଦେବଙ୍କ ରାଜତ୍ୱକାଳ (ଖ୍ରୀ ଅ ୧୪୩୫-୧୪୬୮)ରେ ସାରଳା ଦାସ ଓଡ଼ିଆ ଭାଷାରେ ମହାଭାରତ ରଚନା କରିଥିଲେ । ସାରଳା ଦାସ ସ୍ୱୀୟ ମହାଭାରତରେ ଜୈନଧର୍ମର କେତେକ ନୀତିର ଉଲ୍ଲେଖ କରିଛନ୍ତି, ଯଥା : ଜୀବ ହତ୍ୟା ନକରିବା ଅଥବା ବାଦ ବିବାଦ ସହ ସମ୍ପୃକ୍ତ ନହେବା, ନିଜ ସ୍ତ୍ରୀ ଛଡ଼ା ଅନ୍ୟ କାହାର ହାତ ରନ୍ଧଣା ନଖାଇବା, ପର ସ୍ତ୍ରୀ ସହ ରମଣ ନକରିବା । ସାରଳା ମହାଭାରତର

ସ୍ୱର୍ଗାରୋହଣ ପର୍ବରେ ଯମରାଜ ଯୁଧିଷ୍ଠିରଙ୍କୁ ଯେଉଁ ଉପଦେଶମାନ ପ୍ରଦାନ କରିଛନ୍ତି ସେଥିରେ ଜୈନଧର୍ମର ଏହି ନୀତିଗୁଡ଼ିକ ରହିଛି ; ଯମ କହିଥିଲେ—

''ହିଂସା ବିବାଦକୁ କେବେ ନ ଯିବେକ ଦେଖି
ବେନିଜନ କଳହରେ ନ ହୋଇବ ସାକ୍ଷୀ ।
ଆପଣ ସ୍ୱଭାବ ଯାହା କରିବ ଭଞ୍ଜନ
ତାକୁ ଖାଇ ଦୁଃଖେ ସୁଖେ କାଟୁଥିବ ଦିନ ।
ଅତଏବ ତୋ ଜାତକୁ ଶୁହିଁ ତଆରିବୁ
ପରସ୍ତ୍ରୀ ରମିବାକୁ ତାଙ୍କୁ ନବାରିବୁ
ଅନ୍ୟଜାତି ସ୍ତ୍ରୀଙ୍କର ନ ଛୁଇଁବେ ଅଙ୍ଗ
କଦାପି ସେ ନ କରିବେ କୁଜନଙ୍କ ସଙ୍ଗ । (ସ୍ୱ.ପ.ପୃ ୯)

ଅପରିଗ୍ରହ ଅର୍ଥାତ୍ ଧନ ସଞ୍ଚୟ ନକରିବା ଓ ସତ୍ୟ ଆଚରଣ କରିବା ନୀତିମାନ ଜୈନଧର୍ମର ପଞ୍ଚମହାବ୍ରତ ମଧ୍ୟରେ ପରିଗଣିତ ହୁଏ । ଅଧିକ ଉପାର୍ଜନ ଓ ଲାଭପାଇଁ ବିଦେଶ ନ ଯିବାକୁ ଯମ ଯୁଧିଷ୍ଠିରଙ୍କୁ ଯେଉଁ ଉପଦେଶ ଦେଇଛନ୍ତି ସେଥିରେ ଧନ ସମ୍ପତ୍ତି ପ୍ରତି ଲାଳାୟିତ ନ ହେବା ଏବଂ ସଞ୍ଚୟଶୀଳ ନ ହେବାର ଭାବନା ନିହିତ । ପୁନଶ୍ଚ ଯମ ଯୁଧିଷ୍ଠିରଙ୍କୁ ମିଥ୍ୟା ନକହିବା ପାଇଁ ଉପଦେଶ ଦେଇଛନ୍ତି ।

ସାରଳା ଦାସ ଲେଖିଛନ୍ତି ଯେ ଭୁବନେଶ୍ୱର ନାମକ ଯତି ଯେତକ ମିଳୁଥିଲା ସେତକରେ ଚଳୁଥିଲେ, ଅର୍ଥାତ୍ ସେ ସଞ୍ଚୟଶୀଳ ନଥିଲେ । ଭୁବନେଶ୍ୱର ମିଥ୍ୟା ଓ କପଟତା ଆଚରଣ କରୁନଥିଲେ । ଏଥିରୁ ପ୍ରତିପାଦିତ ହୁଏ ଯେ ସାରଳା ମହାଭାରତର ସ୍ୱର୍ଗ ପର୍ବରେ ବର୍ଣ୍ଣିତ ଯମଙ୍କ ବାଣୀରେ ଜୈନଧର୍ମର ନୀତି ଓ ଦର୍ଶନ ହିଁ ରୂପାୟିତ ହୋଇଅଛି । କବି ସାରଳା ଦାସ ଜୈନଧର୍ମ ପ୍ରତି ସଚେତନ ରହି ଭୁବନେଶ୍ୱରଙ୍କ ଦେହତ୍ୟାଗର କାଳ ଉଲ୍ଲେଖ କରିଛନ୍ତି । ଚବିଶ ତୀର୍ଥଙ୍କର ମହାବୀରଙ୍କ ମହାପ୍ରସ୍ଥାନ କାର୍ତ୍ତିକ ମାସ କୃଷ୍ଣପକ୍ଷ ଅମାବାସ୍ୟାରେ ହୋଇଥିଲା । କବିଙ୍କ ଭୁବନେଶ୍ୱର ଯତିଙ୍କ ଦେହତ୍ୟାଗର କାଳ ମଧ୍ୟ ତାହାହିଁ ଥିଲା ।

''ଏ ସମୟେ ପ୍ରାଣତ୍ୟାଗ କଲେ ସେହୁ ଯତି
ପୁଣ୍ୟମାସ କାର୍ତ୍ତିକରେ ସେ ରାତି ପାହାନ୍ତି ।
ସେହିଦିନ ସେ ଶବର ପ୍ରାଣକୁ ଛାଡ଼ିଲା
ଅନ୍ତେ ଯତି ସଙ୍ଗେ ଯାଇ ବୈକୁଣ୍ଠେ ବସିଲା ।।''
(ସ୍ୱର୍ଗ ପର୍ବ, ପୃ ୯) (୩୯)

ସାରଳା ଦାସ ସତ୍ୟ ଓ ଅହିଂସା ମାର୍ଗର ସାଧକ ରୂପେ ଯୁଧିଷ୍ଠିରଙ୍କ ଚରିତ୍ରକୁ ଚିତ୍ରଣ କରିଛନ୍ତି । (୪୦) । ସତ୍ୟ ଓ ଅହିଂସା ବ୍ରତ ଜୈନ ପଞ୍ଚମହାବ୍ରତ ଅନ୍ତର୍ଭୁକ୍ତ ଏବଂ ତାହା ସାରଳା ଦାସଙ୍କୁ ପ୍ରଭାବିତ କରିଥିଲା ।

ବଳହୀନା ସ୍ତ୍ରୀ, ବାଳପୁରୁଷ, ରୋଗୀ, ଅନାଶ୍ରୟୀ, ବ୍ରାହ୍ମଣ, ଅଗମ୍ୟ ମାର୍ଗ, ଅସାଧନ ଗୁରୁ, ଦୋଷ୍ଟାରୁଣୀ ଭାର୍ଯ୍ୟା ଆଦିଙ୍କ ସଙ୍ଗେ ସଦ୍ଭାବ କଲେ ଧର୍ମ ନାଶ ହୁଏ ବୋଲି ସାରଳା ଦାସ ଲେଖିଛନ୍ତି । (୪୧) । ଏଥିରୁ ସେ ଜୈନଧର୍ମ ଦ୍ୱାରା ପ୍ରଭାବିତ ହୋଇଥିବା ଅନୁମେୟ ।

ସାରଳା ମହାଭାରତରେ ଜୈନ ହରିବଂଶର ମଧ୍ୟ ପ୍ରଭାବ ପଡ଼ିଛି । ଜୈନ ହରିବଂଶରେ ଉଲ୍ଲେଖ ଅଛି, ଦ୍ରୌପଦୀଙ୍କ ସ୍ୱୟମ୍ବରରେ ଅର୍ଜୁନ ଲକ୍ଷ ବିନ୍ଧିବା ବେଳେ ଘୂର୍ଣ୍ଣିମାନ ଚକ୍ରର ସନ୍ଧିରେ ରାଧା ଅର୍ଥାତ୍ ଲକ୍ଷ୍ୟକୁ ଭେଦ କରିଥିଲେ । ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ମତରେ ସାରଳା ମହାଭାରତରେ ଏହି ରାଧାଚକ୍ର ଶବ୍ଦର ପ୍ରୟୋଗ ହୋଇଛି ଏବଂ ତାହା ଜୈନ ହରିବଂଶରୁ ସାରଳାଦାସଙ୍କ ଦ୍ୱାରା ଉଦ୍ଧୃତ ହୋଇଛି । (୪୨) ।

ସାରଳାଦାସଙ୍କ ମହାଭାରତରେ ବର୍ଣ୍ଣିତ ଜାଜୁଘଣ୍ଟ ବିଷୟଟି ଆଲୋଚନା କରିବାକୁ ଯାଇ ଶ୍ରୀ ଗୋପୀନାଥ ମହାନ୍ତି (୪୩) । ଲେଖିଛନ୍ତି —ଜାଜୁଘଣ୍ଟ ଥିଲେ କଳିଙ୍ଗର ଜଣେ ପ୍ରବଳ ପ୍ରତାପୀ ରାଜା । ସେ ଦିଗମ୍ବର ହୋଇ ଅହିଂସା ବ୍ରତ ପାଳନ ତଥା ଭିକ୍ଷା ଗ୍ରହଣ କରି ଜୀବିକା ନିର୍ବାହ କରୁଥିଲେ । ଏଥିରୁ ରାଜା ଜାଜୁଘଣ୍ଟ ଜୈନଧର୍ମ ଅବଲମ୍ବନ କରିଥିବା ମନେ ହୁଏ । ସିନ୍ଧୁର ଓ ମନ୍ଦାରର ରାଜା ଜାଜୁଘଣ୍ଟ ଚକ୍ରବର୍ତ୍ତୀ ହେଲେ ହେଁ ଦିଗମ୍ବର ହୋଇ ଭିକ୍ଷା କରୁଥିଲେ ବୋଲି ସାରଳା ଦାସ ସଭାପର୍ବରେ ଉଲ୍ଲେଖ କରିଛନ୍ତି ।

"ହିନକର ବଚନେ ସେ ସିନ୍ଧୁରାଜାର ତନୁ ।
ସେହି ଘଣ୍ଟେକ ବାନ୍ଧିଲ ତା'ର ଜାନୁ ।
ମହାଛତ୍ରୀ ବିଦ୍ୟା କରି ସମ ରାଜ୍ୟ କରି ରକ୍ଷା ।
ଜନ ପରଜା ପାଳି ରାଜା ଆପଣେ ମାଗଇ ଭିକ୍ଷା ।
ଘଣ୍ଟାରବ ଶବଦ ଶ୍ରବଣ କରେଣ ଖପର ଧରି ।
ସଂସାର ଜନ ହସନ୍ତି ନୃପତି ବୁଲଇ ଦିଗମ୍ବରୀ ।" (୪୪)

ଓଡ଼ିଶାର ଗାଁ ଗହଳରେ ଏହି ରାଜା ଜାଜୁଘଣ୍ଟଙ୍କ ଅନୁଗାମୀମାନେ ଜାଜୁଘଣ୍ଟିଆ ନାମରେ ପରିଚିତ । କଟକ ଜିଲ୍ଲାର ବଡ଼ମ୍ବା, ନରସିଂହପୁର, ପୁରୀ ଜିଲ୍ଲାର ଖଣ୍ଡପଡ଼ା, ଗଞ୍ଜାମ ଜିଲ୍ଲାର ମୋହାନାର (ସାନଖେମୁଣ୍ଡି) ନିକଟବର୍ତ୍ତୀ ସିର୍ଙ୍ଗିପୁର,ଧରାକୋଟ, ନମଖଣ୍ଡି ପ୍ରଭୃତି ସ୍ଥାନରେ ସେମାନଙ୍କର ମଠମାନ ସ୍ଥାପିତ ହୋଇଛି । ଗଞ୍ଜାମ ଜିଲ୍ଲାର ଧାନରାଶି, ନୂଆପଡ଼ା, ଅଜରଗଡ଼ ବାଙ୍କଲିକଣା, ଶିବାପୁର,ମୁଣ୍ଡମରାଇ ହନୁମାନ ଦ୍ୱାର,ବାରଧାର୍ଙ୍ଗିଡ଼ି, ସାରୁ, ନମଖଣ୍ଡି, ହରଡ଼ାଖଣ୍ଡି, କୁକୁଡ଼ୁଡ଼ି, ଦାନପୁର ଷଣ୍ଢମୂଳ, କରଚଲି,ରମ୍ଭା, ପାରଳାଖେମୁଣ୍ଡି ଏବଂ ଭଞ୍ଜନଗର ଅଞ୍ଚଳରେ ଜାଜୁଘଣ୍ଟିଆମାନଙ୍କୁ ବହୁ ସଂଖ୍ୟାରେ ଦେଖିବାକୁ ମିଳେ । ଜାଜୁଘଣ୍ଟିଆମାନେ ବେକରେ ତୁଳସୀମାଳ ପିନ୍ଧି, କାନରେ ତୁଳସୀ କାଠି ଗୁଞ୍ଜି ଏବଂ ଡାହାଣ ଜାନୁରେ ଘଣ୍ଟାବାନ୍ଧି ପରଶୁରାମ ବେଶରେ ମଧ୍ୟାହ୍ନରେ ଭିକ୍ଷା ଉଦ୍ଦେଶ୍ୟରେ ଗାଁକୁ ଗାଁ ବୁଲନ୍ତି । କିନ୍ତୁ ସେମାନେ କାହାରିକୁ ଭିକ୍ଷା ମାଗନ୍ତି ନାହିଁ । ଘଣ୍ଟାଶବ୍ଦ ଶୁଣି

ଗ୍ରାମବାସୀମାନେ ସ୍ୱତଃ ପ୍ରବୃତ୍ତ ହୋଇ ସେମାନଙ୍କୁ ଯେ କୌଣସି ଏକ ପାତ୍ରୁଆ, ଖୋପେଇ, ଝୁଙ୍ଗୁଡ଼ି, ଆଳ କମ୍ବା ମାଙ୍କି ପାତ୍ରରେ ଭିକ୍ଷା ଦିଅନ୍ତି । ଜାବୁପର୍ଣ୍ଣି ଆମାନଙ୍କୁ ହାତରେ ଭିକ୍ଷାଦାନ କରାଯାଏ ନାହିଁ । ଜାବୁପର୍ଣ୍ଣି ଆମାନେ ପରଶୁରାମଙ୍କ ଭକ୍ତ ରୂପେ ନିଜର ପରିଚୟ ଦିଅନ୍ତି । ସେମାନେ ନିରାମିଷ ଆହାରୀ । ସ୍ତ୍ରୀଙ୍କ ହାତ ରାନ୍ଧଣା ସେମାନେ ଖାଆନ୍ତି ନାହିଁ । ସୂର୍ଯ୍ୟାସ୍ତପରେ ସେମାନେ ଭୋଜନ କରନ୍ତି ନାହିଁ । ସେମାନେ ଅହିଂସା ବ୍ରତ ପାଳନ ପୂର୍ବକ ଯୋଗ ସାଧନା କରନ୍ତି । ସୁତରାଂ ଜାବୁପର୍ଣ୍ଣି ଆମାନଙ୍କ ଉପରେ ଜୈନଧର୍ମର ପ୍ରଭାବ ପଡ଼ିଥିବା ପ୍ରତୀତ ହୁଏ ।

ସାରଳା ମହାଭାରତରେ ନାଥ ଧର୍ମର ଉତ୍ପତ୍ତି ତଥା ନାଥ ଯୋଗୀମାନଙ୍କର କ୍ରିୟା-କଳାପର ଉଲ୍ଲେଖ ରହିଛି । (୪୫) । ମଧ୍ୟ ଯୁଗରେ କେନ୍ଦୁଝର, ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲାମାନଙ୍କରେ ନାଥ ଧର୍ମ ପ୍ରଭାବ ବିସ୍ତାର କରିଥିଲା । ନାଥ ଧର୍ମ ସହିତ ଜୈନ ଧର୍ମର ସଂଯୋଗ ଥିବା ଅନୁମାନ କରାଯାଏ । ଜୈନଧର୍ମ ସଦୃଶ ନାଥଧର୍ମ ଯୋଗସାଧନା ଓ କାୟକ୍ଲେଶ ଉପରେ ଗୁରୁତ୍ୱାରୋପ କରେ । ନାଥଧର୍ମର ମୂଖ୍ୟଉପଜୀବ୍ୟ ଉପାଦାନ ହେଲା ଯୋଗ । ଯୋଗସାଧନ ବେଳେ ସାଧକ ନିଜରଣରାଗ,ପରିବେଶ,ସଂସାର ଓ ନିଜ ଅହଂଭାବକୁ ତ୍ୟାଗ କରି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ମନୋନିବେଶ କଲେ ସିଦ୍ଧି ଲାଭ ସହଜ ହୁଏ ବୋଲି ନାଥଯୋଗୀଙ୍କର ବିଶ୍ୱାସ । ଏହି ଧର୍ମର ସିଦ୍ଧ ପୁରୁଷମାନେ 'ନାଥ' ଉପାଧି ଧାରଣ କରି-ଥିଲେ । ସେମାନଙ୍କ ମଧ୍ୟରେ ମତ୍ସ୍ୟେନ୍ଦ୍ରନାଥ ବା ମୀନନାଥ (ସପ୍ତମ-ଅଷ୍ଟମ ଖ୍ରୀଷ୍ଟାବ୍ଦ), ଗୋରକ୍ଷ ନାଥ (ନବମ-ଦଶମ, ଖ୍ରୀଷ୍ଟାବ୍ଦ), ଚର୍ପଟ ନାଥ, ବୋଧିନାଥ ଆଦି ଉଲ୍ଲେଖ-ଯୋଗ୍ୟ । 'ନାଥ' ଉପାଧି ଯୋଗୁ ହିଁ ଏହି ଧର୍ମ ନାଥଧର୍ମ ନାମରେ ଅଭିହିତ । (୪୬) । ଆଦିନାଥ ସେମାନଙ୍କର ପ୍ରଥମ ସିଦ୍ଧ ପୁରୁଷ ବୋଲି ନାଥଯୋଗୀମାନଙ୍କର ବିଶ୍ୱାସ । ସେହି-ଭଳି ଜୈନଧର୍ମର ମଧ୍ୟ ଆଦି ତୀର୍ଥଙ୍କର ହେଉଛନ୍ତି ଋଷଭନାଥ । ସେ ମଧ୍ୟ ଆଦିନାଥ ନାମରେ ଖ୍ୟାତ । ଚତୁର୍ବିଂଶ ତୀର୍ଥଙ୍କର ମହାବୀର ସ୍ୱୟଂ ଯୋଗୀଥିଲେ ଏବଂ ଜୈନଧର୍ମରେ ଯୋଗର ପର୍ଯ୍ୟାପ୍ତ ସ୍ଥାନ ନିର୍ଦ୍ଦେଶ କରିଯାଇଛନ୍ତି । ନାଥ ସମ୍ପ୍ରଦାୟରେ ସିଦ୍ଧିର ଉପାୟ ରୂପେ ଯୋଗମାର୍ଗ ଏପରି ଆଦୃତହୋଇଥିଲା ଯେ ସେହି ସମ୍ପ୍ରଦାୟକୁ ସର୍ବସାଧାରଣ ଯୋଗୀ ସମ୍ପ୍ରଦାୟ ନାମରେ ନାମିତ କରିଥିଲେ । (୪୭) ! ନାଥ ଧର୍ମର ପ୍ରଧାନାଚାର୍ଯ୍ୟ ଦ୍ୱୟ ମତ୍ସ୍ୟେନ୍ଦ୍ରନାଥ ଓ ଗୋରକ୍ଷନାଥ ବହୁଳ ଭାବରେ ଯୋଗ ମାର୍ଗ ପ୍ରଚାର କରିଥିଲେ । ଜୈନ ମାନଙ୍କ ପରି ନାଥଯୋଗୀମାନେ ମଧ୍ୟ ଅହିଂସା, ସତ୍ୟ, ଅସ୍ତେୟ, ଅପରିଗ୍ରହ, ବ୍ରହ୍ମଚର୍ଯ୍ୟ, ତପଃ, ସ୍ୱାଧ୍ୟାୟ, ଧ୍ୟାନ ପ୍ରଭୃତି ବ୍ରତ ପାଳନ କରନ୍ତି । ଜୈନ ତୀର୍ଥଙ୍କରମାନଙ୍କ ପରି ନାଥ ଧର୍ମର ସିଦ୍ଧ ପୁରୁଷମାନଙ୍କୁ କାୟୋତ୍ସର୍ଗ ଅଥବା ଯୋଗାସନ ମୁଦ୍ରାରେ ଦେଖିବାକୁ ମିଳେ । ଅତଏବ ନାଥ ଧର୍ମରେ ଯେ ଜୈନଧର୍ମର ପ୍ରଭାବ ପଡ଼ିଛି କହିଲେ ଅତ୍ୟୁକ୍ତି ହେବନାହିଁ । ନାଥଧର୍ମର ଆଦି ସିଦ୍ଧ ପୁରୁଷ ଜୈନଧର୍ମାବଲମ୍ବୀ ଥିବା ଅନୁମେୟ । ନାଥ ସିଦ୍ଧମାନେ ଜୈନଧର୍ମର ସାରନୀତି ଓ ଉତ୍ତମ ପରମ୍ପରା ଗୁଡ଼ିକୁ ନିଜ ଧର୍ମଧାରାର ଅନ୍ତର୍ଭୁକ୍ତ କରିଥିଲେ ।

ପଞ୍ଚସଖା ସାହିତ୍ୟ (ଜଗନ୍ନାଥ, ବଳରାମ, ଅଚ୍ୟୁତାନନ୍ଦ, ଯଶୋବନ୍ତ, ଓ ଶିଶୁ ଅନନ୍ତଙ୍କ ଲେଖା) ରେ ମଧ୍ୟ ଜୈନଧର୍ମର ପ୍ରଭାବ ପରିଦୃଷ୍ଟ ହୁଏ । ଜୈନ ଧର୍ମର ବିଭିନ୍ନ ନୀତି, ଯଥା—ଅହିଂସା, ଜୀବପ୍ରତି ଦୟା, ଜୀବର ଅନିତ୍ୟତା, ଜାତିପ୍ରଥାର ଉଚ୍ଛେଦ, ସତ୍ସଙ୍ଗ ଓ ଆଚାର, ଆତ୍ମ ସଂଯମ, ଭାବ ଶୁଦ୍ଧି, ନିର୍ବାଣ ପ୍ରତି ଆସକ୍ତି ଇତ୍ୟାଦି ପଞ୍ଚସଖା ସାହିତ୍ୟରେ ଉଲ୍ଲିଖିତ ହୋଇଛି । ପଞ୍ଚସଖା କବିମାନେ ଜାତିପ୍ରଥାର ଘୋର ବିରୋଧ କରି-ଥିଲେ । ଜାତି, ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ଯୋଗ ସାଧନ ଓ କେବଳ ଜ୍ଞାନ ଲାଭ କରିପାରିବ ବୋଲି ସେମାନେ ମତବ୍ୟକ୍ତ କରିଛନ୍ତି । 'ବ୍ରହ୍ମସକଳ ହୃଦୟରେ ବ୍ୟାପି ରହିଛି । ଜାତି ଅଜାତି କେବଳ ସାନମାନ୍ୟତାର ପରିଚୟ' । ଅଚ୍ୟୁତାନନ୍ଦ ଲେଖିଛନ୍ତି—

"ଏତା ବ୍ରହ୍ମ ଦେଖ ଜଗତେ ବ୍ୟାପିଛି ଛିଦ୍ର କଲେ ହୁଏ ଖେଦ ।
ଜାତି ଅଜାତି ଯେ ନିସ୍ତାପର ନାହିଁ ନାହିଁ ତହିଁରେ ଯେ ଭେଦ" ।। (୪୮)

ପଞ୍ଚସଖାଙ୍କ ମଧ୍ୟରେ ଜଗନ୍ନାଥ ଦାସଙ୍କ ରଚିତ ଓଡ଼ିଆ ଭାଗବତରେ ପଞ୍ଚମ ଖଣ୍ଡ, ପଞ୍ଚମ ଅଧ୍ୟାୟର ଋଷଭ ଚରିତରେ ସତ୍କର୍ମ, ସତ୍ୟ, ଅହିଂସା, ବ୍ରହ୍ମଚର୍ଯ୍ୟ, ତପସ୍ୟା, କାୟକ୍ଲେଶ ଆଦି ଜୈନ ଧର୍ମର ନୀତି ଓ ନିର୍ବାଣ ମାର୍ଗର ଉଲ୍ଲେଖ ରହିଛି । ଏହି ସବୁ ନୀତି ପାଳନ କରିବା ନିମନ୍ତେ ଋଷଭଦେବ ନିଜର ଏକଶତ ପୁତ୍ରଙ୍କୁ ଉପଦେଶ ଦେଇଥିଲେ । ତହିଁରୁ କେତେକାଂଶ ନିମ୍ନରେ ପ୍ରଦତ୍ତ ହେଲା ।

### ଶ୍ରୀ ଋଷଭ ଉବାଚ

ହେ ପୁତ୍ରମାନେ ସାବଧାନ । ଶୁଣହେ ଆମ୍ଭର ବଚନ ।।
ଯେ ପ୍ରାଣୀ ଯେ କାର୍ଯ୍ୟମାନ । ନିରତେ କରେ ଆଚରଣ ।।
ସେ ପ୍ରାଣୀ ବ୍ୟର୍ଥ ଏ ସଂସାରେ । ପଡ଼େ ନରକ ମହାଘୋରେ ।।
ଯେ ବ୍ରହ୍ମକର୍ମ ସତ୍ତ୍ୱଗୁଣ । ଜପ ଅନନ୍ତ ଆରାଧନ ।।
ନିର୍ବାଣ ମାର୍ଗ ଏ ବିହିତ । ଗୁଣ କହିବା ପୁତ୍ରେ ସତ୍ୟ ।।
ସ୍ତ୍ରୀ ସଙ୍ଗମ ଆଦି ଯେତେ । ଯେ ତମ ଦ୍ୱାରକି ଜଗତେ ।।
ଏ ସବ ଦ୍ୱାର ପରିହରି । ମହନ୍ତ ଜନ ସେବା କରି ।।
ମହନ୍ତ ପ୍ରାଣୀ ଅଟେ ସେହି । ପ୍ରଶାନ୍ତ ସାଧୁ ଯେ ବୋଲାଇ ।।
ଯେ ଜନ କ୍ରୋଧ ବିବର୍ଜିତ । ଯାହାର ସୁହୃଦ ଜଗତ ।।
ଯେ ପ୍ରାଣୀ ମୋର ପଦ୍ମ ପାଦେ । ମନ ଅର୍ପଇ ଅପ୍ରମାଦେ ।।।
ଯେ ଜନ ଜାୟା ଗୃହଧନ । ତନୟ କ୍ଲେଶ ନାନା କର୍ମ ।।
କରଇ ନାନା ଭ୍ରମ ହୋଇ । ଯାବନ୍ତ ମୋତେ ନ ଭଜଇ ।।
ଅନିତ୍ୟ ଦେହ ନିତ୍ୟ କରେ । ସେ ସାଧୁ ନୁହଇ ସଂସାରେ ।।
ତାବତ ପରାଭବ ପାଇ । ଯାବନ୍ତ ଆତ୍ମା ନ ଚିହ୍ନଇ ।।

ଯାବତ୍ ନାନା କର୍ମ କରେ । ମନ ବଢ଼ାଇ ନିରନ୍ତରେ ॥
ତାବତ କର୍ମ ବଶ ହୋଇ । ନାନାଦି ଶରୀର ବହଇ ॥
ଅବ୍ୟୟ ବାସୁଦେବ ମୁହିଁ । ମୋରେ ଯାହାର ପ୍ରୀତି ନାହିଁ ॥
ସେ ନୋହେ ଦେହ ବନ୍ଧନ ପାର । ଯେଣୁ ସେ ନିଚନ୍ତେ ଅସ୍ଥିର ॥
ସ୍ୱପନ ପ୍ରାୟେ ଦେହେ ନର । କରଇ ନାନା ଅହଙ୍କାର ॥
ନିଦ୍ରାରେ ଯେସନ୍ତେ ସୁଖ ଭୋଗେ । ଜାଗ୍ରତେ ନ ପାଇ ତା ଲାଭ ॥
ଗୃହବନ୍ଧରେ ଏ କାରଣ । ନାରୀ ସଙ୍ଗତେ ଅନୁଦିନ ॥
ସ୍ତ୍ରୀ ପୁରୁଷ ଭାବ ବହି । ତହିଁରେ ମନକୁ ବାନ୍ଧଇ ॥
ମୋହର ଗୃହ ମୋର ଧନ । ବୋଲି ମାୟାରେ ହୋଇ ଛିନ୍ନ ॥
ତାବତ କର୍ମ ବନ୍ଧମାନ । ନୁହଇ ତାହାର ଖଣ୍ଡନ ॥

× × ×

ଅଖିଳ ଗୁରୁ ମୁହିଁ ହରି । ମୋତେ ଭଜିବ ଦେହ ଧରି ॥
ନିବୃତ୍ତ ଚିତ୍ତ ହୋଇ ନର । ଭକ୍ତି କରିବ ମୋ ପସର ॥
ବ୍ୟସନ ହିଂସାକୁ ଛାଡ଼ିବ । ତା'ପରେ ମୋତେ ଆରାଧିବ ।
ମୋହର ଗୁଣ କର୍ମମାନ । ନିରତେ କରିବ କୀର୍ତ୍ତନ ॥
ଏକାନ୍ତ ଭାବ ମୋହ ଠାରେ । ସ୍ନେହ ପୂଜା କରନ୍ତି ଯେ ନର ॥
ଇନ୍ଦ୍ରିୟ ଗଣକୁ ନିବାରି । ଅଧ୍ୟାତ୍ମ ବିଦ୍ୟାକୁ ଆଚରି ॥
ଶ୍ରଦ୍ଧାରେ ବ୍ରହ୍ମଚର୍ଯ୍ୟା କରେ । ପ୍ରଶାନ୍ତ ସତ୍ୟ ବଚନରେ ॥
ଭବଜନ ମୁଁ ସ୍ନେହ ତରଇ । ଗୃହ ବନ୍ଧନ ତା'ର ନାହିଁ ।
ତାହାର କର୍ମ ବନ୍ଧ ମୁହିଁ । ଅକ୍ଲେଶେ ନିଶ୍ଚୟ ଛେଦଇ ॥
ଆତ୍ମାର ଶ୍ରେୟ କର୍ମ ଠାରେ । ଶ୍ରଦ୍ଧା ନ କରନ୍ତି ପାମରେ ॥
ଅଳପ ସୁଖ ହେତୁ କରି । ଅନ୍ୟାନ୍ୟ ହିଂସାକୁ ଆଚରି ॥
ଅଶେଷ ଦୁଃଖର କାରଣ । କରନ୍ତି ହୋଇ ମତ ଭ୍ରମ ॥
ଦୃଷ୍ଟି ତାହାର ନଷ୍ଟ ହେଇ । ଅବିଦ୍ୟା ସମ୍ଭବେ ଭ୍ରମଇ ॥ (୪୧)

ଚୈତନ୍ୟ ଦାସ କୃତ ବିଷ୍ଣୁଗର୍ଭ ପୁରାଣର ଷଷ୍ଠ ଅଧ୍ୟାୟରେ ଋଷଭଦେବଙ୍କ ବାଣୀରେ ଜୈନ ଧର୍ମର ସତ୍ର ନିହିତ ଅଛି ।

"ଇନ୍ଦ୍ରିୟମାନଙ୍କୁ ଦୃଢ଼ଭାବେ ଥିବ ଛନ୍ଦି ।
ଦୋଷୀଲୋକଙ୍କୁ ରାଜା ଯେସନ୍ତେ କରିଥାଇ ବନ୍ଦୀ ॥
ମାୟା ମିଥ୍ୟା କଥା ମାନ ମୁଖେ ନ ଭାଷିବ ।
ଜାଣିଲେ ନ ଜାଣିଲା ପ୍ରାୟେକ ହୋଇବ ।

ସତ୍ୟବ୍ରତା ଭଇ ସତ୍ୟ ବ୍ରତେ ଥିବ ନିତ୍ୟେ ।
ଅମାର୍ଗ କୁପଥମାନ ନ କରିବ ଚିତ୍ତେ ।
ଗୃହେ ଥିଲେ ନୋହିବ ଅତି ବିଷୟୀ ଜଞ୍ଜାଳୀ ।
ପୁଣ୍ୟ ଧର୍ମ ସମ୍ପାଦ ଅକର୍ମରେ ନ ଚଳ ।।

× × ×

ସକଳ ଭୂତରେ ହୋଇଥିବ ଦୟାପର ।
ଜନ୍ତୁ ଉପରକୁ ନକରିବ ଅହଂକାର ।।

ଉପରୋକ୍ତ ଆଲୋଚନାରୁ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଜୈନଧର୍ମର ପ୍ରଭାବ ପ୍ରମାଣିତ ହୁଏ ।

ମଧ୍ୟଯୁଗରେ ଜଗନ୍ନାଥ ଧର୍ମରେ ଜୈନଧର୍ମର ପ୍ରଭାବ ପଡ଼ିଥିଲା ବୋଲି କେତେକ ଐତିହାସିକ ମତବ୍ୟକ୍ତ କରିଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସ (୫୦), କେଦାରନାଥ ମହାପାତ୍ର (୫୧) । ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ (୫୨), ପଣ୍ଡିତ ବିନାୟକ ମିଶ୍ର (୫୩) ପ୍ରଭୃତିଙ୍କ ମତରେ ଜଗନ୍ନାଥ ହେଉଛନ୍ତି ଜୈନଧର୍ମର ପ୍ରତୀକ । ସେମାନେ ଜଗନ୍ନାଥଙ୍କୁ ଜୈନଧର୍ମର ଉପାସ୍ୟ ବୋଲି ପ୍ରମାଣିତ କରିଛନ୍ତି ।

ଜଗନ୍ନାଥଙ୍କ ନାମର ବର୍ଣ୍ଣେ ଷଣରୁ ହିଁ ଜଣାଯାଏ ସେ ହେଉଛନ୍ତି ଜୈନଧର୍ମର ମୂର୍ତ୍ତି ପ୍ରତୀକ । ତେଣୁ ଜୈନଧର୍ମର ପୃଷ୍ଠପୋଷକ ରାଜା ଇନ୍ଦ୍ରଭୂତ ଜଗନ୍ନାଥଙ୍କୁ ସର୍ବଜିନାର୍ଚ୍ଚିତଙ୍କ ଦ୍ୱାରା ପୂଜିତ ବୋଲି ଉଲ୍ଲେଖ କରିଛନ୍ତି—"ପ୍ରଣିପାତ୍ୟ ଜଗନ୍ନାଥଂ ସର୍ବଜିନବରାର୍ଚ୍ଚିତଂ" । ଜୈନମାନେ ଶ୍ରୀ ଜଗନ୍ନାଥଙ୍କୁ ଜିନେଶ୍ୱର ଅର୍ଥାତ୍ ଆଦିନାଥ ବୋଲି ଗ୍ରହଣ କରିଥା'ନ୍ତି । ସେମାନଙ୍କ ମତରେ ଶ୍ରୀ ଜଗନ୍ନାଥ ହେଉଛନ୍ତି ଜଗତର ନାଥ । ଜୈନମାନଙ୍କର ଧର୍ମ ଓ ଦର୍ଶନ ଯେପରି ଅବ୍ୟକ୍ତ ଓ ଅନିର୍ବଚନୀୟ ସେହିପରି ଦାରୁବ୍ରହ୍ମ ଜଗନ୍ନାଥ ହେଉଛନ୍ତି ଅତି ରହସ୍ୟମୟ ଓ ଅବ୍ୟକ୍ତ । ଜୈନ ଧର୍ମରେ ଯେଉଁ ତ୍ରିରତ୍ନ, ଯଥା : ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ ଚରିତ୍ର ରହିଛି ତାହା ମଧ୍ୟ ଶ୍ରୀ ଜଗନ୍ନାଥଙ୍କ ସଂସ୍କୃତି ଓ ଧର୍ମରେ ରହିଛି । ଜୈନମାନେ ଶ୍ରୀ ଜଗନ୍ନାଥଙ୍କ ତ୍ରିମୂର୍ତ୍ତିଙ୍କୁ ସମ୍ୟକ୍ ଜ୍ଞାନ, ସମ୍ୟକ୍ ଚରିତ୍ର ଓ ସମ୍ୟକ୍ ଦୃଷ୍ଟି ତଥା ପୁରୁଷୋତ୍ତମ, ପୁରୁଷ ଓ ଶଳାକା ରୂପେ 'ଜୈନ ତ୍ରିରତ୍ନ' ର ପ୍ରତୀକ ସ୍ୱରୂପ ସ୍ୱୀକାର କରନ୍ତି । କେତେକ ଗବେଷକ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖ ବର୍ଣ୍ଣିତ କଳିଙ୍ଗ ଜିନ ଓ ଜିନାସନକୁ ଶ୍ରୀ ଜଗନ୍ନାଥ ଓ ରତ୍ନ ବେଦୀ ସହିତ ଚର୍ଚ୍ଚିତ କରିବାର ପ୍ରୟାସ କରିଛନ୍ତି ।

ଜଗନ୍ନାଥଙ୍କ ନାମର ଶେଷ ଦୁଇଟି ଅକ୍ଷର 'ନାଥ' । ଏହି 'ନାଥ' ଶବ୍ଦ ଜୈନ ଧର୍ମର ଏକ ବିଶେଷତ୍ୱ । ୫୪) । 'ନାଥାନ୍ତ' ଶବ୍ଦ ଜୈନ ମୂଳକ । ଜଗନ୍ନାଥ ନାମ ଜୈନ ତୀର୍ଥଙ୍କର ସଦୃଶ (ଯଥା ଋଷଭନାଥ, ଅଜିତନାଥ, ସମ୍ଭବନାଥ, ପାର୍ଶ୍ୱନାଥ

ଇତ୍ୟାଦି)ହୋଇଥିବାରୁ ତାହା ଜୈନ ଧର୍ମଦ୍ୱାରା ପ୍ରଭାବିତ ବୋଲି ମନେହୁଏ । ପୁରୁଷୋତ୍ତମ ହେଉଛନ୍ତି ପୁରୀର ଜଗନ୍ନାଥ । (୫୫) । ପୁରୁଷୋତ୍ତମ ପୁରୁଷ-ଋଷଭ ପ୍ରଭୃତି ଶବ୍ଦ ଜୈନ ପରମ୍ପରାରୁ ଗୃହୀତ ଏବଂ ଜୈନ ଧର୍ମାବଲମ୍ବୀଙ୍କ ଉପାସ୍ୟ ଦେବତାଙ୍କ ନାମାନ୍ତର ହେଉଛି ପୁରୁଷୋତ୍ତମ । ବିଷ୍ଣୁଙ୍କ ପର୍ଯ୍ୟାୟବାଚୀ ଶବ୍ଦ ହେଉଛି ନାରାୟଣ । ସେହିପରି ଜୈନ ଉପାସକଙ୍କ ଅନ୍ୟନାମ ପୁରୁଷୋତ୍ତମ ।

'ଦେବାଧି ଦେବ—ବୋଧିଦ—ପୁରୁଷୋତ୍ତମ ବୀତରାଗାପ୍ତାଃ।" (୫୬)(ବୀତରାଗାପ୍ତାଃ ।)

ଜୈନଧର୍ମ ଶାସ୍ତ୍ର ଭିତରେ ଆଧ୍ୟାତ୍ମ ଶରୀରଙ୍କ ମଧ୍ୟରେ ପୁରୁଷୋତ୍ତମ ହେଉଛନ୍ତି ସର୍ବଶ୍ରେଷ୍ଠ । ଅଭିଧାନ ରାଜେନ୍ଦ୍ର ଗ୍ରନ୍ଥ (୫୭) ରେ ଉଲ୍ଲିଖିତ ହୋଇଛି ଯେ ଜଗନ୍ନାଥଙ୍କର ଅନ୍ୟ ନାମ ହେଉଛି ଜିନେଶ୍ୱର ଅଥବା ଆଦିନାଥ ଋଷଭ । ଜଗନ୍ନାଥଙ୍କ ରଥଯାତ୍ରା କଳ୍ପନା ଜୈନଧର୍ମରୁ ଆଗତ । ରଥଗୁଡ଼ିକର ଗଠନ ପ୍ରଣାଳୀ ଜୈନ ଚୈତ୍ୟ ସଦୃଶ । ପାରମ୍ପରିକ ଭାବେ ପୁରୀର ରଥଯାତ୍ରା ଆଷାଢ଼ ଶୁକ୍ଳ ଦ୍ୱିତୀୟା (ଶ୍ରୀ ଗୁଣ୍ଡିଚା) ଦିନ ଅନୁଷ୍ଠିତ ହୁଏ । ଏହି ଦିନ ପ୍ରଥମ ଜୈନ ତୀର୍ଥଙ୍କର ଋଷଭନାଥ ଆବିର୍ଭୂତ ହୋଇଥିବାରୁ ଜୈନମାନଙ୍କର ଚୈତ୍ୟ ଯାତ୍ରା ବା ରଥଯାତ୍ରା ଉତ୍ସବ ପାଳିତ ହୁଏ । ଋଷଭଙ୍କ ଧର୍ମ ଚକ୍ର ସହିତ ଜଗନ୍ନାଥଙ୍କ ନୀଳଚକ୍ରର ଘନିଷ୍ଠ ସମ୍ପର୍କ ରହିଛି । ଭାରତର ଯେଉଁ ସ୍ଥାନରେ ଋଷଭ ପୂଜିତ ହୁଅନ୍ତି ଉକ୍ତ ସ୍ଥାନଟି ଚକ୍ରକ୍ଷେତ୍ର ନାମରେ ଖ୍ୟାତ । ରାଜସ୍ଥାନର ଆବୁ ପର୍ବତରେ ଋଷଭଙ୍କ ପ୍ରତିମା ପୂଜିତ ହୁଅନ୍ତି । ଉକ୍ତ ସ୍ଥାନଟି ଚକ୍ରକ୍ଷେତ୍ର ନାମରେ ପ୍ରସିଦ୍ଧ । ଓଡ଼ିଶାର କେନ୍ଦୁଝର ଜିଲ୍ଲାର ପୋଡ଼ାସିଙ୍ଗିଡ଼ି ସମେତ ଆନନ୍ଦପୁର ଅଞ୍ଚଳରେ ଋଷଭଙ୍କ ବହୁ ମୂର୍ତ୍ତି ଦେଖିବାକୁ ମିଳେ । ସେହି ଅଞ୍ଚଳ ମଧ୍ୟ ଚକ୍ରକ୍ଷେତ୍ର ନାମରେ ବିଦିତ । ଜଗନ୍ନାଥଙ୍କ ପୀଠ ପୁରୀ ମଧ୍ୟ ଚକ୍ରକ୍ଷେତ୍ର ନାମରେ ପ୍ରଖ୍ୟାତ । ଜଗନ୍ନାଥଙ୍କ ମହାପ୍ରସାଦ ହେଉଛି କୈବଲ୍ୟ । ଭକ୍ତ ଏହି ମହାପ୍ରସାଦ (କୈବଲ୍ୟ) ସେବନ କଲେ ମୋକ୍ଷ (କେବଳ ଜ୍ଞାନ ପ୍ରାପ୍ତ ହୁଏ । ଏପରି ଧାରଣା ଜୈନ ଧର୍ମରୁ ଜନ୍ମିଛି । 'ଜୈନଧର୍ମର କେବଳୀ ଭାବ କୈବଲ୍ୟ ପୁରୁଷୋତ୍ତମଙ୍କ ଉପରେ ଆସ୍ଥାନ ଜମାଇଥିବ । ଏଣୁ ଏହି କୈବଲ୍ୟ ଲାଭ ପୁରୁଷୋତ୍ତମ ଛଡ଼ା ପୃଥିବୀର ଅନ୍ୟ କୌଣସି ଠାରେ ଦେଖାଯାଏ ନାହିଁ । ଏହା ଜୈନଧର୍ମର ଏକୀଭାବ ଏହାପରେ ନିର୍ବାଣ ଲାଭ ପୁରୁଷୋତ୍ତମଙ୍କ ପ୍ରସାଦ ସେବାରେ ନିହିତ' । (୫୮) ଜଗନ୍ନାଥ ଧାମର 'କଳ୍ପବୃକ୍ଷ' ପୂଜା ପରିକଳ୍ପନା ଜୈନମାନଙ୍କ କଳ୍ପବୃକ୍ଷରୁ ଜାତ । ଡ଼ଃ ବେଣୀ-ମାଧବ ପାଢ଼ୀଙ୍କ ମତରେ 'ଜଗନ୍ନାଥଙ୍କ ରେଖା ମୂର୍ତ୍ତିଟି ବଦ୍ଧମଙ୍ଗଳ ଓ ନନ୍ଦୀପଦ ନାମକ ଦୁଇଟି ଜୈନ ସଙ୍କେତର ସମନ୍ୱୟ ବୋଲି ସ୍ପଷ୍ଟ ମନେହୁଏ । (୫୯) ପୁରୀର ଜଗନ୍ନାଥ ମନ୍ଦିରର ଦକ୍ଷିଣ ଦ୍ୱାର କାନ୍ଥରେ ଥିବା ଏକ ଜୈନ ତୀର୍ଥଙ୍କର ମୂର୍ତ୍ତିକୁ ଜୈନ ତୀର୍ଥଯାତ୍ରୀମାନେ ମହାବୀର ରୂପେ ପୂଜା କରନ୍ତି । ଏହିପରି ଭାବରେ ଜୈନଧର୍ମ ଓ ଜଗନ୍ନାଥ ଧର୍ମ ମଧ୍ୟରେ ସମ୍ପର୍କ ନିବିଡ଼ । ଅତଃ ଶ୍ରୀଜଗନ୍ନାଥଙ୍କ ଠାରେ ଜିନତ୍ୱ ଆରୋପ କରିବା ଅଯୌକ୍ତିକ ମନେହୁଏ ନାହିଁ ।

ଉପରୋକ୍ତ ଆଲୋଚନାରୁ ମଧ୍ୟଯୁଗୀୟ ଓଡ଼ିଶାରେ ଜୈନ ଧର୍ମ ଏକ ପ୍ରଭାବଶାଳୀ ଧର୍ମ ରୂପେ ଖ୍ୟାତି ଲାଭ କରିଥିବା ପ୍ରମାଣିତ ହୁଏ । ଏହା ଫଳରେ ମଧ୍ୟଯୁଗରେ ଓଡ଼ିଆ ସାହିତ୍ୟ, ଓଡ଼ିଶାର ବିଭିନ୍ନ ଧର୍ମ, ଯଥା —ନାଥ ଓ ଜଗନ୍ନାଥ ଧର୍ମ ତଥା କଳା ଓ ସ୍ଥାପତ୍ୟ ଜୈନତତ୍ତ୍ୱବାଦ ଦ୍ୱାରା ପ୍ରଭାବିତ ହୋଇଥିଲା ।

**ପାଦଟୀକା :**

୧. ଏ ସମ୍ପର୍କରେ ଅଧିକ ଆଲୋଚନା ନିମନ୍ତେ ଅଶୋକକୁମାର ରଥଙ୍କ ନିମ୍ନଲିଖିତ ପ୍ରବନ୍ଧମାନ ଦ୍ରଷ୍ଟବ୍ୟ :
A.K.Rath, 'Jainism in Kalinga in the Pre-Mauryan period', Orissa Historical Research Journal, vol xi, No 9 (1962) pp 124-127, 'A note on the relation of Parsvanatha and Mahavira with Kalinga'proceedings of Indian History Congress, 39th session (1978), vol I, pp 137 148 (Hyderabad)
'Jainism in Ancient Orissa', proceedings of the International seminar on Jainism and Buddhism, pp 165-170, Cuttalk, 1976.

୨. A.S.Altekar, Ancient India, No 5, pp 100-101, Journal of the Numismatic Society of India, vol XII, part I, pp 1-4 ff.

୩. A Das, 'Asanapat', Orissa Historical Research Journal, vol XIII, No 2, pp 4-5 (July 1965).
Journal of Kalinga Historical Research Society, vol III, Nos vol iii I,II and III, pp 225-229.

୫. Epigraphia Indica, vol XXVIII, pp 298 302, S.N. Rajguru, Inscriptions of Orissa, vol I, part II, pp 78-80.

୬. Epigraphia Indica, vol XXVIII, pp 197-203 ff, Inscriptions of Orissa, vol I, part II, pp 117-119.

୭. ସତ୍ୟନାରାୟଣ ରାଜଗୁରୁ, ଓଡ଼ିଶା ଇତିହାସ ପୃ ୨୩୮, ୨୩୯

୮. B.Lewis Rice, Epigraphia Carnatica, vol II, Introduction, p 16, Epigraphia Indica, vol XXVIII p 175 f.



ବନ୍ଧ ମଙ୍ଗଳ



ନନ୍ଦୀପଦ



ଚକ୍ଷୁମୁଖ ବିଶିଷ୍ଟ ନନ୍ଦୀପଦ



ପରିବର୍ତ୍ତିତ ବନ୍ଧମଙ୍ଗଳ



ଉଭୟର ମିଶ୍ରଣରେ ଗଠିତ ମୂର୍ତ୍ତି

(ଡ଼କ୍ଟର ବେଣୀମାଧବ ପାଢ଼ୀଙ୍କ 'ଦାରୁଦେବତା'ରୁ ସଂଗୃହିତ)

୯. K P. Jayswal, An Imperial History of India, p 53.

୧୦. ନବୀନ କୁମାର ସାହୁ, ଓଡ଼ିଆ ଜାତିର ଇତିହାସ, ପୃ. ୩୫୯.

୧୧. A K Rath, 'J iLism is Early medieval Orissa (C A D 600-1200), The Journal of Orissan History, vol V, No. I, pp 9-17.

୧୨. Watters, 'On Yuan Chwang's Travels in India, vol. II pp 196-198.

୧୩. Journal of Kalinga Historical Research Society, vol II No I, pp. 59-65 ff, lines 32-35; Inscriptions of Orissa, vol I, Part II, pp 196-198 ff.

୧୪. Epigraphia India. vol XI, pp.281-287, lines 23-26, Inscriptions of Orissa, vol I, Part II, pp.199-205.

୧୫. K.C. Jain, Lord Mahavira and his times, pp. 47-48 First Edition, 1978.

୧୬. Epigraphia Indica, vol XXIX, PP, 38-43.

୧୭. ଶିଶିରକୁମାର ପାଣିଗ୍ରାହୀ, ଓଡ଼ିଶା ଇତିହାସ (ପ୍ରଥମ ଖଣ୍ଡ), ପୃ ୨୭୪ ୨୭୫.

୧୮. Debala Mitra, Bronzes from Achyutarajpur, pp 44-52, plate 10 (Delhi 1978).

୧୯. T.watters, "On Yuan Chwang's travels in India vol II, p 198, Beal, Si-yu-ki, vol.II, p 208.

୨୦ Journal of Orissan History, vol.I, No.I, pp.26-28.

୨୧. K.R. Subramaniyan, Buddhist Remains in Andhra and Andhra History (225-610 A.D.) pp. 62-63.

୨୨. ପୂର୍ବ ଗ୍ରନ୍ଥ ୨୦୧ ପୃ.୮୧.

୨୩. B.Mishra, Dynastics of medieval Orissa, pp. 57-60.

୨୪. Epigraphia Indica vol. XXXV p.161.

୨୫. R.P. Mahapatra, Jaina Monuments of Orissa, pp 28 29.

୨୬ Epigraphia Indica, vol.XIII, pp. 165 ff

୨୭. Dr K. C. Panigrahi, Chronology of the Bhaumakaras and somavansis of Orissa, p.53, S.N.Rajguru, Inscriptions of Orissa, vol IV, pp.242 243.

୨୮. Epigraphia Indica vol. XIII pp.166 ff.

୨୯. Dr.K.C.Panigrahi,Chranology of the Bhaumakarar and Somavansis of Orissa. p.55.

୩୦. I bid, p.56.

୩୧. Inscriptions of Orissa, vol. II, pp. 113-117.

୩୨. Archaeological Survey of India, Annual Report 110.

୩୩. Journal of Orissan History,vol.I, No I, pp 20-21.

୩୪. South Indian Inscriptions,vol X,No 710,S.N Rajguru. Inscription of Orissa, vol III Part II, pp 316-317

୩୫. B.C. Bhattacharya, The Jaina Iconography, p.80 ff, Lahore, 1939.

୩୬. International Seminar on Jainism and Buddhism, proceedings, P.164, Cuttack, 1976.

୩୭. Inscriptions of Orissa, vol III, Part II, p 268, Foot note 3, and pp 270 and 297.

୩୮. Inscriptions of Orissa,vol II, pp 2, 11, 16, 21, 36, 45, 55-60, 65, 71, 78 and 362,

୩୯. ଦୀନବନ୍ଧୁ ରଥ, ସାରଳା ମହାଭାରତରେ ସାମାଜିକ ଜୀବନ, ପୃ. ୨୨୨-୨୨୫ (ଗ୍ରନ୍ଥ ମନ୍ଦିର ପ୍ରକାଶିତ,(୧୯୬୪).

୪୦. ସାରଳା ମହାଭାରତ, ମଧ୍ୟପର୍ବ, ପୃ.୨୬୨.

୪୧. ସାରଳା ମହାଭାରତ, ମଧ୍ୟପର୍ବ, ପୃ ୧୨୩.

୪୨. ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଓଡ଼ିଶାରେ ଜୈନଧର୍ମ, ପୃ ୧୮.

୪୩. ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଓଡ଼ିଶାରେ ଜୈନଧର୍ମ, • ଅନୁକ୍ରମଣିକା, ପୃ ୨୧- ୨୧୯.

୪୪. ସାରଳା ମହାଭାରତ, ସଭାପର୍ବ, ପୃ.୧୬୪,ରାଧାରମଣ ପ୍ରେସ୍, ଫକୀରମୋହନ ଦାସ, ଓଡ଼ିଆ ସାହିତ୍ୟରେ ବିଭିନ୍ନ ଧର୍ମଧାରା, ପୃ. ୦

୪୫. ସାରଳା ମହାଭାରତ, ସଭାପର୍ବ, ବଂଶୀଧର ମହାନ୍ତି, ଓଡ଼ିଶାରେ ନାଥ ସମ୍ପ୍ରଦାୟ ଓ ନାଥ ସାହିତ୍ୟ, ପୃ.୨୦୨.

୪୬. ନାଥଧର୍ମର ଅଧିକ ଆଲୋଚନା ନିମନ୍ତେ S.B.Dasguptaଙ୍କ Obscure Religious Cults, p.192 ; ଦୋଲଗୋବିନ୍ଦ ଶାସ୍ତ୍ରୀଙ୍କ ନାଥଧର୍ମର କ୍ରମ-ବିକାଶ (ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ଜଗନ୍ନାଥ ଆଶ୍ରମ,ପାରେଶ୍ୱର ସାହି, କଟକ-୩); ଡକ୍ଟର କଲ୍ୟାଣୀ ମଲ୍ଲିକଙ୍କ ନାଥ ସମ୍ପ୍ରଦାୟର ଇତିହାସ,ଦର୍ଶନ ଓ ସାଧନ ପ୍ରଣାଳୀ ଏବଂ ଗୋରେଖ ସିଦ୍ଧାନ୍ତ ସଂଗ୍ରହ, ୧୯୬୧ ଖ୍ରୀ.ଅ. ଛାପା, ଫରେସ୍ଟିନାଲ, ଦ୍ରଷ୍ଟବ୍ୟ

୪୭. ଭାରତୀୟ ଦର୍ଶନ, ଅନୁବାଦ, ଗୋବିନ୍ଦ ମିଶ୍ର, ଓଡ଼ିଶା ସାହିତ୍ୟ ଏକାଡେମୀ,ପୃ.୫୨

୪୮. ଅଚ୍ୟୁତାନନ୍ଦ, ଅଣାକାର ସଂହିତା ପୃ.୩୯ ଜଗନ୍ନାଥ ଦାସ, ଭାଗବତ ପଞ୍ଚମସ୍କନ୍ଧ

୪୯. ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଓଡ଼ିଶାରେ ଜୈନ ଧର୍ମ, ପୃ. ୧୧୮

୫୦. Pandit Nilakantha Dasa, Hints on the significance and history of Jagannatha.

୫୧. କେଦାରନାଥ ମହାପାତ୍ର, 'ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀର ଐତିହାସିକତା', ଭକ୍ତ ପ୍ରଦୀପ, ଆଶ୍ୱିନ ୧୩୪୨, ତା ୨୧.୧୨.୩୪.

୫୨. ଶାରଳା ଜୟନ୍ତୀ ସ୍ମରଣ, ଭୁବନେଶ୍ୱର, ୧୯୫୮

୫୩. ବିନାୟକ ମିଶ୍ର, ଭାରତୀୟ ଦର୍ଶନ ପ୍ରବେଶିକା, ପ୍ରଥମ ସଂସ୍କରଣ, ଉତ୍କଳ ବୁକ୍ ଏଜେନ୍ସି, ରାଣୀହାଟ, କଟକ ୧୯୪୭

୫୪. ମୁନି ରତ୍ନପ୍ରଭ ବିଜୟ, ଶ୍ରମଣ ଭଗବାନ ମହାବୀର (ହିନ୍ଦୀ), vol I, part I, Introduction pp 117 125

୫୫. ପଣ୍ଡିତ ନୀଳକଣ୍ଠ ଦାସ, ଓଡ଼ିଆ ସାହିତ୍ୟର କ୍ରମ ପରିଣାମ,ପ୍ରଥମ ଭାଗ,ପୃ.୧୭୮-୧୦୯

୫୬. ହେମଚନ୍ଦ୍ର, ଅଭିଧାନ ଚିନ୍ତାମଣି, ପ୍ରଥମ କାଣ୍ଡ, ଶ୍ଳୋକ ୨୫

୫୭ ଅଭିଧାନ ରାଜେନ୍ଦ୍ର, ସଂଖ୍ୟା ୪, ପୃ. ୧୩୮

୫୮. ଡକ୍ଟର ବେଣୀମାଧବ ପାଢ଼ୀ, ଧାତୁ ଦେବତା, ପୃ.୧୨୧-୧୨୨,

୫୯. ତତ୍ରୈବ, ପୃ ୧୫୦

—o—

'ସର୍ବ ଏବହି ଜୈନାନାଂ ପ୍ରମାଣଂ ଲୌକିକୋ ବିଧିଃ ।
ଯତ୍ର ସମ୍ୟକ୍ତ୍ୱହାନିର୍ନ ଯତ୍ର ନ ବ୍ରତଦୂଷଣମ୍ ।।"
—(ଯଶସ୍ତିଲକ ଚମ୍ପୂ ୮.୩୪)

# ସପ୍ତମ ଅଧ୍ୟାୟ
## ମଧ୍ୟ ଯୁଗୀୟ ଓଡ଼ିଶାରେ ଜୈନକଳା

ମଧ୍ୟଯୁଗୀୟ ଓଡ଼ିଶାରେ ଜୈନକଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଉତ୍କର୍ଷର ଶୀର୍ଷ ସ୍ଥାନରେ ଉପନୀତ ହୋଇଥିଲା । ସେ ସବୁର ଅବଶେଷ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ପରିଦୃଷ୍ଟ ହୁଏ । ଏହି ମଧ୍ୟଯୁଗୀୟ ଜୈନ କଳାତ୍ମକ କୀର୍ତ୍ତିରୁ ଆମେ ତତ୍କାଳୀନ ଉତ୍କଳୀୟ ସଂସ୍କୃତିର ସ୍ୱରୂପ କଳନା କରିପାରୁଛୁ । ଖଣ୍ଡଗିରି ଓ ଉଦୟଗିରିର ଗୁମ୍ଫା ସମୂହ ତଥା ଅନ୍ୟାନ୍ୟ ସ୍ଥାନର ଜୈନ କଳାକୃତ ଓଡ଼ିଶୀ କଳା—ପରମ୍ପରାର ଉଜ୍ଜଳମୟ ଦୃଷ୍ଟାନ୍ତ ।

କଟକ ଓ ପୁରୀ ଜିଲ୍ଲାର ପ୍ରାଚୀ ଉପତ୍ୟକା ଶୈଳୋଦ୍ଭବ, ଭୌମକର ଏବଂ ସୋମବଂଶୀ ରାଜତ୍ୱ କାଳରେ ଜୈନଧର୍ମର ଏକ ପ୍ରଧାନ କେନ୍ଦ୍ର ଥିଲା । ଚତୁର୍ବିଂଶ ତୀର୍ଥଙ୍କର ତଥା ଯକ୍ଷ-ଯକ୍ଷିଣୀଙ୍କର ମୂର୍ତ୍ତି ପ୍ରାଚୀ ଉପତ୍ୟକାର ବିଭିନ୍ନ ସ୍ଥାନରେ ବିକ୍ଷିପ୍ତ ଭାବରେ ଦେଖିବାକୁ ମିଳେ । ସେଗୁଡ଼ିକ ମଧ୍ୟରୁ କେତେକ ଶିବ ମନ୍ଦିର ମାନଙ୍କରେ ପରିଦୃଷ୍ଟ ହୁଏ । ଅଡ଼ଶପୁରର ସ୍ୱପ୍ନେଶ୍ୱର ଏବଂ ନୀଳକଣ୍ଠେଶ୍ୱର ତଥା କାକଟପୁର ଠାରୁ ଛଅ କିଲୋମିଟର ଦୂରରେ ଅବସ୍ଥିତ ନିଆଳିରେ ଗ୍ରାମର ଗ୍ରାମେଶ୍ୱର ମନ୍ଦିରରେ ଋଷଭଦେବଙ୍କ ଏକ ସୁନ୍ଦର ପ୍ରତିମା ଅଛି । ତାଙ୍କର ଉଭୟ ପାର୍ଶ୍ୱରେ ୧୨ଟି ଲେଖାଏ ତୀର୍ଥଙ୍କର ମୂର୍ତ୍ତି ରହିଛି । ଋଷଭଦେବ କାୟୋତ୍ସର୍ଗ ମୁଦ୍ରାରେ ଦଣ୍ଡାୟମାନ ହୋଇଛନ୍ତି । ସେ କାନରେ କୁଣ୍ଡଳ ଓ ମସ୍ତକରେ କିରୀଟ ଧାରଣ କରିଛନ୍ତି । ତାଙ୍କ ମସ୍ତକ ଉପରେ ଛତ୍ର ଓ ଛତ୍ର ଉପରେ କେବଳ ବୃକ୍ଷର ଶାଖା ଅଛି । ପାଦ ପୀଠର ନିମ୍ନରେ ବୃଷଭ ଲାଞ୍ଛନ ଖୋଦିତ ହୋଇଛି । ନୀଳକଣ୍ଠେଶ୍ୱର ମନ୍ଦିରରେ ଋଷଭନାଥଙ୍କ ମୂର୍ତ୍ତି ଏବଂ ତାଙ୍କର ଉଭୟ ପାର୍ଶ୍ୱରେ ଆଠଗୋଟି ଜୈନ ପ୍ରତିମା ଦେଖିବାକୁ ମିଳେ । ଗ୍ରାମେଶ୍ୱର ମନ୍ଦିରରେ ଯୋଗାସନ ମୁଦ୍ରାରେ ଏବଂ ପଦ୍ମପୀଠରେ ଆସୀନ ଋଷଭନାଥଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛି । ନାନାଦି କାରୁକାର୍ଯ୍ୟରେ ବିମଣ୍ଡିତ ଏହି ସୁନ୍ଦର ମୂର୍ତ୍ତିକୁ ସ୍ଥାନୀୟ ଲୋକେ କାମଦେବ ଅଥବା କନ୍ଦର୍ପ ରୂପରେ ପୂଜା କରନ୍ତି । କାକଟପୁର ନିକଟବର୍ତ୍ତୀ ବିଶ୍ୱାମିତ୍ର ମଠରେ କଳା ମୁଗୁନି ପଥରରେ ନିର୍ମିତ ଋଷଭନାଥଙ୍କ ବିଗ୍ରହ ଦେଖିବାକୁ ମିଳେ । ଭରଦ୍ୱାଜ ଆଶ୍ରମଠାରେ ମଧ୍ୟ ଏହି ପ୍ରକାର ଏକ ମୂର୍ତ୍ତି ସ୍ଥାପିତ ହୋଇଛି । (୧) ।

ପ୍ରାଚୀ ଅବବାହିକାର ଲତାହରଣ ଗ୍ରାମରେ ଗୋଟିଏ ପ୍ରସ୍ତର ଫଳକରେ ଯକ୍ଷ ଗୋମେଧ ଓ ଯକ୍ଷିଣୀ ଅମ୍ବିକାଙ୍କ ଯୁଗଳ ମୂର୍ତ୍ତି ଖୋଦିତ ହୋଇଛି । ଏହି ଯୁଗଳ ମୂର୍ତ୍ତି ଲଳିତାସନ ମୁଦ୍ରାରେ ସ୍ୱ ସ୍ୱ ପଦ୍ମପୀଠ ଉପରେ ଉପବେଶନ କରିଅଛନ୍ତି । ନିମ୍ନଭାଗରେ ସାତୋଟି ଭକ୍ତଙ୍କର ମୂର୍ତ୍ତି ଖୋଦିତ ହୋଇଛି । ଉଭୟ ଯକ୍ଷ ଓ ଯକ୍ଷିଣୀଙ୍କର ବେଶ ଓ ଆଭରଣ ଏକ ପ୍ରକାରର । କେବେ ଶିରୋଭୂଷଣରେ କିଛିଟା ପାର୍ଥକ୍ୟ ଦେଖାଯାଏ ।

ଯକ୍ଷଙ୍କର ମସ୍ତକରେ ଶୃଙ୍ଗାକୃତ ଖାଉଟ ଏବଂ ଯକ୍ଷିଣୀଙ୍କର ମସ୍ତକରେ ଗୋଲାକାର ବେଣୀ ବନ୍ଧନ ଶୋଭା ପାଉଅଛୁ । ଯୁଗଳ ମୂର୍ତ୍ତିଙ୍କ ପଶ୍ଚାତ୍‌ପଟରେ ଆମ୍ର ବୃକ୍ଷ ଏବଂ ଉର୍ଦ୍ଧ୍ୱଭାଗରେ ପଦ୍ମପୀଠରେ ଯୋଗାସନ ମୁଦ୍ରାରେ ଆସୀନ ତୀର୍ଥଙ୍କର ନେମୀନାଥଙ୍କ ପ୍ରତିମୂର୍ତ୍ତି ଅଙ୍କିତ ହୋଇଛୁ । ତୀର୍ଥଙ୍କରଙ୍କ ଉଭୟ ପାର୍ଶ୍ୱରେ ଚାମରଧାରୀ ରହିଛନ୍ତି । ସ୍ୱରୁଚଳା ବମଣ୍ଡିତ ଏହି ଯକ୍ଷଯକ୍ଷିଣୀଙ୍କ ଯୁଗଳମୂର୍ତ୍ତି ମଧ୍ୟଯୁଗୀୟ ଜୈନ କଳାର ଏକ ଉତ୍କୃଷ୍ଟ ନିଦର୍ଶନ । ସ୍ୱର୍ଗୀୟ ପ୍ରଫେସର ପରଶୁରାମ ଦାସ ଏହି ଯୁଗଳମୂର୍ତ୍ତିଙ୍କୁ ଯକ୍ଷ କୁଷ୍ମାଣ୍ଡ ଏବଂ ଯକ୍ଷିଣୀ କୁଷ୍ମାଣ୍ଡିନୀଙ୍କ ସହିତ ଚିହ୍ନିତ କରିଛନ୍ତି । (୨) । ଏହିଭଳି ନେମୀନାଥଙ୍କ ସହିତ ଏକ ଯକ୍ଷ-ଯକ୍ଷିଣୀଙ୍କ ଯୁଗଳ ମୂର୍ତ୍ତି ବାଲିଆପାଟଣା ଥାନାସ୍ଥ ମଇଡ଼ପାଟଣା ନିକଟବର୍ତ୍ତୀ ପ୍ରାଚୀ, ସରସ୍ୱତୀ ଓ ମଣିକର୍ଣ୍ଣିକା ନଦୀର ସଙ୍ଗମସ୍ଥଳ ସନ୍ନିକଟ ଅଲିବେଢ଼ ମଠରେ ମଧ୍ୟ ଦେଖିବାକୁ ମିଳେ ।

କାକଟପୁରରୁ ନବମ ଓ ଦଶମ ଖ୍ରୀଷ୍ଟାବ୍ଦର କେତେକ ଜୈନ ତୀର୍ଥଙ୍କର ମୂର୍ତ୍ତି ମିଳିଛୁ । ତନ୍ମଧ୍ୟରୁ କେତେକ Indian Museum Calcutta, Asutosh Museum of Indian Art ଏବଂ ଭୁବନେଶ୍ୱରସ୍ଥ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛୁ । (୩) । ପ୍ରାଚୀ ଉପତ୍ୟକାର ଜୈନକୀର୍ତ୍ତି ଉକ୍ତ ଅଞ୍ଚଳରେ ଜୈନଧର୍ମର ପ୍ରାଧାନ୍ୟ ପ୍ରମାଣିତ କରେ । ଏବେ ମଧ୍ୟ ସେଠାରେ ଜୈନମାନେ ବହୁ ସଂଖ୍ୟାରେ ବାସ କରନ୍ତି । ପ୍ରାଚୀ ଉପତ୍ୟକାର ପଶ୍ଚିମାଞ୍ଚଳରେ ଅବସ୍ଥିତ ମୀରହଟୀ, ଢୋଲଅଟିଟା, ଓଦଲାବାଦ, ବନମାଳି ପୁର, ପଧାନ ପାଟଣା, ପତିତପାବନ ପାଟଣା, ହୋଡ଼ା ସାହି, ଅମୃତମଣି ପାଟଣା, ଦେଉଳିନ ପାଟଣା ଆଦି ଗ୍ରାମ ଗୁଡ଼ିକରେ ବାସ କରୁଥିବା ଜେନମାନେ ପ୍ରକୃତରେ ଜୈନଗୃହୀ (ଶ୍ରାବକ-ସରାକ) ଶ୍ରେଣୀର ହେଲେହେଁ ସେମାନେ ନିଜକୁ ଜୈନ ବୋଲି ପରିଚୟ ଦିଅନ୍ତି ନାହିଁ । କେବଳ ସେମାନଙ୍କର ନିରାମିଷ ଖାଦ୍ୟ, ସାମାଜିକ ରୀତି ନୀତି ଏବଂ ପ୍ରତି ବର୍ଷ ମାଘ ମାସର ଶୁକ୍ଳ ସପ୍ତମୀ ଦିନ ଖଣ୍ଡଗିରି ମେଳାରେ ଯୋଗଦାନ ହେତୁ ସେମାନଙ୍କୁ ଜୈନ ବୋଲି ଚିହ୍ନିହୁଏ । ଜୈନମାନେ ବାସକରୁଥିବାରୁ ପ୍ରାଚୀ ଉପତ୍ୟକାର ପଶ୍ଚିମାଞ୍ଚଳକୁ 'ଜୈନାବାଦ' କୁହାଯାଉଥିଲା । (୪) ।

ପୁରୀ ଜିଲ୍ଲାର ଅନ୍ୟାନ୍ୟ ସ୍ଥାନ, ଯଥା :—ଶିଶୁପାଳ ଗଡ଼ ନିକଟବର୍ତ୍ତୀ ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱରର ଖଣ୍ଡଗିରି ଓ ଉଦୟଗିରି ଗଙ୍ଗୁଆନଦୀର ଉତ୍ପତ୍ତି ସ୍ଥଳରେ ଅବସ୍ଥିତ ପଞ୍ଚଗାଁ, ବାଲକାଟି ନିକଟ ଚଢ଼େଇବର ଗ୍ରାମର ନୃସିଂହନାଥ ମନ୍ଦିର, ସାକ୍ଷୀଗୋପାଳ ନିକଟବର୍ତ୍ତୀ ଶ୍ରୀରାମଚନ୍ଦ୍ର ପୁର, ବାଣପୁର, ଅଚ୍ୟୁତରାଜପୁର ଆଦି ବହୁ ସ୍ଥାନରେ ଜୈନକୀର୍ତ୍ତି ପରିଦୃଷ୍ଟ ହୁଏ । ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିରରେ ୫) ଜୈନ ତୀର୍ଥଙ୍କର ମୂର୍ତ୍ତି ଅଛୁ । ଶୈବ ମନ୍ଦିରରେ ଜୈନ ମୂର୍ତ୍ତି ସ୍ଥାପନ ଉଭୟ ଶୈବ ଓ ଜୈନ ଧର୍ମ ମଧ୍ୟରେ ସମନ୍ୱୟର ପ୍ରମାଣ ଦିଏ । ପୁରୀର ଜଗନ୍ନାଥ ମନ୍ଦିରର ଦକ୍ଷିଣ ଦ୍ୱାରର ବାମପାର୍ଶ୍ୱସ୍ଥ

କାନ୍ଥରେ ଜୈନ ତୀର୍ଥଙ୍କରଙ୍କ ମୂର୍ତ୍ତି ରହିଛି । ମସୃଣ ମୁଗୁନି ପଥରରେ ନିର୍ମିତ ଏହି ମୂର୍ତ୍ତିଟିକୁ ଜୈନମାନେ ମହାବୀରଙ୍କ ମୂର୍ତ୍ତି ବୋଲି କହନ୍ତି ।

କଟକ ଜିଲ୍ଲାର ନରସିଂହପୁର, ବଡ଼ମ୍ବା, ଟିଗିରିଆ, ଚୌଦ୍ୱାର, ଛତିଆ, ଯାଜପୁର, କେନ୍ଦ୍ରାପଡ଼ା, କେନ୍ଦୁପାଟଣା, ସାଲେପୁର, ବାଙ୍କୀ, ଜଗତସିଂହପୁର, କଟକ-ଭୁବନେଶ୍ୱର ରାସ୍ତାରେ ଅବସ୍ଥିତ ପ୍ରତାପନଗରୀ ପ୍ରଭୃତି ସ୍ଥାନରେ ବହୁ ଜୈନକୀର୍ତ୍ତି ଦେଖାଯାଏ । ନରସିଂହପୁର ସନ୍ନିକଟ ବାଣେଶ୍ୱରନାଶୀର ଉତ୍ତରକୁ ଦୁଇ କିଲୋମିଟର ଦୂରରେ ଅବସ୍ଥିତ ରୂପନାଥ ମନ୍ଦିର ବେଢ଼ାରେ ପଦ୍ମପ୍ରଭଙ୍କ ମୂର୍ତ୍ତି ରହିଛି । ୮ ଚକ୍ରଧର ମହାପାତ୍ର ଶ୍ରୀଯୁକ୍ତ ବାଣେଶ୍ୱର କାବ୍ୟରେ ନରସିଂହପୁରର ଜୈନକୀର୍ତ୍ତି ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ତାହା ନିମ୍ନରେ ପ୍ରଦତ୍ତ ହେଲା—

ଜୈନ ଶୈବ ବୌଦ୍ଧ ସମନ୍ୱୟ ସେତୁ
ରଚିତ ତୋ ବକ୍ଷେ ଅକ୍ଷୟ କୀର୍ତ୍ତି
× × ×
ଜୈନ ତୀର୍ଥଙ୍କର ଶାନ୍ତ ତପୋବନ
ନ ଜାଣନ୍ତି ଜୀବ ହିଂସା ବାସନା ।
× × ×
ଜୈନ ତୀର୍ଥଙ୍କର ବରଚିଲେ ଗୁମ୍ଫା
ତୋ କୋଳେ ଯେ କାଳେ ଅତି ଆଦରେ
ଜୀବେ ଦୟା କ୍ଷମା ଶିଖାଇଲେ ଏଥି
ଦାରିଦ୍ର୍ୟକୁ ବରି ଅତି କଷ୍ଟରେ । (୬) ।

ଟିଗିରିଆ ବ୍ଳକ୍‌ର ହାଟମାଳ ଗ୍ରାମରୁ ପ୍ରାପ୍ତ ପଦ୍ମପ୍ରଭ ମୂର୍ତ୍ତି ଅଧୁନା ଭୁବନେଶ୍ୱରର ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । ଯାଜପୁର ନିକଟବର୍ତ୍ତୀ ନରସିଂହପୁରରେ ପାର୍ଶ୍ୱନାଥ ଓ ଚନ୍ଦ୍ରପ୍ରଭ ଏବଂ ଅଖଣ୍ଡଲେଶ୍ୱର ମନ୍ଦିର ବେଢ଼ାରେ ନେମୀନାଥଙ୍କ ମୂର୍ତ୍ତି ଦେଖାଯାଏ । ଏ ସବୁ ମୂର୍ତ୍ତି ନବମ ଓ ଦଶମ ଖ୍ରୀଷ୍ଟାବ୍ଦର । (୭) । ମଙ୍ଗରାଜପୁର ନିକଟସ୍ଥ ବଡସୁରପୋଇ ଗ୍ରାମର ଜୈନ ଚୌମୁଖ, କଣ୍ଡାବଣିଆ ପାଖ ହାଟଉହର ବୃହଦାକାର ଆଦିନାଥ ମୂର୍ତ୍ତି, ଝାଡ଼େଶ୍ୱରପୁରର ତୀର୍ଥଙ୍କର, ଗଣଧର, ପୂର୍ବଧର, ଶ୍ରାବକ ଓ ଶ୍ରାବିକାଙ୍କ ଧ୍ୟାନ ମୁଦ୍ରାର ମୂର୍ତ୍ତି ମଧ୍ୟଯୁଗୀୟ ଜୈନ କଳାକୁ ସମୃଦ୍ଧ କରିଛି । ଏହାବ୍ୟତୀତ ବୈଦେଶ୍ୱର (ବାଙ୍କି), ଛତିଆ, ଦର୍ପଣୀ, ଚୁନ୍ଦୋଳ, କେନ୍ଦୁପାଟଣା ଆଦି ସ୍ଥାନରେ ମଧ୍ୟ ବହୁ ଜୈନ ମୂର୍ତ୍ତି ରହିଛି ।

କଟକ-ଭୁବନେଶ୍ୱର ଜାତୀୟ ରାଜପଥରେ ଅବସ୍ଥିତ ପ୍ରତାପନଗରୀ ଗ୍ରାମରୁ ଦୁଇଟି ଦୁର୍ଲ୍ଲଭ ଜୈନ ମୂର୍ତ୍ତି ୧୯୮୮ ମସିହା ଅଗଷ୍ଟମାସରେ ଆବିଷ୍କୃତ ହୋଇଛି । ଜଣେ କୃଷକ ନିଜ ଜମି ଚାଷ କରୁଥିବା ବେଳେ ମୂର୍ତ୍ତି ଦୁଇଟି ମିଳିଥିଲା । ଏଥିମଧ୍ୟରୁ ଗୋଟିଏ ପାର୍ଶ୍ୱ

ଫୁଟ ଉଚ୍ଚତା ବିଶିଷ୍ଟ ଏବଂ ଏଥିରେ ସପ୍ତଫଣା ସର୍ପ ସହିତ ପାର୍ଶ୍ୱନାଥଙ୍କ ମୂର୍ତ୍ତି ଖୋଦିତ ହୋଇଛି । ପାର୍ଶ୍ୱନାଥଙ୍କ ମୂର୍ତ୍ତିରେ ଏକ ଲିପି ଉଲ୍ଲିଖିତ ରହିଛି । ଦୁଇଫୁଟ ଉଚ୍ଚତା ବିଶିଷ୍ଟ ଅନ୍ୟ ଶିଳାଖଣ୍ଡରେ ଋଷଭନାଥ ଏବଂ ମହାବୀରଙ୍କ ମୂର୍ତ୍ତି ଖୋଦିତ ହୋଇଛି । ପ୍ରତାପନଗରୀ ଗ୍ରାମରେ ଅବସ୍ଥିତ ସ୍ୱମଜାମଂରେ ଋଷଭନାଥ ଓ ପାର୍ଶ୍ୱନାଥଙ୍କ ମୂର୍ତ୍ତି ସଂରକ୍ଷିତ ହୋଇଛି । ଉକ୍ତଗ୍ରାମର ଧାକୁଲେଇ ଠାକୁରାଣୀ ମନ୍ଦିରର ଗର୍ଭଗୃହ ଓ ଜଗମୋହନରେ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ତନ୍ମଧ୍ୟରୁ ଆମ୍ର ବୃକ୍ଷର ନିମ୍ନରେ ଏକ ପୀଠ ଉପରେ ଲଳିତାସନରେ ଖୋଦିତ ଅମ୍ବିକାଙ୍କ ମୂର୍ତ୍ତି ଉଲ୍ଲେଖଯୋଗ୍ୟ । ଅମ୍ବିକାଙ୍କର ତୀର୍ଥଙ୍କର ନେମୀନାଥଙ୍କ ମୂର୍ତ୍ତି ରହିଛି ଆମ୍ର ବୃକ୍ଷର ଶୀର୍ଷରେ । ପୀଠର ନିମ୍ନରେ ଅମ୍ବିକାଙ୍କର ବାହନ ସିଂହ ମୂର୍ତ୍ତି ଖୋଦିତ ହୋଇଛି । ଏହାଛଡ଼ା ସେଠାରେ ଋଷଭନାଥ, ଯକ୍ଷ ଗୋମେଧ ଓ ଯକ୍ଷିଣୀ ଅମ୍ବିକାଙ୍କ ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳେ । (୮) ପ୍ରତାପ-ନଗରୀର ଅନତି ଦୂରରେ ଅବସ୍ଥିତ ଭାଣପୁର ଗ୍ରାମ ନିକଟ କୁଆଖାଇ ନଦୀର ବାମବନ୍ଧ ପାର୍ଶ୍ୱରେ ଅନେକ ଦୁର୍ଲଭ ବ୍ରୋଞ୍ଜ ଜୈନମୂର୍ତ୍ତି କିଛି ବର୍ଷ ପୂର୍ବେ ଆବିଷ୍କୃତ ହୋଇଥିଲା । (୯) । ସେଗୁଡ଼ିକ ମଧ୍ୟରୁ ସ୍ୱର୍ଗେଟି ମହାବୀର ମୂର୍ତ୍ତି ଏବଂ ଗୋଟିଏ ଅନନ୍ତ ବାସୁଦେବ (ପାର୍ଶ୍ୱନାଥ)ଙ୍କ ମୂର୍ତ୍ତି ଏକ କ୍ଷୁଦ୍ର ମନ୍ଦିରରେ ପୂଜିତ ହେଉଛନ୍ତି । ପ୍ରତାପ-ନଗରୀ ତଥା ତାହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରୁ ବହୁ ଜୈନକୀର୍ତ୍ତି ଆବିଷ୍କୃତ ହୋଇଥିବାରୁ ଉକ୍ତ ସ୍ଥାନ ନିଶ୍ଚିତ ରୂପେ ଏକ ଅନ୍ୟତମ ଜୈନ ପୀଠ ବୋଲି ଅନୁମିତ ହୁଏ ।

ବାଲେଶ୍ୱର ଜିଲ୍ଲାର ଗୁଣ୍ଡାଲ୍, ଚରମ୍ପା, ଖିମପୁର, ଜଳେଶ୍ୱର ନିକଟ ମାର୍ଚ୍ଚ୍ଚଶୋଲ ଓ ମାଣିକଚୌକ, ଅଯୋଧ୍ୟା, ବାଲିଘାଟ, ଖିମପୁର, କୁପାରି ଆଦି ସ୍ଥାନରେ ଅନେକ ଜୈନକୀର୍ତ୍ତି ବିଦ୍ୟମାନ । ଗୁଣ୍ଡାଲ୍ ନିକଟବର୍ତ୍ତୀ ସୋନା ନଦୀ ଗର୍ଭରୁ ଉଦ୍ଧୃତ ପାର୍ଶ୍ୱନାଥଙ୍କ ମୂର୍ତ୍ତି କାୟୋତ୍ସର୍ଗ ମୁଦ୍ରାରେ ପଦ୍ମପୀଠ ଉପରେ ଦଣ୍ଡାୟମାନ । ଉଭୟ ପାର୍ଶ୍ୱରେ ଚାମରଧାରୀ ମାନେ ରହିଛନ୍ତି । ପାର୍ଶ୍ୱନାଥଙ୍କ ମସ୍ତକ ଉପରେ ନାଗ ତାଙ୍କର ସପ୍ତଫଣା ବିସ୍ତାର କରିଛନ୍ତି । ପଦ୍ମପୀଠର ନିମ୍ନଭାଗରେ ଭକ୍ତମାନଙ୍କ ହସ୍ତରେ ନୈବେଦ୍ୟ ଏବଂ ବାଦ୍ୟଯନ୍ତ୍ର ରହିଛି । ଉର୍ଦ୍ଧ୍ୱଭାଗ ସ୍ଥିତ ଛତ୍ର ଓ କେବଳ ବୃକ୍ଷର ଶାଖା ପାର୍ଶ୍ୱରେ ଅପସରା, ଗନ୍ଧର୍ବ ଓ କିନ୍ନରମାନଙ୍କ ଚିତ୍ର ଖୋଦିତ ହୋଇଛି । ପାର୍ଶ୍ୱନାଥଙ୍କ ଡାହାଣ ପାର୍ଶ୍ୱରେ ଯକ୍ଷ ଧରଣେନ୍ଦ୍ର ତଥା ବାମ ପାର୍ଶ୍ୱରେ ଯକ୍ଷିଣୀ ପଦ୍ମାବତୀ ତ୍ରିଭଙ୍ଗି ଠାଣିରେ ଦଣ୍ଡାୟମାନ । (୧୦) । ତଦ୍ରୂପ ଉପକଣ୍ଠ ଚରମ୍ପାରୁ ପ୍ରାପ୍ତ ଋଷଭନାଥ, ଅଜିତନାଥ, ଶୀତଳନାଥ ଓ ମହାବୀରଙ୍କ ମୂର୍ତ୍ତି ଅଧୁନା ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । କଳା ମୁଗୁନି ପଥରର ଏସବୁ ମୂର୍ତ୍ତି ଅଷ୍ଟମ ଓ ନବମ ଶତାବ୍ଦୀର । (୧୧) ।

ବାଲେଶ୍ୱରର ଦକ୍ଷିଣ ପୂର୍ବକୁ ୧୪ କିଲୋମିଟର ଦୂରରେ ଅବସ୍ଥିତ ଖିମପୁରରେ ୧.୫୬ ମିଟର ଉଚ୍ଚତା ବିଶିଷ୍ଟ ମହାବୀରଙ୍କ କାୟୋତ୍ସର୍ଗ ମୁଦ୍ରାରେ ଏକ ସୁନ୍ଦର ମୂର୍ତ୍ତି ଅଛି ।

ମୁଗୁନି ପଥରରେ ନିର୍ମିତ ଏହି ମୂର୍ତ୍ତିର ଉଭୟ ପାର୍ଶ୍ୱରେ ୨୪ ତୀର୍ଥଙ୍କରଙ୍କ ପ୍ରତିମା ଭଗ୍ନାବସ୍ଥାରେ ରହିଛି । ନିମ୍ନଭାଗରେ ଯିହି ପରବର୍ତ୍ତୀ ବୃଷଭ ଲାଞ୍ଛନ ଥିବା ହେତୁ ପ୍ରତ୍ନତତ୍ତ୍ୱବିତ୍ **N.N. Vasu** ଏହି ମୂର୍ତ୍ତିକୁ ଋଷଭନାଥଙ୍କ ସହିତ ତର୍ଜ୍ଜିତ କରିଛନ୍ତି । (୧୨) । ନିଳଗିରି ଠାରୁ ୧୦ କି.ମି. ଦୂରରେ ଅବସ୍ଥିତ ଅଯୋଧ୍ୟା ଠାରେ ଅନେକ ଜୈନ କଳାକୃତ ରହିଛି । (୧୩) । ବାଲେଶ୍ୱରର ବୃନ୍ଦାବନଙ୍କ ନିଗାଜୁନ ବାଲିଘାଟର କାଳୀମନ୍ଦିର ବେଢ଼ାରେ ନେମିନାଥଙ୍କ ଶାସନଦେବୀ ଅମ୍ବିକାଙ୍କ ଲଳିତ ମୁଦ୍ରାର ମୂର୍ତ୍ତି ଏକ ସ୍ତମ୍ଭରେ ସ୍ଥାପିତ ହୋଇଛି । ମଣିକଚୌକରୁ ପ୍ରାପ୍ତ ଶାନ୍ତିନାଥଙ୍କ ମୂର୍ତ୍ତି ଓ ଏକ ଜୈନ ଚୌମୁଖ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । ଏକ କ୍ଷୁଦ୍ର ପିଢ଼ା ଦେଉଳ ଶୈଳୀରେ ନିର୍ମିତ ଏହି ଚୌମୁଖର ମାପ ହେଉଛି ୪୦ ସେ.ମି.×୧୦ ସେ.ମି×୧୦ ସେ.ମି । ଚୌମୁଖର ଉର୍ଦ୍ଧ୍ୱଭାଗରେ ଆମଳକ, ଖପୁରି ଏବଂ ପଦ୍ମକଢ଼ ରହିଛି । ଚୌମୁଖର ଚାରିପାଖରେ କାୟୋତ୍ସର୍ଗ ମୁଦ୍ରାରେ ଋଷଭନାଥ, ମହାବୀର, ଶାନ୍ତିନାଥ ଏବଂ ଚନ୍ଦ୍ରପ୍ରଭଙ୍କ ମୂର୍ତ୍ତି ଦଣ୍ଡାୟମାନ ।

ମୟୂରଭଞ୍ଜ ଜିଲ୍ଲାର ବଡ଼ସାହି, କୋଶଳ, ବାରିପଦା, ଖିଚିଂ, ନଡ଼ପାଟ, ରାଣୀବନ୍ଧ, କୁଣ୍ଡାପାଳ ଆଦି ସ୍ଥାନରୁ ଅନେକ ଜୈନମୂର୍ତ୍ତି ମିଳିଛି । ସେଗୁଡ଼ିକ ମଧ୍ୟରୁ କେତେକ ଖିଚିଂ ଓ ବାରିପଦା ସଂଗ୍ରହାଳୟରେ ରଖାଯାଇଛି । ବାରିପଦା ଠାରୁ ୩୦ କି.ମି. ଦୂରରେ ଅବସ୍ଥିତ ବଡ଼ସାହିର ମଙ୍ଗଳା ମନ୍ଦିର ନିକଟରେ ଏକ ଜୈନ ଚୌମୁଖ ମାଟି ଭିତରେ ଅଧା ପୋତି ହୋଇ ରହିଛି । ଚୌମୁଖର ଚତୁଃପାର୍ଶ୍ୱସ୍ଥ ଗାତ୍ରରେ କାୟୋତ୍ସର୍ଗ ମୁଦ୍ରାରେ ଋଷଭନାଥ, ଅଜିତନାଥ, ଚନ୍ଦ୍ରପ୍ରଭ ଏବଂ ପାର୍ଶ୍ୱନାଥଙ୍କ ମୂର୍ତ୍ତି ତଥା ସେମାନଙ୍କର ଲାଞ୍ଛନ ଓ ଚାମରଧାରିଣୀ ଖୋଦିତ ହୋଇଛନ୍ତି । ଚୌମୁଖଟି ଦେଖିବାକୁ ଏକ କ୍ଷୁଦ୍ର ପିଢ଼ାମନ୍ଦିର ଆକୃତିର । ସ୍ଥାନୀୟ ଅଧିବାସୀମାନେ ଏହି ଚୌମୁଖକୁ 'ଚନ୍ଦ୍ରସେଣୀ' ନାମରେ ବୈଶାଖ ପୂର୍ଣ୍ଣିମା ଦିନ ପୂଜା କରନ୍ତି । ତାହା 'ହିଡ଼ା ପର୍ବ' ନାମରେ ଖ୍ୟାତ । ବଡ଼ସାହି ଠାରେ ନେମିନାଥଙ୍କ ଶାସନ ଦେବୀ ଅମ୍ବିକାଙ୍କ ଚତୁର୍ଭୁଜା ମୂର୍ତ୍ତି ଲଳିତ ମୁଦ୍ରାରେ ଦେଖିବାକୁ ମିଳେ । ବଡ଼ସାହି ନିକଟ ବାରୁଡ଼ି ଠାରେ ଅମ୍ବିକା ଦେବୀଙ୍କ ଲଳିତାସନ ମୂର୍ତ୍ତି କୁଢ଼ାସୁଣି ଠାକୁରାଣୀ ରୂପରେ ପୂଜା ପାଉଛନ୍ତି । ବଡ଼ସାହି ସନ୍ନିକଟ କୋଶଳ ଠାରେ କାୟୋତ୍ସର୍ଗ ମୁଦ୍ରାରେ ଏବଂ ପଦ୍ମପୀଠରେ ଦଣ୍ଡାୟମାନ ପାର୍ଶ୍ୱନାଥଙ୍କ ମୂର୍ତ୍ତି ମୁଗୁନି ପଥରରେ ଖୋଦିତ ହୋଇଛି । ପାର୍ଶ୍ୱନାଥଙ୍କ ମସ୍ତକ ସର୍ପଫଣା ଦ୍ୱାରା ଆଚ୍ଛାଦିତ । ହସ୍ତ ଜାନୁ ପର୍ଯ୍ୟନ୍ତ ଲମ୍ବିତ । ଚାମରଧାରୀ ସ୍ୱତନ୍ତ୍ର ପଦ୍ମପୀଠ ଉପରେ କେବଳ ବୃକ୍ଷର ଫଳଭରା ଶାଖା ନିକଟରେ ଦଣ୍ଡାୟମାନ ହୋଇଛନ୍ତି । (୧୪) ।

ବାରିପଦା ସହରରେ ୧୪୯୭ ଶକାବ୍ଦ ଅର୍ଥାତ୍ ୧୫୭୫ ଖ୍ରୀ.ଅ ରେ ଭଞ୍ଜରାଜା ବୈଦ୍ୟନାଥ ଭଞ୍ଜଙ୍କ ଦ୍ୱାରା ନିର୍ମିତ ଜଗନ୍ନାଥ ମନ୍ଦିରର ଅନ୍ତଦ୍ୱାରର ଗାତ୍ରରେ କଳା ମୁଗୁନି ପଥରରେ ଉତ୍କୀର୍ଣ୍ଣିତ ଋଷଭନାଥ, ନେମୀନାଥ, ପାର୍ଶ୍ୱନାଥ ଓ ମହାବୀରଙ୍କ ମୂର୍ତ୍ତିମାନ

ସ୍ଥାପିତ ହୋଇଛି । ବଡ଼ସାହି ଠାରୁ ପାଞ୍ଚ କି.ମି. ଦୂରରେ ରାଣୀବନ୍ଧ ଠାରେ ମହାବୀରଙ୍କ ମୂର୍ତ୍ତି ପୂଜିତ ହେଉଛନ୍ତି । ଖିଚିଂର ଆଖପାଖ ଅଞ୍ଚଳରୁ ପ୍ରାପ୍ତ ଅନେକ ଜୈନ ମୂର୍ତ୍ତି ଖିଚିଂ ମ୍ୟୁଜିୟମ୍‌ରେ ସଂରକ୍ଷିତ ହୋଇଛି । ଖୁଣ୍ଟାପାଲରୁ ମିଳିଥିବା ନଅଗୋଟି ତାମ୍ର ନିର୍ମିତ ତୀର୍ଥଙ୍କର ମୂର୍ତ୍ତି ବାରିପଦା ସଂଗ୍ରହାଳୟରେ ରଖାଯାଇଛି । ଖିଚିଂ ଓ ବାମନଘାଟୀ ଅଞ୍ଚଳରେ ଅନେକ ସରାକ (ତନ୍ତୀ) ବାସ କରୁଥିଲେ । ସେମାନେ ହେଉଛନ୍ତି ଜୈନଧର୍ମାବଲମ୍ବୀ । ଭଞ୍ଜରାଜା ପଣଭଞ୍ଜଙ୍କ ବାମନଘାଟୀ ତାମ୍ରଲେଖ (୧୫)ରୁ ଜଣାଯାଏ ଯେ ଖିଞ୍ଜିଙ୍ଗ୍ (ଖିଚିଂ) ର ଉତ୍ତରଖଣ୍ଡ ଅନ୍ତର୍ଗତ ଦେବକୁଣ୍ଡ ଓ କୋରାପିଣ୍ଡି ବିଷୟରେ ଅବସ୍ଥିତ ଡମଣ୍ଡିର, ନଙ୍କୋଳ, ଜମ୍ବୁପୋଦକ ଏବଂ ବସନ୍ତଗ୍ରାମ ଆଦି ଗ୍ରାମଗୁଡ଼ିକ ସରାକମାନଙ୍କୁ ଦାନ କରାଯାଇଥିଲା । ଏହି ଜୈନ ସରାକମାନେ ଭଞ୍ଜରାଜାମାନଙ୍କ ପ୍ରୋତ୍ସାହନରେ ଜୈନଧର୍ମର ପ୍ରସାର କରିଥିଲେ । ଫଳରେ ମୟୂରଭଞ୍ଜ ଅଞ୍ଚଳରେ ଜୈନଧର୍ମ ଲୋକପ୍ରିୟ ହୋଇପାରିଥିଲା ।

କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ସବ୍‌ଡିଭିଜନ ମଧ୍ୟଯୁଗୀୟ ଜୈନ କଳା ଓ ସ୍ଥାପତ୍ୟର ଗନ୍ତାଘର କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ଅଞ୍ଚଳରେ ପୋଡ଼ାସିଙ୍ଗିଡ଼ି, ବଉଳା ପାହାଡ଼, ସାସୋ, ବୈଦାଖିଆ, ହାଟଡିହି, ଆନନ୍ଦପୁର, ପଞ୍ଚୁପଲ୍ଲୀ, କୋଶଲେଶ୍ୱର ଆଦି ସ୍ଥାନରେ ଜୈନ ତୀର୍ଥଙ୍କର ଓ ଶାସନଦେବୀଙ୍କ ମୂର୍ତ୍ତି ବହୁଳ ଭାବରେ ପରିଦୃଷ୍ଟ ହୁଏ । ଆନନ୍ଦପୁର ତୋଷଲୀର ଅଧିବାସୀମାନେ ଷଷ୍ଠିର ତିଥିରେ ସରସ୍ୱତୀ (ବ୍ରାହ୍ମଣୀ) ନଦୀ ସହିତ ସଂଯୁକ୍ତ ପ୍ରାଚୀନବାହି (ବୈତରଣୀ) ନଦୀ କୂଳରେ ଆଠଦିନ ବ୍ୟାପୀ ଜୈନୋତ୍ସବ ପାଳନ କରୁଥିବା ବିଷୟ ଅଭିଧାନ ରାଜେନ୍ଦ୍ରରେ ସୂଚିତ ହୋଇଛି । ଆନନ୍ଦପୁର ତୋଷଲୀ ବିଷୟର ସେଲପୁର (ସୈଲପୁର) ଠାରେ ଜୈନମାନଙ୍କର ଋଷିତଡ଼ାଗ ନାମକ ଏକ ପବିତ୍ର ପୁଷ୍କରିଣୀ ଥିଲା । ଏହି ଋଷିତଡ଼ାଗ କୂଳରେ ଆଠଦିନ ଧରି ଜୈନମାନଙ୍କର ବାର୍ଷିକ ଉତ୍ସବ ସମାରୋହରେ ଅନୁଷ୍ଠିତ ହେଉଥିଲା । ଜୈନ ଅଭିଧାନ ରାଜେନ୍ଦ୍ର ଗ୍ରନ୍ଥରୁ ସେହି ସମ୍ପର୍କୀୟ ଉଦ୍ଧୃତ ନିମ୍ନରେ ପ୍ରଦତ୍ତ ହେଲା—

"ଅଦେସୋ ସେଲପୁରେ ଅଦାଣଟଠହିସ୍ସା ହିଆସି ମହିମାଏ,
ତୋସଲି ବିଷଯେ ବଣିବଣଟ୍ଠାଢହି ହୋଡ ଗମଣଂ ବା ।
ସେଲପୁର ଇସିତଲାଗମ୍ମି ହୋଡ ଅଟ୍ଠାହିସ୍ସା ମହାମହିମା,
କୋଂଡଲମେଣ୍ଠ ପଭାସେ ଅବରୁଦ୍ଧ ପାଇଣ ବାହିମ୍ମି ॥" (୧୬) ।

ଅଭିଧାନ ରାଜେନ୍ଦ୍ରରେ ବର୍ଣ୍ଣିତ ଆନନ୍ଦପୁରକୁ କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ସହିତ, ସରସ୍ୱତୀ ନଦୀକୁ ବ୍ରାହ୍ମଣୀ ସହିତ ଏବଂ ପ୍ରାଚୀନବାହି ନଦୀକୁ ବୈତରଣୀ ନଦୀ ସହିତ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ (୧୭) ଚିହ୍ନିତ କରିଛନ୍ତି ।

ଆନନ୍ଦପୁରଠାରୁ ପ୍ରାୟ ୧୩ କି.ମି. ଦୂରରେ ବଉଳା ପାହାଡ଼ ମଧ୍ୟଦେଶରେ ଅବସ୍ଥିତ ପୋଡ଼ାସିଙ୍ଗିଡ଼ିରେ ଜୈନତୀର୍ଥଙ୍କର ମୂର୍ତ୍ତି ବିକ୍ଷିପ୍ତ ଭାବରେ ରହିଛି । ସେଗୁଡ଼ିକ

ମଧ୍ୟରେ ଋଷଭନାଥଙ୍କ ମୂର୍ତ୍ତି ଉଲ୍ଲେଖଯୋଗ୍ୟ । ମୂର୍ତ୍ତିଟିର ଦକ୍ଷିଣ ହସ୍ତ ପାର୍ଶ୍ୱରେ ଏକ ଅଭିଲେଖ କୁଟିଳ ଲିପିରେ ଖୋଦିତ ହୋଇଛି । ତାହା ହେଲ –"ଏତସ୍ୟ ପ୍ରତିବର୍ମ୍ମି ଋଷଭ ଭଟ୍ଟାରକ" [୧୮]; ଅର୍ଥାତ୍ ଏହା ଋଷଭ ଭଟ୍ଟାରକଙ୍କ ପ୍ରତିମୂର୍ତ୍ତି । ଅଷ୍ଟମ ଖ୍ରୀଷ୍ଟାବ୍ଦର ଏହି ମୂର୍ତ୍ତିଟି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । ବଡ଼ଲା ପାହାଡ଼ର ଶୀର୍ଷ ଦେଶରେ ଏକ ବଗ୍ଦକାସ୍ଥ ମହାବୀର ମୂର୍ତ୍ତି ପରିଦୃଷ୍ଟ ହୁଏ । ନିମ୍ନ ଦେଶରେ ଯୋଗୀଛଟା ଜୈନମନ୍ଦିର ଅବସ୍ଥିତ । ମନ୍ଦିରରେ ତୀର୍ଥଙ୍କର ଓ ଶାସନ ଦେବୀଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛି । ମନ୍ଦିର ସମ୍ମୁଖସ୍ଥ ଏକ ଝରଣା ନିକଟରେ ସପ୍ତଫଣା ଆଚ୍ଛାଦିତ ପାର୍ଶ୍ୱନାଥଙ୍କ ମୂର୍ତ୍ତି ରହିଛି । ଉକ୍ତ ସ୍ଥାନଟି ଗଡ଼ଚଣ୍ଡୀ ଅଥବା ଦ୍ୱାରଚଣ୍ଡୀ ନାମରେ ଅଭିହିତ । ସେଠାରେ ତପତୀର୍ଥ ନାମକ ଏକ କ୍ଷୁଦ୍ର ଜଳଭଣ୍ଡାର କୂଳରେ ଅନେକ ଜୈନମୂର୍ତ୍ତି ଦେଖିବାକୁ ମିଳେ । ଉକ୍ତ ସଂକ୍ରାନ୍ତି ଦିନ ଉକ୍ତ ସ୍ଥାନରେ ବହୁ ତୀର୍ଥଯାତ୍ରୀଙ୍କର ସମାଗମ ହୁଏ । [୧୯] ।

କେନ୍ଦୁଝରଗଡ଼ଠାରୁ ପ୍ରାୟ ୩୧ କି.ମି. ଦୂରରେ ଏକ ପଥପ୍ରାନ୍ତ ଗ୍ରାମ ଢେଙ୍କିକୋଟଠାରୁ ପାଞ୍ଚ କି.ମି ଦୂରରେ ସୀତାବିଞ୍ଜି ଗ୍ରାମ ଅବସ୍ଥିତ । ତାହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ବହୁ ଜୈନ ସରାକ ଗ୍ରାମ ରହିଛି । ଦ୍ୱିତୀୟତଃ ଉକ୍ତ ଅଞ୍ଚଳରେ ଭଞ୍ଜରାଜାମାନେ ସେମାନଙ୍କର ରାଜତ୍ୱର ପ୍ରାରମ୍ଭରେ ଜୈନଧର୍ମର ପୃଷ୍ଠପୋଷକତା କରିଥିଲେ । ଅତଏବ ସୀତାବିଞ୍ଜିର ରାବଣଛାୟା ପ୍ରସ୍ତରାଶ୍ରୟ ସ୍ଥଳୀର ଅନୁପମ ଚିତ୍ରାଙ୍କନ ଜୈନମାନଙ୍କ କଳାକୃତି ବୋଲି କେତେକ ଗବେଷକ ମତବ୍ୟକ୍ତ କରିଛନ୍ତି । [୨୦] ।

କୋରାପୁଟ ଜିଲ୍ଲାର ନନ୍ଦପୁର, ସୁଆଇ, ଜଗେଇ, ଭୈରବସିଂହପୁର, ବୋରିଗୁମ୍ମା, କୋଟପାଡ଼, ସୁର୍ମୁଳା, ନରିଗାଁ, କାମତା, ମାଳିନୂଆଗାଁ, କାଠରଗୁଡ଼ା, ପ୍ରଭୃତି ସ୍ଥାନଗୁଡ଼ିକ ମଧ୍ୟଯୁଗୀୟ ଜୈନକଳା ଓ ସ୍ଥାପତ୍ୟରେ ପରିପୂର୍ଣ୍ଣ [୨୧] । ଉପରୋକ୍ତ ସ୍ଥାନଗୁଡ଼ିକରୁ ଆଣିତ ୩୪ଟି ତୀର୍ଥଙ୍କର ଓ ଶାସନଦେବୀଙ୍କ ମୂର୍ତ୍ତି ଜୟପୁରସ୍ଥ ଜିଲ୍ଲା ସଂଗ୍ରହାଳୟରେ ସୁରକ୍ଷିତ ହୋଇ ରହିଛି । [୨୨] । ପାର୍ଶ୍ୱ ଓ ପର୍ବତ ନିକଟ ସୁଆଇ ଗ୍ରାମ, ବାଘ୍ରା ଜଳପ୍ରପାତ ଠାରୁ ୧୦ କି.ମି. ଦୂରରେ କୋଲାବ ନଦୀ କୂଳରେ ଅବସ୍ଥିତ ଜଗେଇ ଗ୍ରାମ ଏବଂ ବୋରିଗୁମ୍ମା ତହସିଲର ଭୈରବସିଂହପୁରରେ ମଧ୍ୟଯୁଗୀୟ ଜୈନ ମନ୍ଦିରମାନ ପରିଦୃଷ୍ଟ ହୁଏ । ଉକ୍ତ ମନ୍ଦିର ଗୁଡ଼ିକର ନିର୍ମାଣକାଳ ଖ୍ରୀଷ୍ଟୀୟ ଅଷ୍ଟମରୁ ଦଶମ ଶତାବ୍ଦୀ ମଧ୍ୟରେ ।

ସୁଆଇର ଜୈନ ମନ୍ଦିରରେ ଋଷଭନାଥଙ୍କ ନଅଟି ମୂର୍ତ୍ତି ଓ ମହାବୀରଙ୍କ ଗୋଟିଏ ମୂର୍ତ୍ତି ବ୍ୟତୀତ ଋଷଭନାଥ ଓ ଅଜିତନାଥଙ୍କ ଶାସନଦେବୀ ଯଥାକ୍ରମେ ଚକ୍ରେଶ୍ୱରୀ ଓ ରୋହିଣୀଙ୍କ ମୂର୍ତ୍ତି ରହିଛି । ମନ୍ଦିରଟି ୨୫୦ ଖ୍ରୀ.ଅ ପୂର୍ବରୁ ନିର୍ମିତ ହୋଇଥିଲ । (୨୩) । କୋରାପୁଟ ଠାରୁ ୧୫ କି.ମି. ଦୂରରେ ପଟାଙ୍ଗି ବ୍ଲକର ଜଗେଇ ଗ୍ରାମ ନିକଟରେ ଥିବା ଜୈନମନ୍ଦିରରେ ତୀର୍ଥଙ୍କର ଓ ଶାସନଦେବୀଙ୍କ ମୂର୍ତ୍ତି ପରଜା ଆଦିବାସୀମାନଙ୍କ ଦ୍ୱାରା ପୂଜିତ ହେଉଛନ୍ତି । ଅକ୍ଷତ ଅବସ୍ଥାରେ ଏହି ପ୍ରସ୍ତର ନିର୍ମିତ ମନ୍ଦିରର ଉଚ୍ଚତା ଥିଲ ୯.୨

ମିଟର ଏବଂ ପ୍ରସ୍ଥ ଥିଲା ୩ ମିଟର [୨୪]। ଅଧୁନା ଭଗ୍ନାବସ୍ଥାରେ ମନ୍ଦିରର ଉଚ୍ଚତା ମାତ୍ର ୨୬ ମିଟର ରହିଛି। ମନ୍ଦିର ସମ୍ମୁଖରେ ଅନେକ କାରୁକାର୍ଯ୍ୟପୂର୍ଣ୍ଣ ଭଗ୍ନ ପ୍ରସ୍ତର ଖଣ୍ଡ ଏବଂ ଆମଲକ ଶୀଳାର କେତେକ ଭଗ୍ନାଂଶ ବିକ୍ଷିପ୍ତ ଭାବରେ ପଡ଼ିରହିଛି। ଭଗ୍ନ ମନ୍ଦିରର ଗର୍ଭଗୃହଟିକୁ ସ୍ଥାନୀୟ ଲୋକେ ଆସ୍ଥାନ ମଣ୍ଡପ ବୋଲି କହନ୍ତି।

ଭୈରବସିଂହପୁର ଜୈନଧର୍ମର ଏକ ପ୍ରସିଦ୍ଧ ପୀଠ ଥିଲା। ସେଠାରେ ମଧ୍ୟ ବହୁ ଜୈନକୀର୍ତ୍ତି ଦେଖିବାକୁ ମିଳେ। ତନ୍ମଧ୍ୟରୁ ୧୪ଟି ତୀର୍ଥଙ୍କର ଏବଂ ୭ଟି ଯକ୍ଷ ଯକ୍ଷିଣୀଙ୍କ ମୂର୍ତ୍ତି ଜୟପୁରସ୍ଥ ଜିଲ୍ଲା ସଂଗ୍ରହାଳୟକୁ ସ୍ଥାନାନ୍ତରିତ ହୋଇଛି। କେତେକ ଜୈନମୂର୍ତ୍ତି ନିକଟସ୍ଥ ଶୈବମନ୍ଦିରର କାନ୍ଥ ଭିତରେ ରହିଯାଇଛି। ତତ୍ରସ୍ଥ ଜଗନ୍ନାଥ ମନ୍ଦିରରେ ଥିବା ଏକ ଋଷଭନାଥ ମୂର୍ତ୍ତିକୁ ଗ୍ରାମବାସୀମାନେ ଭୁସଢ଼ୀ, ଟାଙ୍ଗିଆ ଆଦି ଘର୍ଷଣ କରିବା ପାଇଁ ବ୍ୟବହାର କରୁଛନ୍ତି। Steatite ପ୍ରସ୍ତରରେ ନିର୍ମିତ ଋଷଭନାଥଙ୍କ ଏକ ଆସୀନ ମୂର୍ତ୍ତି ଅକ୍ଷତ ଅବସ୍ଥାରେ ଅନ୍ୟ ଏକ ମନ୍ଦିରରେ ପୂଜିତ ହେଉଛନ୍ତି। ଏହି ମନ୍ଦିରର ଛାତ ନଡ଼ାରେ ତିଆରି ହୋଇଛି। ଭୈରବସିଂହପୁରର ଅଧିକାଂଶ ମୂର୍ତ୍ତି ଅଧ ମିଟରରୁ ଦେଢ଼ମିଟର ଉଚ୍ଚତା ବିଶିଷ୍ଟ। ସେଠାରୁ ମିଳିଥିବା ୧୪ଟି ତୀର୍ଥଙ୍କର ମୂର୍ତ୍ତି ମଧ୍ୟରୁ ୬ଟି ଋଷଭନାଥ,ଗୋଟିଏ ଲେଖାଏଁ ଅଜିତନାଥ,ପାର୍ଶ୍ୱନାଥ ଓ ମହାବୀରଙ୍କର।,ଅବଶିଷ୍ଟ ୫ଟି ମୂର୍ତ୍ତି କେଉଁ କେଉଁ ତୀର୍ଥଙ୍କରଙ୍କର ତାହା ସଠିକ୍ ଭାବେ ଚିହ୍ନିତ ହୋଇପାରିନାହିଁ। ଅଧିକାଂଶ ମୂର୍ତ୍ତି ଯୋଗାସନ ମୁଦ୍ରାର। ଯୋଗାସନରେ ଆସୀନ ମହାବୀରଙ୍କ ମୂର୍ତ୍ତିର ନିମ୍ନଭାଗରେ ତାଙ୍କର ଶାସନଦେବୀ ସିଦ୍ଧାୟିକା ପଦ୍ମପୀଠ ଉପରେ ବସିଛନ୍ତି। ଚତୁର୍ଭୁଜା ସିଦ୍ଧାୟିକାଙ୍କ ଉର୍ଦ୍ଧ୍ୱ ଦୁଇଟି ହସ୍ତରେ ପରଶୁ ଏବଂ ଖଡ୍ଗ ଏବଂ ନିମ୍ନ ହସ୍ତ ଦ୍ୱୟରେ ବରଦା ମୁଦ୍ରା ଦେଖାଯାଏ। ଦକ୍ଷିଣ ପାର୍ଶ୍ୱରେ ଧର୍ମଚକ୍ର ସହିତ ଯକ୍ଷ ଏବଂ ବାମପାର୍ଶ୍ୱରେ ଯୋଡ଼ହସ୍ତରେ ଆଣ୍ଠୁମାଡି ବସିଥିବା ଜଣେ ନାରୀ ମୂର୍ତ୍ତି ଖୋଦିତ ହୋଇଛନ୍ତି। ଉଭୟ ପାର୍ଶ୍ୱରେ ଚୌରିଧାରୀ ରହିଛନ୍ତି। ଭୈରବସିଂହପୁର ନିକଟବର୍ତ୍ତୀ ପାହାଡ଼ଗୁଡ଼ିକରେ ଅନେକ ଜୈନଗୁମ୍ଫା ଦେଖିବାକୁ ମିଳେ। [୨୪]।

ସୁବର୍ଣ୍ଣମୂଳରୁ ପ୍ରାପ୍ତ ଋଷଭନାଥ ଏବଂ ପାର୍ଶ୍ୱନାଥଙ୍କ ମୂର୍ତ୍ତି ଜୟପୁରସ୍ଥ ମ୍ୟୁଜିୟମ୍‌ରେ ସଂରକ୍ଷିତ ହୋଇଛି। ପାର୍ଶ୍ୱନାଥଙ୍କ ମୂର୍ତ୍ତି କାୟୋତ୍ସର୍ଗ ମୁଦ୍ରାରେ ଦଣ୍ଡାୟମାନ ଅବସ୍ଥାରେ ଖୋଦିତ ହୋଇଛି। ଉର୍ଦ୍ଧ୍ୱ ଭାଗରେ ସପ୍ତଫେଣାଯୁକ୍ତ ସର୍ପ ଏବଂ ନିମ୍ନରେ ଅଞ୍ଜଳି ମୁଦ୍ରାରେ ଭକ୍ତମାନଙ୍କ ଚିତ୍ର ଖୋଦିତ ହୋଇଛି। ଋଷଭନାଥଙ୍କ ମୂର୍ତ୍ତି ଯୋଗାସନରେ ଖୋଦିତ ହୋଇଛି। ନିମ୍ନରେ ଚକ୍ରେଶ୍ୱରୀ ଗରୁଡ଼ ଉପରେ ବସିଛନ୍ତି। ଉଭୟ ପାର୍ଶ୍ୱରେ ଜଣେ ଲେଖାଏଁ ଚୌରିଧାରୀ ରହିଛନ୍ତି। ଯକ୍ଷ ଗୋମେଧଙ୍କ ସମେତ ଆଠଜଣ ଭକ୍ତଙ୍କ ପ୍ରତିମୂର୍ତ୍ତି ନିମ୍ନଭାଗରେ ରହିଛି। ଉପରିଭାଗରେ ପୁଷ୍ପମାଲ୍ୟଧାରୀ ଗନ୍ଧର୍ବ, ଅପ୍ସରା କେବଳ ବୃକ୍ଷ ପ୍ରଭୃତି ଅଙ୍କିତ ହୋଇଛି। ଏହାବ୍ୟତୀତ କୋଟପାଡରୁ ଆଣୀତ ଦୁଇଟି ଋଷଭନାଥଙ୍କ ମୂର୍ତ୍ତି ଜୟପୁରସ୍ଥ ସଂଗ୍ରହାଳୟରେ ଅଛି। ଜାମୁଣ୍ଡାରୁ ଋଷଭ-

ନାଥଙ୍କର ତିନୋଟି, ପାର୍ଶ୍ୱନାଥଙ୍କର ଦୁଇଟି ଏବଂ ମହାବୀରଙ୍କ ଗୋଟିଏ ମୂର୍ତ୍ତି ମିଳିଛି ।

କୋରାପୁଟ ଜିଲ୍ଲାର କେତେକ ଶୈବ ଓ ଶାକ୍ତ ମନ୍ଦିରରେ ଜୈନମୂର୍ତ୍ତି ପୂଜିତ ହେଉଛନ୍ତି । ନନ୍ଦପୁରର ସର୍ବେଶ୍ୱର ମନ୍ଦିର ସମ୍ମୁଖସ୍ଥ ଏକ ଖୋଲା ମଣ୍ଡପରେ ପାର୍ଶ୍ୱନାଥଙ୍କ ଶାସନଦେବୀ ପଦ୍ମାବତୀଙ୍କ ମୂର୍ତ୍ତି ରହିଛି । ପଦ୍ମପୀଠ ଉପରେ ଲଳିତାସନରେ ଉକ୍ତ ମୂର୍ତ୍ତିଟି ଖୋଦିତ ହୋଇଛି । ନିମ୍ନଭାଗରେ ପଦ୍ମାବତୀଙ୍କ ହସ୍ତୀ ଲାଞ୍ଛନ ଅଛି । ଊର୍ଦ୍ଧ୍ୱଭାଗରେ ଯୋଗାସନ ମୁଦ୍ରାରେ ପାର୍ଶ୍ୱନାଥଙ୍କ ମୂର୍ତ୍ତି ଅଛି । ତାଙ୍କର ମସ୍ତକ ସର୍ପଫଣା ଦ୍ୱାରା ଆଚ୍ଛାଦିତ ହୋଇଛି । ନାନାଦି ଅଳଙ୍କାରରେ ବିଭୂଷିତା ପଦ୍ମାବତୀଙ୍କର ଏପରି ମୂର୍ତ୍ତି ଅନ୍ୟତ୍ର କ୍ୱଚିତ୍ ଦେଖିବାକୁ ମିଳେ ।

ବୋରିଗୁମ୍ମା ନିକଟବର୍ତ୍ତୀ ଭୈରବ ପର୍ବତର ପାଦଦେଶରେ ଅବସ୍ଥିତ ଭୈରବ ମନ୍ଦିର କାନ୍ଥରେ ମହାବୀରଙ୍କ ମୂର୍ତ୍ତି ଅଛି । ପଦ୍ମପୀଠ ଉପରେ ଯୋଗାସନ ମୁଦ୍ରାରେ ଉପବିଷ୍ଟ ମହାବୀରଙ୍କ ସହ ତାଙ୍କର ଶାସନ ଦେବୀ ସିଦ୍ଧାୟିକାଙ୍କ ପ୍ରତିମା ମଧ୍ୟ ଖୋଦିତ ହୋଇଛି । ପଦ୍ମପୀଠ ସମ୍ମୁଖରେ ଗୋଟିଏ ଧାଡ଼ିରେ ଅଷ୍ଟଗ୍ରହ ରହିଛନ୍ତି । ଜୟପୁରର ଭଗବତୀ ମନ୍ଦିରରେ ପ୍ରତିଷ୍ଠିତ ଷୋଡ଼ଶଭୁଜା ଚକ୍ରେଶ୍ୱରୀଙ୍କୁ ସ୍ଥାନୀୟ ଲୋକେ ଭଗବତୀ ନାମରେ ପୂଜା କରୁଛନ୍ତି । ଏହି ମୂର୍ତ୍ତିଟି ଏକାଦଶ ଖ୍ରୀଷ୍ଟାବ୍ଦର । ପଦ୍ମପୀଠ ଉପରେ ପଦ୍ମାସନ ମୁଦ୍ରାରେ ଆସୀନ ଚକ୍ରେଶ୍ୱରୀଙ୍କ ମୂର୍ତ୍ତି ନାନାଦି ଅଳଙ୍କାରରେ ଶୋଭା ପାଉଛନ୍ତି । ପଦ୍ମପୀଠ ତଳେ ଗରୁଡ଼ ଲାଞ୍ଛନ ଅଛି । ତାଙ୍କ ଊର୍ଦ୍ଧ୍ୱରେ ଋଷଭନାଥଙ୍କ ମୂର୍ତ୍ତି ଧ୍ୟାନମୁଦ୍ରାରେ ପଦ୍ମପୀଠ ଉପରେ ଖୋଦିତ ହୋଇଛି । ଗର୍ଭଗୃହ ସମ୍ମୁଖସ୍ଥ ପ୍ରକୋଷ୍ଠରେ କେତେକ ତୀର୍ଥଙ୍କର ମୂର୍ତ୍ତି ସ୍ଥାପିତ ହୋଇଛନ୍ତି । ସେଗୁଡିକ ମଧ୍ୟରୁ କେତେକ ଶାନ୍ତିନାଥ, ଅଜିତନାଥ ଓ ବିମଳନାଥଙ୍କ ସହିତ ଚିହ୍ନିତ । (୨୫) । ସ୍ଥାନୀୟ ଅଧିବାସୀମାନେ ଏହି ମୂର୍ତ୍ତିଗୁଡ଼ିକୁ ମହାଦେବଙ୍କ ନଗ୍ନମୂର୍ତ୍ତି ବୋଲି ବିଶ୍ୱାସ କରନ୍ତି । ଜୟପୁରର କାଳୀ ମନ୍ଦିରରେ ଋଷଭନାଥ ଓ ଚକ୍ରେଶ୍ୱରୀଙ୍କ ମୂର୍ତ୍ତି ପୂଜିତ ହେଉଛନ୍ତି । ପାର୍ଶ୍ୱବର୍ତ୍ତୀ ଗଙ୍ଗା ମନ୍ଦିରରେ ମଧ୍ୟ ଜୈନ ତୀର୍ଥଙ୍କର ମୂର୍ତ୍ତି ରହିଛି । ନନ୍ଦପୁରର ସର୍ବେଶ୍ୱର ମନ୍ଦିର ସମ୍ମୁଖସ୍ଥ ଖୋଲାମଣ୍ଡପରେ ପାର୍ଶ୍ୱନାଥଙ୍କ ଶାସନଦେବୀ ପଦ୍ମାବତୀଙ୍କ ମୂର୍ତ୍ତି ରହିଛି । ପଦ୍ମପୀଠ ଉପରେ ଲଳିତ ମୁଦ୍ରାରେ ଆସୀନ ପଦ୍ମାବତୀଙ୍କ ମସ୍ତକ ପଞ୍ଚଫଣାଯୁକ୍ତ ସର୍ପଦ୍ୱାରା ଆଚ୍ଛାଦିତ ହୋଇଛି । ତାଙ୍କର ଚତୁର୍ଭୁଜ ହସ୍ତରୁ ଗୋଟିଏ ଭଗ୍ନ ହୋଇଛି ଅନ୍ୟ ତିନୋଟି ହସ୍ତରେ ବୃକ୍ଷର ଶାଖା ବରଦ ମୁଦ୍ରା ଏବଂ ପରଶୁ ରହିଛି । ପଦ୍ମାବତୀଙ୍କ ଊର୍ଦ୍ଧ୍ୱରେ ଯୋଗାସନ ମୁଦ୍ରାରେ ପାର୍ଶ୍ୱନାଥଙ୍କ ମୂର୍ତ୍ତି ରହିଛି । ତାଙ୍କର ମସ୍ତକ ସପ୍ତ ଫଣା ଯୁକ୍ତ ସର୍ପ ଦ୍ୱାରା ଆଚ୍ଛାଦିତ ହୋଇଛି । ଦେବୀ ପଦ୍ମାବତୀ ବିଭିନ୍ନ ଅଳଙ୍କାରରେ ଭୂଷିତା ହୋଇଛନ୍ତି । ତାଙ୍କର ନିମ୍ନରେ ହସ୍ତୀ ଲାଞ୍ଛନ ଅଛି ।

କୋରାପୁଟ ଜିଲ୍ଲାର ମଧ୍ୟଯୁଗୀୟ ଜୈନମୂର୍ତ୍ତି, ମନ୍ଦିର ଓ ଗୁମ୍ଫା ପ୍ରାଚୀନ ଗଙ୍ଗବଂଶ **(Early or Eastern Gangas)**, ସୋମବଂଶ ଓ ତେଲୁଗୁ ଚୋଡ଼ ରାଜାମାନଙ୍କ ପୃଷ୍ଠପୋଷକତାରେ ନିର୍ମିତ ହୋଇଥିଲା ।

ଗଞ୍ଜାମ ଜିଲ୍ଲାର କୃଷ୍ଣଗିରି ଜଲନ୍ତି, ବାନ୍ଧୁଡା ନଗୀକଳ ଧାନପଣି ନନ୍ଦକଟବର୍ତ୍ତୀ ମାହାଡ଼, କେନ୍ଦୁଝରଁ ମାଳ ଏବଂ ମହେନ୍ଦ୍ରଗିରିରେ ଜୈନଗୁମ୍ଫା ପରିଦୃଷ୍ଟହୁଏ । ଘୁମୁସରରେ ମଧ୍ୟ ଜୈନ ଧର୍ମର ପ୍ରତ୍ନତାତ୍ତ୍ୱିକ ଅବଶେଷ ମିଳିଛି ।

ମଧ୍ୟଯୁଗରେ ଭୁବନେଶ୍ୱରସ୍ଥ ଖଣ୍ଡଗିରି ଜୈନଧର୍ମର ଏକ ପ୍ରଧାନ ପୀଠ ରୂପେ ଖ୍ୟାତି ଲାଭ କରିଥିଲା ଏହି ସମୟରେ ଜୈନ ମୁନି ତଥା ଅନୁବ୍ରତୀ ତଥା ମହାବ୍ରତୀଙ୍କ ଆବାସ ନିମନ୍ତେ ଗୁମ୍ଫାମାନ ଖୋଦିତ ହୋଇଥିଲା । ଖଣ୍ଡଗିରିର ମଧ୍ୟଯୁଗୀୟ ଗୁମ୍ଫା ଗୁଡ଼ିକ ମଧ୍ୟରେ ଧ୍ୟାନଘର ଗୁମ୍ଫା, ନବମୁନି ଗୁମ୍ଫା, ବାରଭୁଜୀ ଗୁମ୍ଫା, ମହାବୀର ଗୁମ୍ଫା, ଲଲାଟେନ୍ଦୁ କେଶରୀ ଗୁମ୍ଫା ଏବଂ ତ୍ରିଶୂଳ ଗୁମ୍ଫା ଉଲ୍ଲେଖଯୋଗ୍ୟ । ଉକ୍ତ ଗୁମ୍ଫା ଗୁଡ଼ିକର ଏକ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

ନବମୁନି ଗୁମ୍ଫାରେ ଦୁଇଟି ପ୍ରକୋଷ୍ଠ ରହିଛି । ଦକ୍ଷିଣ ପାର୍ଶ୍ୱ ପ୍ରକୋଷ୍ଠର ପଛପଟ କାନ୍ଥରେ ଯୋଗାସନ ମୁଦ୍ରାରେ ସାତ ଜଣ ତୀର୍ଥଙ୍କର ଯଥା : ଋଷଭନାଥ, ଅଜିତ୍‌-ନାଥ, ସମ୍ଭବ ନାଥ ଅଭିନନ୍ଦନ ନାଥ, ବସୁପୂଜ୍ୟ, ପାର୍ଶ୍ୱନାଥ ଓ ନେମୀନାଥଙ୍କ ଯୋଗାସନ ମୂର୍ତ୍ତି ତଥା ନିମ୍ନରେ ସେମାନଙ୍କର ଶାସନଦେବୀ ଯଥାକ୍ରମେ ଚକ୍ରେଶ୍ୱରୀ, ରୋହିଣୀ, ପ୍ରଜ୍ଞାପ୍ତି, ବଜ୍ର ଶୃଙ୍ଖଳା, ଗାନ୍ଧାରୀ, ପଦ୍ମାବତୀ ଏବଂ ଆମ୍ବାଙ୍କ ପ୍ରତିମା ଖୋଦିତ ହୋଇଛି । ଶାସନଦେବୀଙ୍କ ମୂର୍ତ୍ତି ପୂର୍ବରୁ ଗଣେଶଙ୍କ ମୂର୍ତ୍ତି ରହିଛି । ବାମ ଓ ଡ଼ାହାଣ ପଟ କାନ୍ଥରେ ଯଥାକ୍ରମେ ଚନ୍ଦ୍ରପ୍ରଭ ଓ ଋଷଭନାଥ ଏବଂ ପାର୍ଶ୍ୱନାଥଙ୍କ ଯୋଗାସନମୂର୍ତ୍ତି ଖୋଦିତ ହୋଇଛି । ନବମୁନି ଗୁମ୍ଫାରେ ପାଞ୍ଚଟି ଶିଳାଲେଖ ଉତ୍କୀର୍ଣ୍ଣ ହୋଇଛି । ତନ୍ମଧ୍ୟରୁ ଚାରୋଟିରେ କେବଳ ନାମୋଲ୍ଲେଖ ଅଛି, ଯଥା: ଶ୍ରାବକଭୁବ, ଶୁଭଚନ୍ଦ୍ର, ବିଜୋ ଏବଂ ଶ୍ରୀଧର । ପଞ୍ଚମଟି ଉଦ୍ୟୋତକେଶରୀଙ୍କ ରାଜତ୍ୱର (ଖ୍ରୀ.ଅ.୧୦୪୦-୧୦୬୫) ଅଷ୍ଟାଦଶ ବର୍ଷରେ ଖୋଦିତ ହୋଇଥିଲା । ଏ ସମ୍ପର୍କରେ ପୂର୍ବ ଅଧ୍ୟାୟରେ ସୂଚିତ ହୋଇଛି । ପାଞ୍ଚଟିଯାକ ଶିଳାଲେଖ ମଧ୍ୟଯୁଗର ।

ବାରଭୁଜ ଗୁମ୍ଫାର ବାମପଟ ବାରଣ୍ଡାକାନ୍ଥରେ ବାରଭୁଜ ରୋହିଣୀ ଏବଂ ଡ଼ାହାଣପଟ କାନ୍ଥରେ ବାରଭୁଜ ଚକ୍ରେଶ୍ୱରୀଙ୍କ ପ୍ରତିମୂର୍ତ୍ତି ଖୋଦିତ ହୋଇଛି । ତେଣୁ ଗୁମ୍ଫାଟି ବାରଭୁଜ ଗୁମ୍ଫା ନାମରେ ଅଭିହିତ । ଗୁମ୍ଫାର ଭିତରପଟ କାନ୍ଥରେ ଚତୁର୍ବିଂଶ ତୀର୍ଥଙ୍କରଙ୍କ ଯୋଗାସନ ମୂର୍ତ୍ତି, ସେମାନଙ୍କର ଲାଞ୍ଛନ, ଚ୍ୱମରଧାରୀ, କେବଳ ବୃକ୍ଷ ଆଦି ଦେଖିବାକୁ ମିଳେ । ସେଠାରେ ପାର୍ଶ୍ୱନାଥଙ୍କ କାୟୋତ୍ସର୍ଗ ମୁଦ୍ରା ବିଶିଷ୍ଟ ଏକ ପୃଥକ୍ ମୂର୍ତ୍ତି ମଧ୍ୟ ରହିଛି । ତୀର୍ଥଙ୍କର ମୂର୍ତ୍ତି ଗୁଡ଼ିକର ନିମ୍ନଦେଶରେ ସେମାନଙ୍କର ଶାସନ ଦେବୀଙ୍କ ମୂର୍ତ୍ତି ରହିଛି । ଶାନ୍ତିନାଥଙ୍କ ଶାସନ ଦେବୀ ମହାମାନସୀ ଏବଂ ମୁନି ସୁବ୍ରତଙ୍କ ଶାସନ ଦେବୀ ବହୁ-ରୂପିଣୀଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଅର୍ଦ୍ଧପର୍ଯ୍ୟଙ୍କାସନ ମୁଦ୍ରାରେ ଆସୀନ ।

ମହାବୀରଙ୍କ ଗୁମ୍ଫାରେ ୨୪ ତୀର୍ଥଙ୍କରଙ୍କ ନଗ୍ନମୂର୍ତ୍ତି ରହିଛି । ସେଥିରୁ ଆଠୋଟି ମୂର୍ତ୍ତି ଦଣ୍ଡାୟମାନ ଓ ଅବଶିଷ୍ଟ ଉପବେଶନ କରିଛନ୍ତି । ପଛପଟ କାନ୍ଥରେ ମୂଗୁନି ପଥରରେ

ଋଷଭନାଥଙ୍କ ତିନୋଟି ଦଣ୍ଡାୟମାନ ମୂର୍ତ୍ତି ଅଛି । ଲଲାଟେନ୍ଦୁକେଶରୀ ଗୁମ୍ଫାରେ ପ୍ରଥମେ ଦୁଇଟି ପ୍ରକୋଷ୍ଠ ଏବଂ ଗୋଟିଏ ବରଣ୍ଡା **(verandah)** ଥିଲା । ବାରଣ୍ଡାରେ ସ୍ତମ୍ଭମାନ ନିର୍ମିତ ହୋଇଥିଲା । ଅଧୁନା ସେ ସବୁର କେବଳ ଭଗ୍ନାବଶେଷ ରହିଛି । ଗୁମ୍ଫାର ବାମପଟ କୋଠରୀରେ କାୟୋତ୍ସର୍ଗ ମୁଦ୍ରା ବିଶିଷ୍ଟ ଋଷଭନାଥଙ୍କ ଦୁଇଟି ଓ ପାର୍ଶ୍ୱନାଥଙ୍କ ତିନୋଟି ମୂର୍ତ୍ତି ଦେଖିବାକୁ ମିଳେ । ଦକ୍ଷିଣ ବଖରାରେ ପାର୍ଶ୍ୱନାଥଙ୍କର ଦୁଇଟି ଏବଂ ଋଷଭନାଥଙ୍କ ଗୋଟିଏ ମୂର୍ତ୍ତି ଅଛି । ଋଷଭନାଥଙ୍କ ମୂର୍ତ୍ତି ଉପରେ ପାଞ୍ଚପଂକ୍ତି ବିଶିଷ୍ଟ ଏକ ଅଭିଲେଖ ଉତ୍କୀର୍ଣ୍ଣ ହୋଇଛି । (୧୬) । ଅଭିଲେଖଟିରୁ ଜ୍ଞାତ ହୁଏ ଯେ ଉଦ୍ୟୋତକେଶରୀଙ୍କ ରାଜତ୍ୱର ପଞ୍ଚମ ବର୍ଷରେ କୁମାର ପର୍ବତ (ଖଣ୍ଡଗିରି) ରେ ଏକ ଜୀର୍ଣ୍ଣ ବାପୀ (ପାହାଚ ଥିବା କୂପ) ଓ କେତେକ ଭଗ୍ନ ମନ୍ଦିରର ସଂସ୍କାର ତଥା ସେଠାରେ ୨୪ ତୀର୍ଥଙ୍କରଙ୍କ ପ୍ରତିମାମାନ ପ୍ରତିଷ୍ଠା କରାଯାଇଥିଲା । ଏହି ଗୁମ୍ଫା ସନ୍ନିକଟ ଆକାଶଗଙ୍ଗା ନାମକ ଏକ କ୍ଷୁଦ୍ରଜଳାଶୟ ସହିତ ଶିଳାଲେଖ ବର୍ଣ୍ଣିତ ବାପିକୁ ଚିହ୍ନିତ କରାଯାଏ । ଖଣ୍ଡଗିରିର ଅନେକ ଭଗ୍ନ ମନ୍ଦିରର ଆମଳକ ଶିଳା ଓ ଖପୁରୀ ବିକ୍ଷିପ୍ତ ଭାବରେ ପଡ଼ିଥିବା ଦେଖାଯାଏ । ସମ୍ଭବତଃ ସେଗୁଡ଼ିକ ଘଷିତ ଶିଳାଲିପିରେ ବର୍ଣ୍ଣିତ ୨୪ ତୀର୍ଥଙ୍କରଙ୍କ ମନ୍ଦିର ଗୁଡ଼ିକର ଭଗ୍ନାବଶେଷ । (୧୭) । ଧାନଘର ଗୁମ୍ଫା ପ୍ରଥମେ ଅର୍ହତମାନଙ୍କ ଆବାସ ନିମନ୍ତେ ନିର୍ମିତ ହୋଇଥିଲା । ମଧ୍ୟ ଯୁଗରେ ଉକ୍ତ ଗୁମ୍ଫାରେ ତୀର୍ଥଙ୍କର ଓ ଶାସନଦେବୀଙ୍କ ମୂର୍ତ୍ତି ସ୍ଥାପିତ ହେଲା । ସେହିପରି ତ୍ରିଶୂଳଗୁମ୍ଫା ମଧ୍ୟ ପ୍ରଥମେ ଅର୍ହତଙ୍କ ଆଶ୍ରୟ ନିମନ୍ତେ ନିର୍ମିତ ହୋଇଥିଲା । ମଧ୍ୟ ଯୁଗରେ ତାହା ଜୈନ ଗୁମ୍ଫା ମନ୍ଦିରରେ ପରିଣତ ହେଲା । ତ୍ରିଶୂଳ ଗୁମ୍ଫା କାନ୍ଥରେ ୨୪ ଜଣ ତୀର୍ଥଙ୍କରଙ୍କ ନଗ୍ନ ମୂର୍ତ୍ତି ଖୋଦିତ ହୋଇଛି । ସେଗୁଡ଼ିକ ମଧ୍ୟରୁ ଆଠଗୋଟି କାୟୋତ୍ସର୍ଗ ମୁଦ୍ରାରେ ଦଣ୍ଡାୟମାନ ଏବଂ ଅବଶିଷ୍ଟ ଯୋଗମୁଦ୍ରାରେ ଆସୀନ । ଏହି ମୂର୍ତ୍ତିଗୁଡ଼ିକ ପଞ୍ଚଦଶ ଖ୍ରୀଷ୍ଟାବ୍ଦର । ଖଣ୍ଡଗିରିର କେତେକ ସୁନ୍ଦର ଜୈନ ମୂର୍ତ୍ତି **British Museum, London** ରେ ସୁରକ୍ଷିତ ହୋଇଛି (୧୮) ।

ମଧ୍ୟଯୁଗୀୟ ଓଡ଼ିଶାର ଜୈନ କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଉତ୍କର୍ଷର ଶୀର୍ଷ ସ୍ଥାନରେ ଉପନୀତ ହୋଇଥିଲା । ଶୈବ, ଶାକ୍ତ ଓ ଜଗନ୍ନାଥ ମନ୍ଦିରଗୁଡ଼ିକରେ ସ୍ଥାପିତ ବିଭିନ୍ନ ଜୈନ ମୂର୍ତ୍ତିମାନଙ୍କରୁ ପ୍ରମାଣିତ ହୁଏ ଯେ ମଧ୍ୟଯୁଗରେ ଜୈନ ଧର୍ମ, ଶୈବ, ବୈଷ୍ଣବ ଓ ଶାକ୍ତ ଧର୍ମ ସହିତ ସମାନ୍ତରାଳ ଭାବରେ ବ୍ୟାପ୍ତି ଲାଭ କରିଥିଲା । ଖଣ୍ଡଗିରିର ମଧ୍ୟଯୁଗୀୟ ଗୁମ୍ଫା ସମୂହ ଏବଂ ତନ୍ମଧ୍ୟସ୍ଥ ବିଭିନ୍ନ କାରୁକାର୍ଯ୍ୟପୂର୍ଣ୍ଣ ଜୈନମୂର୍ତ୍ତି ଉତ୍କଳୀୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଶିଳ୍ପର ଗୌରବ ରକ୍ଷା କରିପାରିଛି । ଅଦ୍ୟାବଧି ଓଡ଼ିଶାର ଗଞ୍ଜାମ, ଫୁଲବାଣି, କଳାହାଣ୍ଡି, ବଲାଙ୍ଗିର, ସମ୍ବଲପୁର ଓ ସୁନ୍ଦରଗଡ଼ ଜିଲ୍ଲାମାନଙ୍କର ବହୁ ସ୍ଥାନରେ ଜୈନ କୀର୍ତ୍ତି ଅଜ୍ଞାତ ଅବସ୍ଥାରେ ରହିଛି । ଏସବୁ ସ୍ଥାନରେ ସର୍ବେକ୍ଷଣ ଏବଂ ପ୍ରତ୍ନତାତ୍ତ୍ୱିକ ଉତ୍ଖୋଦନ ହେଲେ ଜୈନ କଳା ଓ ସ୍ଥାପତ୍ୟର ଆହୁରି ଅନେକ ବିଭବ ଲୋକଲୋଚନକୁ ଆସିପାରିବ । ସେଗୁଡ଼ିକର ପୁଙ୍ଖାନୁପୁଙ୍ଖ ଅନ୍ୱେଷଣ ତଥା ଗବେଷଣା ଦ୍ୱାରା ବହୁତଥ୍ୟ

ଉଦ୍‌ଘାଟିତ ହେବ ଏବଂ ମଧ୍ୟଯୁଗୀୟ ଓଡ଼ିଶାରେ ଜୈନଧର୍ମ,କଳା ଓ ସଂସ୍କୃତିର ଏକ ପୂର୍ଣ୍ଣାଙ୍ଗ ଇତିହାସ ସଙ୍କଳିତ ହୋଇପାରିବ ।

ପାଦଟୀକା :


୧. P K.Ray [Edited], Archaeological Survey Report, Prachi valley, pp 53, 54, 1974-75.
୨. G.S.Das, Prachi valley report, chapter III, Utkal university.
୩. A. Ghosh, Jaina Art and Architecture, [Edited] vol II, plate 1623.
୪. ଡ଼ା ସୁଧାଚରଣ ପଣ୍ଡା, ପ୍ରାଚୀ ନଦୀର ଐତିହାସିକ ବିଭବ, ପୃ ୧୨୮, ୧୨୯, ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ ୧୯୬୯.
୫. K.C.Panigrahi,Archaeological Remains at Bhubaneswar, p 93, figures 59,60.
୬. ଚକ୍ରଧର ମହାପାତ୍ର, ଭାଣେଶ୍ୱର, ପୃ ୨, ୧୨.
୭. ଡ଼ : କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ଇତିହାସ ଓ କିମ୍ବଦନ୍ତୀ', ଛବି ୯, ୧୦ ଓ ୧୧, ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶିତ, ୧୧୭୧.
୮. ସମାଜ, ୨, ୮, ୧୯ ୮.
୯. ପ୍ରଜାତନ୍ତ୍ର, ୮,୯, ୧୯୭୬
୧୦. N.N.Vasu, The Archaeological Survey of Mayurbhanj vol I, p bte 21.
୧୧. M.P. Das Jain Antiquities from Charampa, Orissa Historical Research Journal, vol XI No I, pp. 50-53.
୧୨. N,N.Vasu, Archaeological Survery of Mayurbhanj, plate 23.
୧୩. R. P. Mahepatra, Jaina Monuments of Orissa, pp 107-108.
୧୪. N.N. Vasu, Archaeological Survey of Mayurbhani; plate 20.
୧୫. S.N. Rajguru, Inscriptions of Orissa, vol VI, p 7.
୧୬. ନବୀନକୁମାର ସାହୁ, ଓଡ଼ିଆ ଜାତିର ଇତିହାସ ପୃ ୩୬୮, ପାଦଟୀକା ୧୭୦.

୭. B. Acharya, 'Jaina Ruins in Keonjhar State' Journal of Kalinga Historical Research Society, vol II, p 227 (1950).

୮. Arjun Joshi, A unique Rishabha Image from Podasingidi, Orissa Historical Research Journal, vol X, No I, pp 74-75.

୯. B Acharya 'Jaina Ruins in Keonjhar State', Journal of Kalinga Historical Research Soceiety, vol II p. 226; A Joshi Further Light on the Ruins at Podasingidi, Orissa Historical Research Journal, vol X, No 4, pp 30-32.

୧୦. ହଣ୍ଟାର, ୧୩, ୯, ପୃ ୯୧୭ ।

୧୧. R.p Mahapatra, Jaina Monuments of Orissa, pp 117-138.

୧୨. U.K. Subuddhi. Journal of Orissan History, vol I, No I, pp 20-21.

୧୩. Vidya Dahejia, Early Stone temples of Orissa p103.

୧୪. G Ramdas, Journal of Andhra Historical Research Society, vol VI, pp 8-14.

୧୫. B.K. Rath, A unique image of Chakresvari Orissa Historical Research Journal. vol XXXIII, No. 1/4, pp 127-140.

୧୬. Epigraphia Indica, vol X,II, p 166.

୧୭. R.p. Mahapatraଙ୍କ Jaina Monuments of Orissa, pp48-138 ଏବଂ Udayagiri and Khandagiri Caves' ଗ୍ରନ୍ଥ ଦ୍ୱୟରେ ଓଡ଼ିଶାର ମଧ୍ୟ ଗୁମ୍ଫାସ୍ଥ ଜୈନ କଳାର ବିସ୍ତୃତ ବର୍ଣ୍ଣନ ରହିଛି ।

୧୮. R. P. Chandra, Medieval Indian Sculptures in the British Museum London p 71, 1936.

---

"ଓଁ କାରମ୍ ବଦ୍ ସମଯୁକ୍ତଂ ନିତ୍ୟଂ ଧ୍ୟାୟନ୍ତି ଯୋଗୀନଃ
କମଦଂ ନମୋକ୍ଷଦଂ ସମକ୍ଷ୍ୟାତଂ ଧ୍ୟାନଂ ପିଙ୍କାନପୂରଚୌଃ ।"

—o—

# ଅଷ୍ଟମ ଅଧ୍ୟାୟ

## ଜୈନ କଥା-ସାହିତ୍ୟ

କଥା ଓ କାହାଣୀ ମାନବ ଜୀବନର ପ୍ରିୟ ବସ୍ତୁ । ଶୈଶବାବସ୍ଥାରୁ ହିଁ ତାହାର ପ୍ରଭାବ ହୃଦୟ ପଟରେ ଅଙ୍କିତ ହୋଇଥାଏ । ବିଧି-ନିଷେଧାତ୍ମକ ଉପଦେଶ ଅପେକ୍ଷା କଥା ଓ କାହାଣୀ ପିଲାମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିପାରେ । କଥା ଓ କାହାଣୀ ପଢ଼ିବା ଏବଂ ଶୁଣିବା ଦ୍ୱାରା ଯେଉଁ ରସ ଅନୁଭୂତ ହୁଏ ତଦ୍ୱାରା ସମୟ ଅତି ସହଜରେ ଅତିବାହିତ ହୋଇଯାଏ । ମନ ଲଘବ ହୁଏ । ଏହି ଅନୁଭୂତିର ଆଧାର ଉପରେ ଆମ୍ଭର ସାହିତ୍ୟିକମାନେ ଅତି ସୁନ୍ଦର ଏବଂ ସରସ କଥା-ଗ୍ରନ୍ଥମାନ ବହୁଳ ଭାବେ ରଚନା କରିଛନ୍ତି । କଥା ସାହିତ୍ୟର ପ୍ରାଚୀନ ପ୍ରୟୋଗ ଜୈନ ସାହିତ୍ୟରେ 'ପ୍ରଥମାନୁଯୋଗ', ବୌଦ୍ଧ ସାହିତ୍ୟରେ 'ସୁତ୍ତପିଟକ' ଏବଂ ବୈଦିକ ପରମ୍ପରାରେ 'ଇତିହାସ' ନାମରେ ଅଭିହିତ ।

ଭାରତୀୟ କଥା ସାହିତ୍ୟରେ ଜୈନ କଥାଗ୍ରନ୍ଥମାନଙ୍କର ସ୍ଥାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । କିନ୍ତୁ ଅତି ଖେଦର ବିଷୟ, ସେଗୁଡ଼ିକ ଉପରେ ଏ ପର୍ଯ୍ୟନ୍ତ କୌଣସି ନୂତନ ଦୃଷ୍ଟିପାତ ହୋଇ-ପାରିନାହିଁ । ଭାଷା ଓ ଶୈଳୀ ଦୃଷ୍ଟିରୁ ଜୈନ କଥାଗ୍ରନ୍ଥର ମହତ୍ତ୍ୱ ଉଲ୍ଲେଖନୀୟ । ସଂସ୍କୃତ, ପ୍ରାକୃତ ହିନ୍ଦି, ରାଜସ୍ଥାନୀ, ଗୁଜରାଟି, କନ୍ନଡ଼, ତାମିଲ୍ ଆଦି ଭାରତୀୟ ଭାଷା-ମାନଙ୍କରେ ଜୈନ କଥା ସାହିତ୍ୟ ପ୍ରକାଶିତ ହୋଇଛି । କେତେକ ଜୈନ କଥା ଅତ୍ୟଧିକ ଲୋକପ୍ରିୟ ହୋଇଥିବାରୁ ତାହା କେବଳ ଗୋଟିଏ ଭାଷାରେ ଅନ୍ୟୂନ ପଚିଶ ଜଣ ଜୈନ ବିଦ୍ୱାନ ରଚନା କରିଛନ୍ତି । ପରିମାଣ ଦୃଷ୍ଟିରୁ କେତେକ ଜୈନ କଥା ବିସ୍ତୃତ ଏବଂ ଲଘୁ ନିବନ୍ଧ ରୂପରେ ମଧ୍ୟ ପ୍ରକାଶିତ ହୋଇଛି । ପଣ୍ଡିତମାନେ ମୁଖ୍ୟତଃ ଧାର୍ମିକ ଦୃଷ୍ଟିକୋଣରୁ ଏହି ଜୈନ କଥାଗୁଡ଼ିକ ରଚନା କରିଥିଲେ ହେଁ ତହିଁରେ ରୁଚି ରୁଚିକାରୀ, ହାସ୍ୟୋଦ୍ଦୀପକ, କୌତୂହଳୋଦ୍ଦୀପକ, ଐତିହାସିକ ଆଖ୍ୟାନ ଆଦି ବିବିଧ ବିଷୟ ମଧ୍ୟ ନିହିତ ହୋଇଛି । ଜୈନ କଥା ସାହିତ୍ୟର ଯେତେଗୁଡ଼ିଏ ଗ୍ରନ୍ଥ ଆଜି ସୁଦ୍ଧା ସଂଗୃହୀତ ହୋଇଛି ତନ୍ମଧ୍ୟରୁ କେବଳ ଗୋଟିଏ ଗ୍ରନ୍ଥରେ ହିଁ ୩୬୪ ଟି କଥାର ସଙ୍କଳନ ଦେଖିବାକୁ ମିଳେ । ଜଣେ ବକ୍ତା ଯଦି କେବଳ ଗୋଟିଏ ଗ୍ରନ୍ଥକୁ ଭିତ୍ତି କରି ନୂଆ ନୂଆ କଥା ପ୍ରତ୍ୟହ ଶୁଣାଇବାକୁ ଚେଷ୍ଟା କରେ ତେବେ ସେ ବର୍ଷାଧିକ କାଳ ଅବିରାମ ଗତିରେ ଶ୍ରୋତାମାନଙ୍କୁ ମୁଗ୍ଧ କରିବାରେ ସମର୍ଥ ହେବ । ଲୋକଭାଷାରେ ରଚିତ ରାସ, ଚୌପଦୀ ଆଦି କେତେକ ଜୈନ ଗ୍ରନ୍ଥ କଳାତ୍ମକ ଦୃଷ୍ଟିକୋଣରୁ ଅତ୍ୟନ୍ତ ବିଭବଶାଳୀ । କେତେକ ଜୈନ ଗ୍ରନ୍ଥରେ

ନବରସର ସରସ ସମାବେଶ ହେତୁ ଏବଂ ଆଉ କେତେକ ଜୈନ ମହାକାବ୍ୟ ବିବିଧ ଦୃଷ୍ଟି-କୋଣରୁ ଅସାଧାରଣ ।

ଜୈନ ଆଗମରେ 'ପ୍ରଥମାନୁଯୋଗ', 'କରଣାନୁଯୋଗ' ଚରଣାନୁଯୋଗ' ଏବଂ 'ଦ୍ରବ୍ୟାନୁଯୋଗ' — ଏହିପରି ଚାରୋଟି ଅନୁଯୋଗର ଉଲ୍ଲେଖ ରହିଛି । ଏଥିରୁ ପ୍ରଥମଟିରେ ସଦାଚାରୀ ସ୍ତ୍ରୀ ଏବଂ ପୁରୁଷଙ୍କ ଜୀବନୀ-ଚରିତର ଚିତ୍ରଣ କରାଯାଇଛି । ଏହା ଧର୍ମ କଥା ନାମରେ ଆଖ୍ୟାତ । କେଉଁ ଧାର୍ମିକ ବିଧାନକୁ କେଉଁ ବ୍ୟକ୍ତି କି ପ୍ରକାର ଆଚରଣ କରି ବହୁ ବାଧାବିଘ୍ନ ଉପୁଜିବା ସତ୍ତ୍ୱେ ସେ ସଦାଚାରର ସମ୍ବନ୍ଧୀୟ ପ୍ରତିଜ୍ଞା ଗୁଡ଼ିକୁ ରକ୍ଷା କରିବାରେ କିପରି ସମର୍ଥ ହେବ ଏବଂ ତଦ୍ୱାରା ତାହାର କି ଫଳ ପ୍ରାପ୍ତି ହେବ, ଏସବୁ ବିଷୟ ଧର୍ମ କଥାରେ ସମାବିଷ୍ଟ ହୋଇଛି । ଦ୍ୱିତୀୟ ଅନୁଯୋଗରେ ଗଣିତ, ଭୂଗୋଳ ଆଦି ବିଷୟର ବର୍ଣ୍ଣନା ମିଳିଥାଏ । ତୃତୀୟ ଅନୁଯୋଗରେ ସଦାଚାର ସମ୍ବନ୍ଧୀୟ ମୂଳ ନିୟମ ଏବଂ ବିଭିନ୍ନ ଆଚରଣର ଭିନ୍ନ ଭିନ୍ନ ପ୍ରକ୍ରିୟା ସମ୍ପର୍କରେ ବର୍ଣ୍ଣନା ରହିଛି । ଚତୁର୍ଥ ଅନୁଯୋଗରେ ଜୀବ, ଅଜୀବ, କର୍ମ, ପରମାତ୍ମା, ଜଗତର ସ୍ୱରୂପ ଆଦି ତତ୍ତ୍ୱମାନଙ୍କର ବ୍ୟାଖ୍ୟାନ କରାଯାଇଅଛି । ଏଗୁଡ଼ିକ ମଧ୍ୟରେ 'ଧର୍ମକଥାନୁଯୋଗ' ର ସ୍ଥାନ ବହୁ ଉଚ୍ଚରେ । କାରଣ ଅଧିକାଂଶ ବ୍ୟକ୍ତି ଶିକ୍ଷିତ ନଥିବା ହେତୁ ସେମାନଙ୍କୁ ଉପରୋକ୍ତ ତିନୋଟି ଅନୁଯୋଗ ବୁଝିବାରେ କଷ୍ଟକର ହୋଇଥାଏ । ସଦାଚାରର ପାଳନ ତଥା ପାପରୁ ନିବୃତ୍ତି ଆଦି ଉପଦେଶ ଦେବା ଦ୍ୱାରା ଲୋକେ ଏହାକୁ ବିଶେଷ ଭାବେ ହୃଦୟଙ୍ଗମ କରି ପାପକାର୍ଯ୍ୟ ପରିହାର ପାଇଁ ଉଦ୍ୟୁକ୍ତ ହୁଅନ୍ତି ନାହିଁ । କିନ୍ତୁ 'ଧର୍ମକଥାନୁଯୋଗ'ର ଉକ୍ତ ସଦାଚାର ସମ୍ବଳିତ ନିୟମ ପାଳନ ଦ୍ୱାରା ସୁଫଳ ଏବଂ ପାପ କର୍ମର କୁଫଳ ପ୍ରଭୃତି ଜାଣିବା ଫଳରେ ଏହି ଅଜ୍ଞ ଲୋକ-ମାନେ ଅତି ସହଜରେ ଉକ୍ତ ସଦାଚାର ସମ୍ବନ୍ଧୀୟ ନିୟମ ଗୁଡ଼ିକୁ ପାଳନ କରି କୁକର୍ମ ପରିହାର କରିବା ପାଇଁ ସଚେଷ୍ଟ ହୁଅନ୍ତି । 'ଜ୍ଞାତାଧର୍ମକଥା' ନାମକ ଜୈନାଗମରେ ୩॥ କୋଟି କଥା ସଙ୍କଳିତ ହୋଇଥିଲା ବୋଲି କେତେକ ଐତିହାସିକ ମତବ୍ୟକ୍ତ କରନ୍ତି । କିନ୍ତୁ ଦୁର୍ଭାଗ୍ୟବଶତଃ ଅଧୁନା ଏହାର ମାତ୍ର ୧୯ ଗୋଟି ଅଧ୍ୟାୟ ଉପଲବ୍ଧ ହୋଇଛି । ଏଥିରେ ଦ୍ରୌପଦୀ ପ୍ରଭୃତି ଐତିହାସିକ ବ୍ୟକ୍ତିମାନଙ୍କର କଥା ଅତି ସରଳ ଓ ପ୍ରାଞ୍ଜଳ ଭାଷାରେ ବର୍ଣ୍ଣିତ ହୋଇଛି । ଜୈନଧର୍ମର ଧାର୍ମିକ ଆଚାର ଏବଂ ବ୍ୟବହାର ଅନୁଗାମୀ ଦଶ ଜଣ ସନ୍ନ୍ୟାସୀଙ୍କର କଥା 'ଉପାସକଦଶ ସୂତ୍ର'ରେ ବିବୃତ । ଜୈନ ମୁନିମାନଙ୍କର 'ଅନୁତ୍ତରୋପପାତିକ ଦଶା', 'ଅନ୍ତଃକୃତ ଦଶା', ମୂଳାଚାର' ଆଦି କେତେକ ଗ୍ରନ୍ଥରେ ଏହିଭଳି ଅନେକ କଥା ଅତି ସୁନ୍ଦର ଭାବରେ ବର୍ଣ୍ଣିତ । 'ବିପାକ ସୂତ୍ର'ରେ ସତ୍କର୍ମ ଓ ଦୁଷ୍କର୍ମକାରୀମାନଙ୍କର ଦୃଷ୍ଟାନ୍ତ ମିଳେ । ପ୍ରାଚୀନ—ଜୈନାଗାମ ସାହିତ୍ୟର କଥା ଗୁଡ଼ିକରୁ ସମସାମୟିକ ସାମାଜିକ ଜୀବନ, ସଂସ୍କୃତି, ଇତିହାସ, ଭାଷା ଓ ଶୈଳୀର ବିକାଶ ଆଦି ବିବିଧ ବିଷୟରେ ଏକ ସମ୍ୟକ ଧାରଣା ମିଳେ ।

ମୂଳ ଆଗମ ପରବର୍ତ୍ତୀ କଥା ସାହିତ୍ୟର ବିକାଶ ଉକ୍ତ ଆଗମ ମାନଙ୍କ ଉପରେ ରଚିତ 'ନିର୍ଯ୍ୟୁକ୍ତି', 'ଭାଷ୍ୟ' 'ଚୂର୍ଣ୍ଣି' ଏବଂ 'ବୃତ୍ତି' ମାନଙ୍କରେ ବିସ୍ତୃତ ଭାବରେ ଦେଖାଯାଏ ।

ଏ ସମ୍ବନ୍ଧରେ ଅଧ୍ୟାପକ ଉପାଧ୍ୟାୟଙ୍କ ଦ୍ୱାରା ସମ୍ପାଦିତ 'ବୃହତ୍-କଥାକୋଷ'ର ପ୍ରସ୍ତାବନାରେ ବିଶେଷ ଭାବରେ ଆଲୋଚିତ ହୋଇଛି । 'ନିର୍ଯ୍ୟୁକ୍ତି', 'ଚୂର୍ଣ୍ଣି' ଏବଂ 'ଭାଷ୍ୟ' ଆଦି ପ୍ରାଚୀନ ଟୀକାମାନଙ୍କର ରଚନାକାଳ ପଞ୍ଚମଠାରୁ ନବମ ଖ୍ରୀଷ୍ଟାବ୍ଦ ମଧ୍ୟରେ । ଏହି ସମୟର ସ୍ୱତନ୍ତ୍ର କଥାଗ୍ରନ୍ଥ କ୍ୱଚିତ ଥାଇପାରେ । ହେଲେହେଁ ଏ ସମୟରେ କେତେକ ଗ୍ରନ୍ଥ ରଚିତ ହୋଇଥିବା ସମ୍ଭବ । କାରଣ ଏଗୁଡ଼ିକର କେତେକ ଉଲ୍ଲେଖ ପରବର୍ତ୍ତୀ କଥାଗ୍ରନ୍ଥ ମାନଙ୍କରେ ରହିଛି । କିନ୍ତୁ ଆଜି ଯାଏ ସେ ସବୁର ସନ୍ଧାନ ମିଳିନାହିଁ ।

ଜୈନ ବିଦ୍ୱାନ୍‌ମାନେ ଲୋକରୁଚି ପ୍ରତି ଅଧିକ ଧ୍ୟାନ ରଖି ସମସ୍ତ ସମୟରେ ଜନ ସାଧାରଣଙ୍କ ମଧ୍ୟରେ ପ୍ରଚଳିତ କେତେକ ପ୍ରସିଦ୍ଧ କାହାଣୀ ଗୁଡ଼ିକ ଉପରେ ମଧ୍ୟ ବହୁ ଗ୍ରନ୍ଥ ରଚନା କରିଯାଇଛନ୍ତି । ଯେଉଁ ସମୟରେ ରାମାୟଣ ଏବଂ ମହାଭାରତର କଥାମାନ ଜନ ସାଧାରଣଙ୍କ ମଧ୍ୟରେ ଏକ ନବୀନ ଉତ୍ସାହ ଏବଂ ଅଭିରୁଚି ଉତ୍ପନ୍ନ କରିଥିଲା, ଠିକ୍ ସେହି ସମୟରେ ଜୈନ ବିଦ୍ୱାନ ମାନଙ୍କ ରଚିତ, ଯଥା : ଧର୍ମଦାସଙ୍କ 'ବସୁଦେବ ହିଣ୍ଡୀ', ବିମଳ ସୂରିଙ୍କ 'ପଉମ ଚରିୟଂ', ଜିନସେନ ସୂରିଙ୍କ 'ହରିବଂଶ ପୁରାଣ' ପ୍ରଭୃତି ମୌଳିକ-ଗ୍ରନ୍ଥମାନ ପ୍ରଣୀତ ହୋଇଥିଲା । ଏହାପରେ ପଣ୍ଡିତ ପାଦଲିପ୍ତ ସୂରି 'ତରଙ୍ଗବତୀ' ନାମକ ଏକ ସରସ କଥା ରଚନା କରିଥିବା ଜଣାଯାଏ । ଏହାର ମୂଳଗ୍ରନ୍ଥ ବର୍ତ୍ତମାନ ନମିଳିଲେହେଁ ତାହାର ସଂକ୍ଷିପ୍ତ ସାର ଆମକୁ ସେହି ସରସ କଥାର ରସାସ୍ୱାଦନ କରାଉଛି । 'ଧର୍ମିଲହିଣ୍ଡୀ' ମଧ୍ୟ ଅନ୍ୟ ଏକ ରସାଳ ଗ୍ରନ୍ଥ ।

ଦିଗମ୍ବର ସମ୍ପ୍ରଦାୟର ପଣ୍ଡିତ ହରିଷେଣ ୧୨,୭୦୦ ଶ୍ଳୋକ ସମ୍ବଳିତ ଏକ 'ଆରାଧନା କଥା କୋଷ' ରଚନା କରିଛନ୍ତି । ଏତଦ୍‌ବ୍ୟତୀତ ଦିଗମ୍ବର ସମ୍ପ୍ରଦାୟର 'ଆରାଧନା କଥାକୋଷ' ନାମକ ଦୁଇଟି ସଂସ୍କୃତ କଥାଗ୍ରନ୍ଥ ଗଦ୍ୟ ଓ ପଦ୍ୟାକାରରେ 'ଆଚାର୍ଯ୍ୟ ପ୍ରଭାଚନ୍ଦ୍ର' ଏବଂ 'ଆଚାର୍ଯ୍ୟ ନେମିଦତ୍ତ'ଙ୍କ ଦ୍ୱାରା ପ୍ରଣୀତ ହୋଇଛି । ଏହି କଥା-ଗୁଡ଼ିକ ମଧ୍ୟ ରୁଚି ଓ ସରସତାରେ ପରିପୂର୍ଣ୍ଣ । ଅଷ୍ଟମ ଖ୍ରୀଷ୍ଟାବ୍ଦରେ ହରିଭଦ୍ର ସୂରିଙ୍କ ରଚିତ ପ୍ରସିଦ୍ଧ 'ସମରାଇଚ୍ଚ' କାହାଣୀ ପରବର୍ତ୍ତୀ ଗ୍ରନ୍ଥକାରମାନଙ୍କ ଦ୍ୱାରା ଉଲ୍ଲିଖିତ ହୋଇଛି । ଦିଗମ୍ବରାଚାର୍ଯ୍ୟ 'ଜିନ ସେନ' ହରିବଂଶ ପୁରାଣ ରଚନା କରିଛନ୍ତି । ଏହିପରି ପଦ୍ମପୁରାଣ', 'ଭବିଷ୍ୟଦତ୍ତ କଥା' ଆଦି ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥମାନ ରବିଷେଣ ଏବଂ ଧନପାଳଙ୍କ ଦ୍ୱାରା ରଚିତ ହୋଇଛି । ଏହି କଥାଗ୍ରନ୍ଥ ଗୁଡ଼ିକ ଜୈନ କଥା ସାହିତ୍ୟରେ ଏକ ନବୀନ ଶୈଳୀର ଆଦର୍ଶ ଉପସ୍ଥାପନ କରିଛନ୍ତି । 'ଭବିଷ୍ୟଦତ୍ତ କଥା' କେବଳ ଭାରତୀୟ ସାହିତ୍ୟ ନୁହେଁ, ବିଶ୍ୱ ସାହିତ୍ୟର ମଧ୍ୟ ଏକ ଅମର କୃତି । ଏହି ଗ୍ରନ୍ଥର ଗମ୍ଭୀର ଅଧ୍ୟାତ୍ମବାଦ ଏବଂ ମନୋ-ବୈଜ୍ଞାନିକଭାବମାନଙ୍କର ବିଶ୍ଳେଷଣ ଓ ବର୍ଣ୍ଣନା ଉଲ୍ଲେଖଯୋଗ୍ୟ । ଦଶମ ଶତାବ୍ଦୀ ଯାଏ ମୌଳିକ କଥା ସଂଗ୍ରହ ଗ୍ରନ୍ଥ ବ୍ୟତୀତ ଗୋଟିଏ ଗୋଟିଏ କଥା ଉପରେ ଅସଂଖ୍ୟ ସ୍ୱତନ୍ତ୍ର କାବ୍ୟ ମଧ୍ୟ ରଚିତ ହୋଇଥିଲା । ତତ୍ପରେ ଜୈନ ତୀର୍ଥଙ୍କର ଏବଂ ଶଳାକା-ପୁରୁଷଙ୍କର ଚରିତ ସମ୍ବନ୍ଧରେ ମଧ୍ୟ ବହୁ କଥାଗ୍ରନ୍ଥ ସଙ୍କଳିତ ହୋଇଥିଲା ।

'ଲଘୁ ପ୍ରବନ୍ଧ ସଂଗ୍ରହ' ନାମକ ଏକ ପ୍ରବନ୍ଧଗ୍ରନ୍ଥ ଜେ.ପି.ଥାକେର୍‌ଙ୍କ ସମ୍ପାଦନାରେ ବରୋଦାର M S.University ଦ୍ୱାରା ପ୍ରକାଶିତ ହୋଇଛି । ଏହି ଗ୍ରନ୍ଥଟି ଉତ୍ତର ଗୁଜରାଟର ଜଣେ ଜୈନ ବିଦ୍ୱାନଙ୍କ ଦ୍ୱାରା ୧୪୭୩ ରୁ ୧୩୦୦ ଖ୍ରୀ:ଅ. ମଧ୍ୟରେ ରଚିତ ହୋଇଥିଲା ଅବଶ୍ୟ ତାହା ପୂର୍ବରୁ ୧୩୪୪ ଖ୍ରୀ.ଅ ରେ ଜିନଭଦ୍ରଙ୍କ ଦ୍ୱାରା 'ପ୍ରବନ୍ଧାବଳୀ ନାମକ ଏକ ଗ୍ରନ୍ଥ ଲିଖିତ ହୋଇଥିଲା । ତାହା ଏକ ଅପ୍ରକାଶିତ ଗ୍ରନ୍ଥ । ୧୯୩୬ ଖ୍ରୀ.ଅ ରେ ମୁନି ଜିନ ବିଜୟଙ୍କ ଗ୍ରନ୍ଥ 'ପୁରାତନ ପ୍ରବନ୍ଧ ସଂଗ୍ରହ'ରେ ଜିନଭଦ୍ରଙ୍କ ରଚିତ ପ୍ରବନ୍ଧାବଳୀ ପ୍ରକାଶିତ ହୋଇଛି ।

'ଲଘୁ-ପ୍ରବନ୍ଧ-ସଂଗ୍ରହ' ଦଶଟି କ୍ଷୁଦ୍ର ଗଳ୍ପର ଏକ ସଙ୍କଳନ । ଏହି ଗଳ୍ପଗୁଡ଼ିକ କେତେକ ଐତିହାସିକ ଚରିତ୍ର ଓ ଘଟଣାବଳୀ ଉପରେ ଆଧାରିତ । ପ୍ରଥମ କାହାଣୀଟି ହେଲା 'ଜଗଦେବ-ପ୍ରବନ୍ଧ' । ଏଥିରେ ରାଜା ପରମାର୍ଦ୍ଦିନ୍‌ଙ୍କ ରାଜ୍ୟ କଳ୍ୟାଣର ଏକ ଉପାନ୍ତ ନଗରକୁ କିପରି ଉଜ୍ଜୟିନୀର ରାଜା ଜଗଦେବ ପରମାର ଆତ୍ମରକ୍ଷା ଉଦ୍ଦେଶ୍ୟରେ ପଳାୟନ କରିଥିଲେ ଏବଂ ଗୁଜରାଟର ସିଦ୍ଧରାଜ ଜୟସିଂହ ଏବଂ ମାଳବର ଧର୍ମ୍ମିରଙ୍କ ମଧ୍ୟରେ କିପରି ସନ୍ଧି ସ୍ଥାପନ କରାଇଥିଲେ ତାହାର ବର୍ଣ୍ଣନା ରହିଛି ।

ଦ୍ୱିତୀୟଟି ହେଲା 'ମଦନବ୍ରହ୍ମ ମହାରାଜ ପ୍ରବନ୍ଧ' । ସେଥିରେ କାନ୍ତୀର ରାଜା ମଦନ ବ୍ରହ୍ମଙ୍କ ସମ୍ପର୍କରେ ଏକ ମନୋରମ ଆଖ୍ୟାନଟିଏ ବର୍ଣ୍ଣିତ ହୋଇଛି । କାନ୍ତୀର ରାଜା ମଦନବ୍ରହ୍ମ ମହୋବା (ବୁନ୍ଦେଲଖଣ୍ଡ) ର ବୁନ୍ଦେଲ ରାଜା ମଦନବର୍ମନ୍‌ଙ୍କ ସହ ଚର୍ଚ୍ଚିତ ହୋଇଛନ୍ତି । ତାଙ୍କର ୫୦୦ ରାଣୀ ଏବଂ ୧୦୦୦ ରକ୍ଷିତା ସ୍ତ୍ରୀ ଥିଲେ । ତାଙ୍କ ରାଜନଗର ମଧ୍ୟରେ ପାର୍ଶ୍ୱନାଥଙ୍କ ଏକ ମନ୍ଦିର ଅବସ୍ଥିତ ଥିଲା । ଏହି ନାରୀକୁଞ୍ଜର ରାଜା ପ୍ରାସାଦ ବାହାରକୁ ବର୍ଷରେ ମାତ୍ର ଦୁଇଥର ଆସୁଥିଲେ । ଯେତେବେଳେ ଗୁଜରାଟର ରାଜା ଜୟସିଂହ ତାଙ୍କ ରାଜ୍ୟ ଆକ୍ରମଣ କଲେ ସେତେବେଳେ ମଦନବର୍ମନ୍ ୭୦୦ ସୁନ୍ଦରୀ ନାରୀଙ୍କ ମେଳରେ ଆଠଦିନ ପରେ ଯୁଦ୍ଧଭୂମିକୁ ଯାତ୍ରା କରିଥିଲେ । କିନ୍ତୁ ସେ ଜୟସିଂହଙ୍କ ଆକ୍ରମଣର ପ୍ରତିରୋଧ ନକରିପାରି ଯୁଦ୍ଧକ୍ଷେତ୍ରରୁ ପିଠିଦୁଆ ଦେଇଥିଲେ । ଜୟସିଂହ ତାଙ୍କର ପଶ୍ଚାଦ୍ଧାବନ କରି ରାଜ ପ୍ରାସାଦରେ ପ୍ରବେଶ କଲେ । ମାଧବବର୍ମାଙ୍କ ଐଶ୍ୱର୍ଯ୍ୟ ଓ ବିଭବ ତଥା ତାଙ୍କ ରାଜପ୍ରାସାଦର ଚାକଚକ୍ୟ ଦେଖି ଜୟସିଂହ ସ୍ତମ୍ଭିତ ହୋଇପଡ଼ିଲେ । ମାଧବବର୍ମା ଜୟସିଂହଙ୍କୁ ନଗରର ଆତିଥ୍ୟ ଗ୍ରହଣ କରିବାକୁ ଅନୁରୋଧ କରିଥିଲେ । ଆନନ୍ଦ ଉପଭୋଗ କରିବା ନିମନ୍ତେ ସେ ଜୟସିଂହଙ୍କୁ ଆଠଜଣ ସୁନ୍ଦରୀ ତରୁଣୀ ଅର୍ପଣ କରିଥିଲେ ।

ତୃତୀୟଟି ହେଲା 'ବିକ୍ରମାଦିତ୍ୟ ପଞ୍ଚଦଣ୍ଡ-ଛତ୍ର ପ୍ରବନ୍ଧ' । ଏଥିରେ ଉଜ୍ଜୟିନୀର ରାଜା ବିକ୍ରମାଦିତ୍ୟ କିପରି ନିଜର ପାଞ୍ଚଟି ଉଲ୍ଲେଖନୀୟ କୃତିତ୍ୱ ଯୋଗୁଁ ପାଞ୍ଚଟି ଦଣ୍ଡ ବିଶିଷ୍ଟ ରାଜଛତ୍ର ଲାଭ କରିଥିଲେ ତାହା ବିବୃତ ହୋଇଛି ।

ଚତୁର୍ଥଟି ହେଲା—ସହସ୍ର ଲିଙ୍ଗ: ସର: ପ୍ରବନ୍ଧ । ଏଥିରେ ବର୍ଣ୍ଣିତ କଥାଟି ହେଲା— ଏକଦା ପାଟଣରେ ରାଜା ସିଦ୍ଧରାଜ ଜୟସିଂହଙ୍କ ରାଜସଭାରେ ଜଣେ ଋଷି ଏକ ଗଳ୍ପ

ଶୁଣାଇଥିଲେ । ଗଳ୍ପଟି ହେଲା – ଥରେ ସ୍ତମ୍ଭତୀର୍ଥପୁରର ଏକ ଚଣ୍ଡାଳ କନ୍ୟା ଗୋଟିଏ ଗଭୀର କୂପରୁ ଜଳ ଉତ୍ତୋଳନ କରି ଏକ ତୃଷାର୍ତ୍ତ ବାଛୁରୀକୁ ପାନ କରାଇଥିଲେ । ଏହି ସତ୍ କର୍ମ ଯୋଗୁଁ ଚଣ୍ଡାଳ କନ୍ୟା ପରଜନ୍ମରେ କନୌଜର ରାଜକୁମାରୀ ରୂପେ ଜନ୍ମଲାଭ କଲେ ଏବଂ ଯୋଗକୁ ସେହି ସ୍ତମ୍ଭତୀର୍ଥପୁରର ଜମିଦାରଙ୍କୁ ବିବାହ କଲେ । ସ୍ତମ୍ଭତୀର୍ଥପୁରର ଅଳ୍ପ ପାଣି ଥିବା ସେହି କୂପକୁ ଦେଖିବା ମାତ୍ରେ ତାଙ୍କର ପୂର୍ବଜନ୍ମ କଥା ମନେପଡ଼ିଲା । ତତ୍‌କ୍ଷଣାତ୍ ସେଠାରେ ସେ ଏକ ହ୍ରଦ ଖନନ କରାଇଥିଲେ । ଋଷିଙ୍କ ନିକଟରୁ ଏହି କାହାଣୀଟି ଶୁଣି ରାଜ ସିଦ୍ଧରାଜ ଜୟସିଂହ ଅଭିଭୂତ ହୋଇଯାଇଥିଲେ । ସଙ୍ଗେ ସଙ୍ଗେ ରାଜା ସହସ୍ରଲିଙ୍ଗ ନାମକ ଏକ ହ୍ରଦ ଖୋଳାଇଥିଲେ । ପ୍ରକୃତ ସଂକୀର୍ତ୍ତନରେ ଏହି ହ୍ରଦ ସିଦ୍ଧ-ସରସ ନାମରେ ନାମିତ । କେବେ ସରସ୍ୱତୀ ପୁରାଣ ଏବଂ ମେରୁତୁଙ୍ଗାଚାର୍ଯ୍ୟଙ୍କ ପ୍ରବନ୍ଧଚିନ୍ତାମଣି ଗ୍ରନ୍ଥରେ ଏହି ହ୍ରଦ ସହସ୍ରଲିଙ୍ଗ ନାମରେ ଅଭିହିତ ।

ପଞ୍ଚମଟି ହେଲା - ସିଦ୍ଧି ବୁଦ୍ଧି କୌଶଳ ପ୍ରବନ୍ଧ । ଏଥିରେ ଦୁଇଜଣ ସନ୍ନ୍ୟାସିନୀ ରାଜା ଜୟସିଂହଙ୍କ 'ସିଦ୍ଧ ଚକ୍ରବର୍ତ୍ତିନ୍' ଉପାଧିର ସମାଲୋଚନା କରିଥିବାର କାହାଣୀ ବର୍ଣ୍ଣିତ ।

ଷଷ୍ଠ ପ୍ରବନ୍ଧଟିର ନାମ ହେଲା —'ନାମଲ ମାଲିନୀ ପ୍ରବନ୍ଧ' । ଏଥିରେ ବର୍ଣ୍ଣିତ ଗଳ୍ପଟି ହେଲା --ଥରେ ଜୟସିଂହ ଦେଶୋଦ୍ଧର ପାର୍ଶ୍ୱନାଥଙ୍କୁ ପୂଜା କରିବା ନିମନ୍ତେ ଗଲାବେଳେ ସେଠାରେ ନାମାଲ ନାମ୍ନୀ ଜଣେ ରୂପବତୀ ନାରୀକୁ ଦେଖି ତାଙ୍କୁ ନିଜର ରାଣୀ କରିବାକୁ ଇଚ୍ଛା ପ୍ରକଟ କଲେ । କିନ୍ତୁ ନାମାଲ ଗୋଟିଏ ସର୍ତ୍ତରେ ତାଙ୍କର ରାଣୀ ହେବାକୁ ସମ୍ମତ ହେଲେ । ସର୍ତ୍ତଟି ହେଲା ତାଂକୁ କେହି କେବେ ଅସମ୍ମାନ ପ୍ରଦର୍ଶନ କରିବେ ନାହିଁ । ଏଥିରେ ରାଜା ଏକମତ ହୋଇ ତାଙ୍କୁ ନିଜର ରାଣୀ କଲେ । ଦିନେ ନାମାଲ ପାର୍ଶ୍ୱନାଥଙ୍କ ମନ୍ଦିରକୁ ଗଲାବେଳେ ଲୀଳୁ ନାମ୍ନୀ ଜଣେ ତୈଳିକ କନ୍ୟା ତାଙ୍କୁ ଦେଖି ପ୍ରଣାମ କଲେ ନାହିଁ । ତଦ୍ୱାରା ନାମାଲ ଅପମାନିତ ବୋଧକରି ରାଜାଙ୍କ ନିକଟରେ ଆପତ୍ତି ଜଣାଇଲେ । ତାପରେ ରାଜା ଓ ରାଣୀ ତୈଳିକ ଘରକୁ ଯାଇ ଅପମାନ ଦେବାର କାରଣ ଜିଜ୍ଞାସା କଲେ । ତୈଳିକ କନ୍ୟା ରାଣୀଙ୍କୁ ଚିହ୍ନିନପାରି ପ୍ରଣାମ କରିନଥିଲେ ବୋଲି କାରଣ ଦର୍ଶାଇଥିଲା ।

ସପ୍ତମ ପ୍ରବନ୍ଧଟି ହେଲା-ରାଣସ୍ତ-ମଣସ୍ତ-ଇନ୍ଦ୍ରଜାଲ ପ୍ରବନ୍ଧ । ଏହି ପ୍ରବନ୍ଧଟିରେ ସିଦ୍ଧରାଜ ଜୟସିଂହଙ୍କ ରାଜ ଦରବାରରେ ଶ୍ୱେତାମ୍ବର ଓ ଦିଗମ୍ବର ଜୈନ ସମ୍ପ୍ରଦାୟ ମଧ୍ୟରେ ଅନୁଷ୍ଠିତ ସୁବିତର୍କର ବିବରଣୀ ରହିଛି । ଗୁଜରାଟର ଶ୍ୱେତାମ୍ବରପନ୍ଥୀ ବିଦ୍ୱାନ ଦେବସୂରି ଏବଂ କର୍ଣ୍ଣାଟକର ଦିଗମ୍ବର ଜୈନ ପଣ୍ଡିତ କୁମୁଦଚନ୍ଦ୍ରଙ୍କ ମଧ୍ୟରେ ଏହି ତର୍କ ବିତର୍କର ବିଷୟବସ୍ତୁ ଥିଲା, 'ନାରୀମାନେ ମୋକ୍ଷଲାଭ କରିବା ପାଇଁ ଯୋଗ୍ୟ କି' ? ନାରୀମାନେ ମୋକ୍ଷ ଲାଭ କରିପାରିବାକୁ ଯୋଗ୍ୟ ବୋଲି ଦେବସୂରି ପ୍ରତିପାଦନ କରିଥିଲେ । କିନ୍ତୁ କୁମୁଦଚନ୍ଦ୍ର ତାହାର ବିରୋଧରେ ଯୁକ୍ତି ବାଢ଼ିଥିଲେ । ଏ ବିଷୟରେ ସପକ୍ଷ ଓ

ବିପକ୍ଷରେ ଉଭୟଙ୍କ ମଧ୍ୟରେ ଷୋହଳ ଦିନ ଧରି ତର୍କ ବିତର୍କ ଚାଲିଲା । ଶେଷରେ ଦେବସୂରିଙ୍କ ହାତ କୁମୁଦଚନ୍ଦ୍ର ପରାଜୟ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ଏହି କୃତିତ୍ୱ ଯୋଗୁଁ ଦେବସୂରି 'ବାଦି-ବେତାଳ' ଉପାଧି ଲାଭ କରିଥିଲେ ।

ଏହି ପ୍ରବନ୍ଧର ଅନ୍ୟ ଏକ କାହାଣୀ ହେଲା— ଯଶୋଧର ନାମକ ରାଜ ପୁରୋହିତଙ୍କର ଖିମଧର ଓ ଦେବଧର ନାମକ ଦୁଇଟି ପୁତ୍ର ଥିଲେ । ଉଭୟେ କାମରୂପର ଗଜରାଜ ନାମକ ଜଣେ ଐନ୍ଦ୍ରଜାଳିକଙ୍କ ଠାରୁ କୁହୁକ ଏବଂ ନାଟକ ରଚନା ଓ ପରିବେଷଣ କଳା ଶିକ୍ଷା କରିଥିଲେ । ତା'ପରେ ଖିମଚନ୍ଦ୍ର ଓ ଦେବଧର ଯଥାକ୍ରମେ ଯାଦୁକର ଗଣପ୍ତ ଓ ମଣସ୍ତ ନାମରେ ଖ୍ୟାତ ହେଲେ । ଇନ୍ଦ୍ରଜାଲ ଶକ୍ତି ବଳରେ ସେମାନେ କୁଣ୍ଡଳଭାବରୁ ପ୍ରସ୍ତୁତ ଏକ ରଞ୍ଜକ ପଦାର୍ଥ ଲଲାଟରେ ଲେପନ ପୂର୍ବକ ଜୟସିଂହ ଓ ପରମାର୍ଦ୍ଦିଙ୍କ ମଧ୍ୟରେ ବରୁଣାସ ନଦୀ କୂଳରେ ଘଟିତ ଯୁଦ୍ଧରେ ଜୟସିଂହଙ୍କୁ ଜୟଯୁକ୍ତ କରାଇଥିଲେ ।

ଖିମଧର ଓ ଦେବଧର ଭ୍ରାତୃଦ୍ୱୟ ବିଭିନ୍ନ ସ୍ଥାନରେ ଯାଦୁବିଦ୍ୟା ପ୍ରଦର୍ଶନ କରୁଥିବା ନିଜ ବାସସ୍ଥାନରେ ଅଧିକାଂଶ ସମୟରେ ଅନୁପସ୍ଥିତ ରହୁଥିଲେ । ଏହାର ସୁଯୋଗ ନେଇ ସେମାନଙ୍କ ସମକକ୍ଷମାନେ ଭ୍ରାତୃଦ୍ୱୟଙ୍କର ଘରବାଡ଼ି ଏବଂ ଯଜମାନ ଅକ୍ତିଆର କଲେ । ଫଳରେ ଦୁଇଭାଇ ବନ୍ଧୁବାନ୍ଧବଙ୍କ ଅଗୋଚରରେ ନଗରରେ ଇତସ୍ତତଃ ବିଚରଣ କଲେ । ଏହି ସମୟରେ ଦେବଧର କୁମ୍ଭୀର ରୂପରେ ସହସ୍ରଲିଙ୍ଗ ହ୍ରଦରେ ପ୍ରବେଶ କରି ଆତଙ୍କ ସୃଷ୍ଟି କଲେ । ଫଳରେ ଭୟଭୀତ ହୋଇ ଲୋକମାନେ ସ୍ନାନାଦି ନିମନ୍ତେ ହ୍ରଦକୁ ଗଲେ ନାହିଁ । କୁମ୍ଭୀରକୁ ଧରିବା ପାଇଁ ପ୍ରମ୍ଭତୀର୍ଥ (ଆଧୁନିକ କେମ୍ବେ)ର ୭୦୦ ଧୀବରଙ୍କୁ ନିଯୁକ୍ତ କରାଗଲା । କିନ୍ତୁ ସେମାନେ କୃତକାର୍ଯ୍ୟ ହେଲେ ନାହିଁ । କୁମ୍ଭୀରକୁ ଧରିବା ପାଇଁ ରାଜା ପୁରସ୍କାର ଘୋଷଣା କଲେ । ତହୁଁ ଖିମଧର ବ୍ରାହ୍ମଣ ମର୍ଦ୍ଦିଷ୍ଟଙ୍କ ସାହାଯ୍ୟରେ ହ୍ରଦରୁ କୁମ୍ଭୀର ରୂପି ଦେବଧରକୁ ଟାଣି ବାହାର କଲେ । ତଦ୍ୱାରା ଲୋକେ ନିର୍ଭୟରେ ହ୍ରଦର ଜଳ ବ୍ୟବହାର କରିପାରିଲେ । ଶେଷରେ ରାଜକୃପାରୁ ଖିମଧର ଓ ଦେବଧର ନିଜର ପୈତୃକ ଘରବାଡି ଓ ଯଜମାନ ପୁନଃ ପ୍ରାପ୍ତକଲେ ।

ଅଷ୍ଟମ ପ୍ରବନ୍ଧର ନାମ ହେଲା— କୁମ୍ଭାଣ୍ଡରାଣୀ ପ୍ରବନ୍ଧ । ଏଥିରେ ବିବୃତ ଆଖ୍ୟାନଟି ହେଲା – କଡ଼ମାଙ୍କୋଡ଼ୀ ନବଗଢ ରାଜା ଥିଲେ କୁମାଣ୍ଡରାଣୀ । ଏକଦା ସେ ତୀର୍ଥଯାତ୍ରା କଲବେଳେ ବାଟରେ ବୃନ୍ଦସମା ଠାରେ ହ୍ରଦ ନିର୍ମାଣ କରାଯାଉଥିବା ଜଣେ ବଣିକ ଜିମା ୧୧ଟି ରତ୍ନ ରଖିଥିଲେ । ତୀର୍ଥଯାତ୍ରାରୁ ପ୍ରତ୍ୟାବର୍ତ୍ତନ କଲାପରେ ରତ୍ନ ଗୁଡିକ ଦେବାକୁ ବଣିକକୁ କହିଲେ । କିନ୍ତୁ ବଣିକ ରତ୍ନ ରଖିଥିବା ବିଷୟ ଆଦୌ ସ୍ୱୀକାର କଲେନାହିଁ । ଫଳରେ ବଣିକ ବିରୁଦ୍ଧରେ ରାଜା ଜୟସିଂହଙ୍କ ନିକଟରେ କୁମାଣ୍ଡ ରାଣୀ ଅଭିଯୋଗ କଲେ । ଜୟସିଂହ ବଣିକଙ୍କୁ ଏକ କଠୋର ପରୀକ୍ଷାର ସମ୍ମୁଖୀନ ହେବାକୁ ଆଦେଶ ଦେଲେ । ତଦନୁଯାୟୀ ବଣିକ କହିଲେ ଯେ 'ଯଦି ମୁଁ ରତ୍ନଗୁଡ଼ିକ ରଖିଥିବି

ତେବେ ଜଳ ହ୍ରଦରେ ଆବଦ୍ଧ ରହିବ ନାହିଁ' । ତତ୍‌କ୍ଷଣାତ୍ ହ୍ରଦର ବନ୍ଧ ଭାଙ୍ଗିଗଲା ଏବଂ ଜଳ ହ୍ରଦ ବାହାରକୁ ଉଚ୍ଛ୍ୱସିତ ଭାବେ ନିର୍ଗତ ହେଲା । କୁମାରୀରାଣୀ ସନ୍ନ୍ୟାସ ଗ୍ରହଣ କରି ମୃତ୍ୟୁ ପର୍ଯ୍ୟନ୍ତ ସେଠାରେ ତପସ୍ୟାରତ ହେଲେ ।

ଶ୍ରୀମାତା ପ୍ରବନ୍ଧ ନାମକ ନବମ ପ୍ରବନ୍ଧରେ ଗୌଡ଼ର ରାଜା ଲକ୍ଷ୍ମଣ ସେନ (ଖ୍ରୀ.ଅ. ୧୧୭୯-୧୨୦୫)ଙ୍କ ସମ୍ପର୍କରେ କାହାଣୀଟିଏ ବର୍ଣ୍ଣିତ । ଲକ୍ଷ୍ମଣ ସେନଙ୍କ ମନ୍ତ୍ରୀ ଉମାପତି ଶ୍ରୀଧର [ଉମାପତିଧର] ଜଣେ ଫଳିତ ଜ୍ୟୋତିଷବିତ୍ ଥିଲେ । ଏକଦା ସେ ଭବିଷ୍ୟତ ବାଣୀ କରିଥିଲେ ଯେ ରାଣୀଙ୍କ ଗର୍ଭରୁ ଜାତ ହେବାକୁ ଥିବା ପୁତ୍ର ୩୨ ବର୍ଷ ବୟସରେ ଏକ ମାତଙ୍ଗ କନ୍ୟାକୁ ପ୍ରେମ କରିବେ । ତେଣୁ ମନ୍ତ୍ରୀ ରାଜ ଦରବାରକୁ ଗଲେନାହିଁ । ତା'ପରେ ରାଣୀଙ୍କୁ ଏକ ଦୂରବର୍ତ୍ତୀ ଗ୍ରାମକୁ ପଠାଇ ଦିଆଗଲା । ସେଠାରେ ସେ ଏକ ପୁତ୍ର ସନ୍ତାନ ପ୍ରସବ କଲେ । ପୁତ୍ରର ନାମ ରଖାଗଲା ରତ୍ନପୁଞ୍ଜ । ମନ୍ତ୍ରୀଙ୍କ ଭବିଷ୍ୟତ ବାଣୀ ବିଷୟରେ ରତ୍ନପୁଞ୍ଜ ଯେତେବେଳେ ଜାଣିବାକୁ ପାଇଲେ ସେ ସନ୍ନ୍ୟାସ ଗ୍ରହଣ କରିବାକୁ ପ୍ରତିଜ୍ଞା ବଦ୍ଧ ହେଲେ । କିନ୍ତୁ ସଭାସଦ୍‌ଙ୍କ ବାଧ୍ୟବାଧକତାରେ ପିତାଙ୍କ ଅନ୍ତେ ସେ ସିଂହାସନ ଆରୋହଣ କଲେ । ତାଙ୍କୁ ୩୨ ବର୍ଷ ବୟସ ହେବା ମାତ୍ରେ ଭବିଷ୍ୟତବାଣୀ ଅନୁସାରେ ସତକୁ ସତ ରତ୍ନପୁଞ୍ଜ ଏକ ମାତଙ୍ଗ କନ୍ୟାର ପ୍ରେମ ପାଶରେ ଆବଦ୍ଧ ହେଲେ । ସେହି କନ୍ୟା ସହିତ ଆଲିଙ୍ଗନାବସ୍ଥାରେ ମନ୍ତ୍ରୀଙ୍କ ଗୁପ୍ତଚର ଦ୍ୱାରା ନିରୀକ୍ଷିତ ହେବାଦ୍ୱାରା ରତ୍ନପୁଞ୍ଜ ଲଜ୍ଜିତ ହୋଇ ଆତ୍ମହତ୍ୟା କରିବା ନିମନ୍ତେ ଉଦ୍ୟତ ହେଲେ । କିନ୍ତୁ ଠିକ୍ ସମୟରେ ମନ୍ତ୍ରୀ ଉମାପତି ଶ୍ରୀଧର ରତ୍ନପୁଞ୍ଜଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ ଆସନ୍ନ ମୃତ୍ୟୁମୁଖରୁ ରକ୍ଷାକଲେ ।

'ଗାଳଶ୍ରୀ ବର୍ଦ୍ଧମାନ ସୂରି ପ୍ରବନ୍ଧ' ଶୀର୍ଷକ ଦଶମ ତଥା ଶେଷ ପ୍ରବନ୍ଧରେ ବିବୃତ କାହାଣୀଟି ହେଲା—କାଶ୍ମୀରର କ୍ଷୁଦ୍ର ପ୍ରତିରୂପ ଭାବେ ପ୍ରସିଦ୍ଧ ସୌରାଷ୍ଟ୍ରର ବାମନ ସ୍ଥଳୀ [ଆଧୁନିକ ବନ୍ଥଳୀ]ରେ ରାଜା ବୃହସ୍ପତି ରାନାକଙ୍କ ରାଜତ୍ୱ କାଳରେ ବାସୁପୂଜ୍ୟ ଚରିତର ଖ୍ୟାତନାମା ପ୍ରଣେତା ବର୍ଦ୍ଧମାନ ସୂରି ବାସ କରୁଥିଲେ । ବାଗ୍‌ଦେବୀଙ୍କ ଆଜ୍ଞାରେ ଗୌଡ଼ ଦେଶରୁ ଆଗତ ଦେବ ମହାନନ୍ଦ ନାମକ ପ୍ରଖ୍ୟାତ ସ୍ୱପାତନ୍ତ୍ରବିତ୍‌ଙ୍କୁ ତର୍କରେ ପରାସ୍ତ କରିବା ନିମନ୍ତେ ବର୍ଦ୍ଧମାନ ସୂରି ତାଙ୍କର ଦୁଇଜଣ ଶିଷ୍ୟ, ବାଘଲୌ ଏବଂ ସିଂହଲୌଙ୍କୁ ଶ୍ରୀପତ୍ତନକୁ ପ୍ରେରଣ କରିଥିଲେ । ଦେବ ମହାନନ୍ଦ ତାଙ୍କ ପୋଡ଼ରେ ୮୪ଟି କଣ୍ଢେଇ ବାନ୍ଧିଥିଲେ । ତାହା ସମ୍ଭବତଃ ସେ ୮୪ ଜଣ ପ୍ରତିଦ୍ୱନ୍ଦ୍ୱୀଙ୍କୁ ତର୍କ ବିତର୍କରେ ପରାଜିତ କରିବାର ପ୍ରମାଣ ସିଦ୍ଧ କରୁଥିଲା । ଅଠରଦିନ କାଳ ତର୍କ ବିତର୍କ ଚାଲିବାପରେ ଦେବ ମହାନନ୍ଦ ପରାଜିତ ହୋଇ ଭଗ୍ନ ହୃଦୟରେ ମୃତ୍ୟୁବରଣ କଲେ । ସେ ଯେଉଁ ଧନ ସମ୍ପତ୍ତି ଛାଡ଼ିଗଲେ ତାହା ୨୦ଟି ଜୈନ ବିହାର ନିର୍ମାଣରେ ବିନିଯୁକ୍ତ ହୋଇଥିଲା ।

କଥିତ ଭାଷାରେ ରଚିତ ଏହି ଲଘୁ ପ୍ରବନ୍ଧ ସଂଗ୍ରହ ଗ୍ରନ୍ଥ ସମସାମୟିକ ଐତିହ ତଥା ସାମାଜିକ ଓ ସାଂସ୍କୃତିକ ପରମ୍ପରା ଉପରେ ଯଥେଷ୍ଟ ଆଲୋକପାତ କରୁଅଛି । ଭାଷାତତ୍ତ୍ୱ ଓ ଶବ୍ଦକୋଷ ଦୃଷ୍ଟିରୁ ଏହି ଗ୍ରନ୍ଥ ତାତ୍ପର୍ଯ୍ୟପୂର୍ଣ୍ଣ ।

ଜୈନ ସାହିତ୍ୟର କେତେକ ପ୍ରକରଣ ଗ୍ରନ୍ଥରେ ଧର୍ମୋପଦେଶର ଦୃଷ୍ଟାନ୍ତ ଏବଂ ମହାପୁରୁଷମାନଙ୍କର ଜୀବନୀ ପ୍ରଭୃତି ସନ୍ନିବେଶିତ ହୋଇଛି । ଏହିଗ୍ରନ୍ଥ ଗୁଡ଼ିକର ଟୀକାକାର 'ବାଲବବୋଧକାର' କେତେକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ କାହାଣୀ ନିଜର ଟୀକାମାନଙ୍କରେ ବିଶେଷ ଭାବେ ଲିପିବଦ୍ଧ କରିଛନ୍ତି । ଭରତେଶ୍ୱର 'ବାହୁବଳିବୃତ୍ତି', 'ଋଷିମଣ୍ଡଳବୃତ୍ତି' ପ୍ରଭୃତି ଏହାର ଜ୍ୱଳନ୍ତ ଉଦାହରଣ । ଏହି ମୌଳିକ ପ୍ରକରଣ ଗ୍ରନ୍ଥଗୁଡ଼ିକର କେତେକ ଅଧ୍ୟାୟରେ ପ୍ରସଙ୍ଗବଶତଃ ଅବାନ୍ତର କଥାମାନଙ୍କର ସଙ୍କଳନ ହୋଇଛି । କେତେକ ଗ୍ରନ୍ଥର ବିଷୟବସ୍ତୁ ଧର୍ମୋପଦେଶ ଏବଂ ସଦାଚାର ଉପରେ ଆଧାରିତ । ଏହାର ଉଦାହରଣ କାହାଣୀ ରୂପରେ ମଧ୍ୟ ପ୍ରକାଶିତ ହୋଇଛି । ବ୍ରତ କଥା, ଧାର୍ମିକ ଅନୁଷ୍ଠାନ—ଦାନ,ପୂଜା, ଶୀଳ ଇତ୍ୟାଦିର ମାହାତ୍ମ୍ୟ ସମ୍ବନ୍ଧରେ ଶହ ଶହ କଥାର ଉଲ୍ଲେଖ ରହିଛି । 'ବ୍ୟାଖ୍ୟାପ୍ରଜ୍ଞପ୍ତି'ରେ ଦାର୍ଶନିକ, ନୈତିକ, ରାଜନୈତିକ, ଭୌଗଳିକ, ଐତିହାସିକ, ସାମାଜିକ, ଆର୍ଥିକ ଆଦି ବିଭିନ୍ନ ସମସ୍ୟା ସମ୍ବନ୍ଧରେ ଆଲୋଚନା କରାଯାଇଛି । ତାଛଡ଼ା ମହାବୀର, ଗୋଶାଳ, ଜମାଲି ଆଦି ମହାନ ବ୍ୟକ୍ତିଙ୍କର ଜୀବନୀ ଏହି ବିଶାଳକାୟ ଆଗମ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ଏତଦ୍‌ବ୍ୟତୀତ ଜିନସେନଙ୍କ 'ହରିବଂଶ ପୁରାଣ' (ଖ୍ରୀ ଅ ୭୮୩), ଏବଂ ଗୁଣଭଦ୍ରଙ୍କ 'ଉତ୍ତର ପୁରାଣ' (ଖ୍ରୀ ଅ ନବମ ଶତାବ୍ଦୀ) ରେ ମହାବୀରଙ୍କ ଜୀବନୀ ସମ୍ବନ୍ଧରେ ଉଲ୍ଲେଖ କରାଯାଇଛି । ହେମଚନ୍ଦ୍ରଙ୍କ 'ତ୍ରିଷଷ୍ଟି ଶଳାକା ପୁରୁଷ ଚରିତ' (ଖ୍ରୀ. ଅ. ଦ୍ୱାଦଶ ଶତାବ୍ଦୀ)ରୁ ମହାବୀର ଏବଂ ତାଙ୍କ ସମସାମୟିକ ରାଜାମାନଙ୍କ ସମ୍ବନ୍ଧରେ ବହୁ ବିଷୟ ଜ୍ଞାତ ହୁଏ । ନେମିଚନ୍ଦ୍ରଙ୍କ 'ମହାବୀରଚରିୟଂ', ଗୁଣଚନ୍ଦ୍ରଗଣିଙ୍କ 'ମହାବୀର ଚରିୟଂ', ଅସଗ ଖ୍ରୀ ଅ ୯୮୮ ) ଙ୍କ ବର୍ଦ୍ଧମାନ ଚରିତ ଏବଂ ସକଲକୀର୍ତ୍ତି (ଖ୍ରୀ·ଅ ୧୪୬୪) ଙ୍କ 'ବର୍ଦ୍ଧମାନ ଚରିତ' ଆଦି ଜୀବନ ଚରିତ ଗ୍ରନ୍ଥମାନଙ୍କରେ ମହାବୀରଙ୍କ ଉପାଖ୍ୟାନ ବର୍ଣ୍ଣିତ । 'ଉପାସକ ଦଶା' ରେ ସନ୍ନିବିଷ୍ଟ ଦଶଗୋଟି ଅଧ୍ୟାୟରେ ମହାବୀରଙ୍କର ଦଶ ଜଣ ପ୍ରମୁଖ ଉପାସକ ତଥା ଶ୍ରାବକଙ୍କର କଥା ବିବୃତ । 'ଜ୍ଞାତା ଧର୍ମ କଥା' ଏକ ପ୍ରସିଦ୍ଧ କଥା ଗ୍ରନ୍ଥ । ଏଥିରେ ବିଭିନ୍ନ କାହାଣୀ ମାଧ୍ୟମରେ ନୀତିଶିକ୍ଷାମାନ ଦିଆଯାଇଛି । ଏହି ଗ୍ରନ୍ଥ ହିନ୍ଦୁମାନଙ୍କର ପୁରାଣ ଅଥବା ବୌଦ୍ଧମାନଙ୍କର ଜାତକ ଗଳ୍ପ ପରି ରଚିତ । 'ଜମ୍ବୁଦ୍ୱୀପ ପ୍ରଜ୍ଞପ୍ତି'ରେ ଆମର ମହାନ୍ ଦେଶ ଭାରତବର୍ଷ ତଥା ଏହାର ରାଜା ଭରତଙ୍କ ବିଜୟ-ଯାତ୍ରାର ଉଲ୍ଲେଖ ଅଛି । 'ଦଶ ବୈକାଳିକ' ରେ ଶ୍ରମଣର ସଂଯମ ଆଚରଣ ନିମିତ୍ତ ବିଭିନ୍ନ ବିଧିବିଧାନ କାହାଣୀ ମାଧ୍ୟମରେ ଉପଦିଷ୍ଟ । 'ଔପଦେଶିକ ପ୍ରକରଣ'ରେ ମୁଖ୍ୟତଃ ଉପଦେଶାତ୍ମକ ବିଷୟବସ୍ତୁ ସନ୍ନିବିଷ୍ଟ । ଏହି ପ୍ରକରଣରେ ଧର୍ମ ଦାସକୃତ 'ଉପଦେଶମାଳା', ଶାନ୍ତିସୂରିଙ୍କ 'ଧର୍ମରତ୍ନ ପ୍ରକରଣ', ଦେବେନ୍ଦ୍ରସୂରିଙ୍କ ପ୍ରଣୀତ 'ଶ୍ରାଦ୍ଧବିଧି ପ୍ରକରଣ', ହେମଚନ୍ଦ୍ରସୂରିଙ୍କ ରଚିତ 'ଭବଭାବନା' ବର୍ଦ୍ଧମାନ ସୂରି କୃତ 'ଧର୍ମୋପଦେଶମାଳା' ଆଦି

ସନ୍ନିବେଶିତ । ତତ୍ତ୍ୱଜ୍ଞାନ ତଥା ଭୂଗୋଳ ସମ୍ବନ୍ଧୀୟ ବିଷୟବସ୍ତୁ ଆଗମିକ ପ୍ରକରଣରେ ଉଲ୍ଲିଖିତ । ଶିବ ଶର୍ମାଙ୍କର 'କର୍ମ ପ୍ରକୃତି', ହରିଭଦ୍ରଙ୍କର 'ଯୋଗଶତକ', ଦେବେନ୍ଦ୍ରଙ୍କ 'କର୍ମଗ୍ରନ୍ଥପଞ୍ଚକ.' ଜିନଭଦ୍ରଙ୍କର 'ବିଶେଷଣ ବିଶେଷଣବତୀ', ଚନ୍ଦ୍ରର୍ଷିଙ୍କର 'ପଞ୍ଚସଂଗ୍ରହ' ଇତ୍ୟାଦି ଆଗମିକ ପ୍ରକରଣ ଗ୍ରନ୍ଥ ଉଲ୍ଲେଖଯୋଗ୍ୟ ।

ତ୍ରୟୋଦଶ ଶତାବ୍ଦୀ ବେଳକୁ ଜୈନ ସାହିତ୍ୟରେ କଥାଗ୍ରନ୍ଥମାନଙ୍କର ରଚନା ରାସ, ଚୌପଦୀ, ପ୍ରବନ୍ଧ ଆଦି ଅନେକ ନାମରେ ପ୍ରକାଶିତ ହେବାକୁ ଲାଗିଲା । ଏହାର କ୍ରମ ବିକାଶ ଷୋଡ଼ଶ ଶତାବ୍ଦୀ ବେଳକୁ ବହୁଳ ପ୍ରସାର ଲାଭକଲା । ସପ୍ତଦଶ ଶତାବ୍ଦୀରେ ଏହିପରି ଅଗଣିତ ଗ୍ରନ୍ଥ ସଙ୍କଳିତ ହେବାକୁ ଲାଗିଲା । ସେହି ସମସ୍ତରୁ ଏହି ରଚନାମାନ ଅଖଣ୍ଡ ଭାବରେ ଆଜି ସୁଦ୍ଧା ପ୍ରାପ୍ୟ ବିଦ୍ୟମାନ । ବହୁ ପ୍ରଚଳିତ ଆଖ୍ୟାନକୁ ଜୈନ ପରମ୍ପରାନୁସାରେ ରୂପାୟନ ପୂର୍ବକ ଜୈନ କଥାସାହିତ୍ୟର ଶ୍ରୀବୃଦ୍ଧି ସାଧନ ଜୈନ ବିଦ୍ୱାନ୍‌ମାନଙ୍କର ଏକ ବିଶେଷତ୍ୱ । ଏକ ସାମ୍ପ୍ରଦାୟିକ ସାହିତ୍ୟ ମନେକରି ବୌଦ୍ଧିକ ଗୋଷ୍ଠୀ ଜୈନ କଥା ସାହିତ୍ୟର ବିସ୍ତୃତ ବିମର୍ଶ କଲେନାହିଁ । ନଚେତ୍ ଏହି ମହାନ୍ ସାହିତ୍ୟର ମହତ୍ତ୍ୱ ବିଦ୍ୱଜ୍ଜନରୁ ଲୋକଲୋଚନକୁ ଆସି ପ୍ରସାର ଲାଭ କରିଥା'ନ୍ତା । ଏହା କେବଳ ଭାରତୀୟ ସାହିତ୍ୟ ନୁହେଁ, ପାଶ୍ଚାତ୍ୟ ସାହିତ୍ୟ କ୍ଷେତ୍ରରେ ମଧ୍ୟ ବିଶେଷ ଲୋକପ୍ରିୟ ହୋଇପାରନ୍ତା । ଆଧୁନିକ ଲୋକରୁଚି ଏବଂ ଶୈଳୀ ପ୍ରତି ଧ୍ୟାନ ରଖି ଏହି ଜୈନ କଥା ଗୁଡ଼ିକ ନୂତନ ଭାବ ଓ ଢାଞ୍ଚାରେ ଲେଖାଗଲେ ସେଗୁଡ଼ିକ ଯେ ଜନ ସମାଜରେ ଆଦୃତ ହେବ ସେଥିରେ ସନ୍ଦେହ ନାହିଁ । କେବଳ ସେତିକି ନୁହେଁ, ତଦ୍ୱାରା ମୁକ୍ତସ୍ୱାଦର ଯେଉଁ ଅଲୋପ୍ୟ ସ୍ତୂପ ପଡ଼ିବ ତାହା ଅନ୍ୟ କଥାସାହିତ୍ୟରେ ଦେଖିବାକୁ ବିରଳ ହେବ । ଅତଏବ ଅଧ୍ୟୟନଶୀଳ ବିଦ୍ୱାନ୍ ଏବଂ ନବୀନ କଥାକାରମାନେ ଏଥିପ୍ରତି ଅବହିତ ହେବା ବାଞ୍ଛନୀୟ ।

—o—

'ଆତ୍ମବତ୍ ସର୍ବଭୂତେଷୁ ସୁଖ, ଦୁଃଖ ପ୍ରିୟାପ୍ରିୟେ ।'

# ନବମ ଅଧ୍ୟାୟ

## ଜୈନ ପୁରାଣ

ହିନ୍ଦୁ ପୁରାଣମାନଙ୍କରେ ହିନ୍ଦୁ ଦେବ ଦେବୀଙ୍କ ଆଖ୍ୟାୟିକା, ମାହାତ୍ମ୍ୟ ଏବଂ ଆଚରିତ ଧର୍ମ ଆଦିର ବିଶଦ ଉଲ୍ଲେଖ ଥିବାପରି ଜୈନ ପୁରାଣମାନଙ୍କରେ ମଧ୍ୟ ୨୪ ତୀର୍ଥଙ୍କର, ୧୨ ଚକ୍ରବର୍ତ୍ତୀ, ୯ ବଳଦେବ, ୯ ନାରାୟଣ (ଅର୍ଦ୍ଧ ଚକ୍ରବର୍ତ୍ତୀ), ୯ ପ୍ରତି ନାରାୟଣ—ଏହିଭଳି ୬୩ ଜଣ ଶଳାକା ପୁରୁଷ ବା ମହାପୁରୁଷଙ୍କର ଆଖ୍ୟାୟିକା, ଆଚରିତ ଧର୍ମ ଏବଂ ବ୍ୟବସ୍ଥାଦିର ବିସ୍ତୃତ ବର୍ଣ୍ଣନା ରହିଛି । ସେମାନଙ୍କର ନାମ କ୍ରମରେ ପ୍ରଦତ୍ତ ହେଲା—

### ୨୪ ତୀଥଙ୍କର :

ଋଷଭ ଦେବ ବା ଆଦିନାଥ, ଅଜିତ ନାଥ, ସମ୍ଭବ ନାଥ, ଅଭିନନ୍ଦନ ନାଥ, ସୁମତି ନାଥ. ପଦ୍ମପ୍ରଭ, ସୁପାର୍ଶ୍ୱନାଥ, ଚନ୍ଦ୍ରପ୍ରଭ, ସୁବିଧିନାଥ, ଶୀତଳନାଥ, ଶ୍ରେୟାଂଶନାଥ' ବାସୁପୁଜ୍ୟ, ବିମଳନାଥ, ଅନନ୍ତନାଥ, ଧର୍ମନାଥ, ଶାନ୍ତିନାଥ, କୁନ୍ଥନାଥ, ଅରନାଥ,ମଲ୍ଲୀନାଥ, ମୁନିସୁବ୍ରତ, ନମିନାଥ, ନେମିନାଥ, ପାର୍ଶ୍ୱନାଥ ଓ ମହାବୀର ।

ଏସବୁ ତୀର୍ଥଙ୍କରମାନେ କ୍ଷତ୍ରିୟ ଥିଲେ । ମୁନି ସୁବ୍ରତ ଓ ନମିନାଥ ହରିବଂଶୋଦ୍ଭବ ଥିଲେ । ଅନ୍ୟ ସବୁ ତୀର୍ଥଙ୍କର ଥିଲେ ଇକ୍ଷ୍ୱାକୁ ବଂଶଜ । ଜଣେ ତୀର୍ଥଙ୍କରଙ୍କ ଠାରୁ ପରବର୍ତ୍ତୀ ତୀର୍ଥଙ୍କରଙ୍କର ସମୟ ବ୍ୟବଧାନ ମଧ୍ୟ ଗଣନା କରାଯାଇଛି । ପାର୍ଶ୍ୱନାଥଙ୍କ ପରବର୍ତ୍ତୀ ତୀର୍ଥଙ୍କର ଅରିଷ୍ଟନେମି ମହାବୀରଙ୍କ ନିର୍ବାଣର ୮୪୦୦୦ ବର୍ଷ ପୂର୍ବରୁ ମୃତ୍ୟୁବରଣ କରିଥିଲେ । ଅରିଷ୍ଟନେମିଙ୍କ ୫୦୦,୦୦୦ ବର୍ଷ ପୂର୍ବେ ନମିନାଥଙ୍କର ମୃତ୍ୟୁ ହୋଇଥିଲା । ନମିନାଥଙ୍କର ୧୧,୦୦,୦୦୦ ବର୍ଷ ପୂର୍ବରୁ ମୁନିସୁବ୍ରତଙ୍କର ଦେହାବସାନ ହୋଇଥିଲା । ମୁନିସୁବ୍ରତଙ୍କ ପୂର୍ବରୁ ଅନ୍ୟାନ୍ୟ ତୀର୍ଥଙ୍କରମାନଙ୍କ ମଧ୍ୟରେ ସମୟର ବ୍ୟବଧାନ ୬୫,୦୦,୦୦୦ ଏବଂ ୧୦, ୦୦୦,୦୦୦ ବର୍ଷ ମଧ୍ୟରେ ଥିଲା । ଏସବୁ ସମୟ ଗଣନାର ଅବଶ୍ୟ କୌଣସି ଐତିହାସିକ ଭିତ୍ତିଭୂମି ନାହିଁ । ତାହା କେବଳ ଜୈନମାନଙ୍କର ପାରମ୍ପରିକ ବିଶ୍ୱାସ ଉପରେ ଆଧାରିତ ।

### ୧୨ ଚକ୍ରବର୍ତ୍ତୀ

ଭରତ, ସଗର, ମଧବା (ମଘବାନ), ସନତ କୁମାର, ଶାନ୍ତିନାଥ, କୁନ୍ଥୁନାଥ, ଅରନାଥ, ସୁଭୌମ, ପଦ୍ମନାଭ, ହରିଷେଣ, ଜୟସେନ ଓ ବ୍ରହ୍ମଦତ୍ତ ।

### ୯ ବାସୁଦେବ (ନାରାୟଣ ବା ଅର୍ଦ୍ଧ ଚକ୍ରବର୍ତ୍ତୀ) :

ଅଚଳ, ବିଜୟ, ଭଦ୍ର, ସୁପ୍ରଭ, ସୁଦର୍ଶନ, ଆନନ୍ଦ, ନନ୍ଦନ, ପଦ୍ମ ଓ ରାମଚନ୍ଦ୍ର ।

### ୯ ବଳଦେବ :

ଵିଜୟ, ବିଜୟ, ଭଦ୍ର, ସୁପ୍ରଭ, ସୁଦର୍ଶନ, ଆନନ୍ଦ, ନନ୍ଦନ, ପଦ୍ମ ଓ ରାମ ।

### ୯ ପ୍ରତିବାସୁଦେବ ବା ପ୍ରତିନାରାୟଣ :

ଅଶ୍ୱଗ୍ରୀବ, ତାରକ, ମେରକ, ମଧୁ, ନିଶୁମ୍ଭ, ବଳି, ପ୍ରହ୍ଲାଦ, ରାବଣ ଓ ଜରାସନ୍ଧ ।

୨୪ ଜଣ ତୀର୍ଥଙ୍କର, ୧୨ ଜଣ ଚକ୍ରବର୍ତ୍ତୀ, ୯ଜଣ ବାସୁଦେବ, ୯ଜଣ ବଳଦେବ ଏବଂ ୯ ଜଣ ପ୍ରତିବାସୁଦେବ—ଏହି ୬୩ ଜଣ ଶଳାକା ପୁରୁଷ ବା ମହାପୁରୁଷଙ୍କୁ ଜୈନମାନେ ଉତ୍ତମପୁରୁଷ ଭାବେ ସ୍ୱୀକାର କରନ୍ତି । ଦ୍ୱାଦଶ ଖ୍ରୀଷ୍ଟାବ୍ଦରେ ହେମଚନ୍ଦ୍ରଙ୍କ ରଚିତ 'ତ୍ରିଷଷ୍ଟି ଶଳାକା ପୁରୁଷ ଚରିତ' ରୁ ଏହି ୬୩ ଜଣ ମହାପୁରୁଷଙ୍କର ଏକ ସଂକ୍ଷିପ୍ତ ବିବରଣୀ ମିଳେ । (୧) ।

କେତେକ ଜୈନ ପୁରାଣରେ ମହାବୀର ଓ ତାଙ୍କର ସମସାମୟିକ ରାଜାମାନଙ୍କ ସମ୍ପର୍କରେ ଉଲ୍ଲେଖ ରହିଛି । ଏହି ପୁରାଣଗୁଡ଼ିକର ରଚନା ପରବର୍ତ୍ତୀକାଳର । ତନ୍ମଧ୍ୟରେ ବିଭିନ୍ନ ବିଷୟ ଅତିରଞ୍ଜିତ ଭାବରେ ବର୍ଣ୍ଣିତ ହୋଇଥିବାରୁ ଐତିହାସିକ ଦୃଷ୍ଟିକୋଣରୁ ଜୈନ ପୁରାଣଗୁଡ଼ିକ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ । ମହାବୀରଙ୍କ ଜୀବନୀ ସମ୍ବନ୍ଧୀୟ ମୁଖ୍ୟ ପୁରାଣଗୁଡ଼ିକ ହେଲା ଜିନସେନଙ୍କ ହରିବଂଶ ପୁରାଣ (୭୮୩ ଖ୍ରୀ ଅ.) ଏବଂ ଗୁଣଭଦ୍ରଙ୍କ ଉତ୍ତର-ପୁରାଣ (ନବମ ଖ୍ରୀଷ୍ଟାବ୍ଦ) । କେତେକ ଜୈନ ପୁରାଣ ସଂସ୍କୃତ ରୂପରେ ଏବଂ ଅନ୍ୟ କେତେକ ସ୍ୱତନ୍ତ୍ର ଭାବେ ଭିନ୍ନ ଭିନ୍ନ ଭାଷାରେ ପ୍ରଣୀତ ହୋଇଛି । ତୀର୍ଥଙ୍କରମାନଙ୍କ ନାମାନୁଯାୟୀ ପୁରାଣଗୁଡ଼ିକରେ ମଧ୍ୟ ଶେଷ ଚକ୍ରବର୍ତ୍ତୀ, ବଳଦେବ, ନାରାୟଣ ଆଦି ଶଳାକାପୁରୁଷ-ମାନଙ୍କର ବିସ୍ତୃତ ବର୍ଣ୍ଣନା ମିଳେ । ସୁତରାଂ କେତେକ ପଣ୍ଡିତ ୨୪ଟି ପୁରାଣକୁ ହିଁ ପ୍ରଧାନ ବୋଲି ମନେକରନ୍ତି । ହିନ୍ଦୁମାନଙ୍କର ଚରାଚରିତ ଋଷଭ, ରାମ, କୃଷ୍ଣ ଆଦି ଅବତାର, ତଥା ଭରତ, ସଗର, ଚକ୍ରବର୍ତ୍ତୀ ଆଦିଙ୍କ ସମ୍ପର୍କରେ ମଧ୍ୟ ଯଥେଷ୍ଟ ସୂଚନା ମିଳେ ଜୈନ ପୁରାଣରେ । ଜୈନ ତୀର୍ଥଙ୍କରମାନଙ୍କ ମଧ୍ୟରେ ମହାବୀର ଓ ତାଙ୍କର ୨୫୦ ବର୍ଷ ପୂର୍ବରୁ ଅବତାର ଗ୍ରହଣ କରିଥିବା ପାର୍ଶ୍ୱନାଥ (୨), ଉଭୟେ ଐତିହାସିକ ବ୍ୟକ୍ତି ଏବଂ ସେମାନଙ୍କ ପୂର୍ବବର୍ତ୍ତୀ ୨୨ ଜଣ ତୀର୍ଥଙ୍କର ପୌରାଣିକ ବ୍ୟକ୍ତି ରୂପେ ବିବେଚିତ ହୁଅନ୍ତି ।

ଭଗବଜ୍ଜିନସେନ ପୁରାତନକୁ ହିଁ ପୁରାଣ ବୋଲି ସ୍ୱୀକାର କରିଛନ୍ତି—"ପୁରାତନଂ ପୁରାଣଂ ସ୍ୟାତ୍ତନ୍ମହନ୍ମହଦାଶ୍ରୟାତ୍" । ହିନ୍ଦୁମାନେ ବ୍ରହ୍ମା ଅଥବା ନାରାୟଣଙ୍କ ଠାରୁ ଆଦି ପୁରାଣର ଉତ୍ପତ୍ତି ନିରୂପଣ କଲାବେଳେ ଜୈନମାନେ ତୀର୍ଥଙ୍କରମାନଙ୍କ ଠାରୁ ଜୈନ ପୁରାଣର ଉତ୍ପତ୍ତି ବୋଲି ମତବ୍ୟକ୍ତ କରନ୍ତି । ରବିଷେଣଙ୍କ ରଚିତ ପଦ୍ମପୁରାଣରେ ଲେଖା-ଅଛି ସର୍ବ ପ୍ରଥମେ ମହାବୀର ନିଜର ଗଣଧର ଇନ୍ଦ୍ରଭୂତିଙ୍କୁ ଏହି ପୁରାଣ ପଢ଼ି ଶୁଣାଇଥିଲେ । ତା'ପରେ ଇନ୍ଦ୍ରଭୂତିଙ୍କଠାରୁ ସୁଧର୍ମା, ସୁଧର୍ମାଙ୍କଠାରୁ ଜମ୍ବୁସ୍ୱାମୀ, ଜମ୍ବୁସ୍ୱାମୀଙ୍କ ଠାରୁ ପ୍ରଭବ,

ପ୍ରଭବଙ୍କଠାରୁ କୀର୍ତ୍ତି ଏବଂ କୀର୍ତ୍ତିଙ୍କଠାରୁ ଅନୁତ୍ତରବାଗ୍ମୀ ଏହି ପୁରାଣ ଲାଭ କରିଥିଲେ । ଅନୁତ୍ତରବାଗ୍ମୀଙ୍କ ଠାରୁ ପ୍ରାପ୍ତ ଗ୍ରନ୍ଥର ସାହାଯ୍ୟରେ ହିଁ ରବିଷେଣ ପଦ୍ମପୁରାଣ ରଚନା କରିଥିଲେ । ଏହିଭଳି ଜୈନ ପୁରାଣକାରମାନେ ପୁରାଣର ପ୍ରାଚୀନତା ସଂସ୍ଥାପନ ଉଦ୍ଦେଶ୍ୟରେ ମହାବୀରଙ୍କୁ ଏହାର ସ୍ରଷ୍ଟା ବୋଲି ଅଭିହିତ କରିଛନ୍ତି । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ହିନ୍ଦୁ ସମାଜ ପରି ଜୈନ ସମାଜରେ ମଧ୍ୟ ଅତି ପ୍ରାଚୀନକାଳରୁ ପୁରାଣାଖ୍ୟାନ ପ୍ରଚଳିତ ଥିଲା । ଅଶଗ, ଅଗ୍ଗଲ, ଆଚଣ୍ଣ, କର୍ଣ୍ଣପାର୍ଯ୍ୟ, କମଲ ଭବ, କୃଷ୍ଣ ଦାସ, କେଶବ ସେନ, ଗୁଣଭଦ୍ର, ଗୁଣବର୍ମା, ଚନ୍ଦ୍ରକୀର୍ତ୍ତି, ଚନ୍ଦ୍ରସାଗର, ଜନ୍ନ, ଜିନଦାସ [ଦ୍ୱିତୀୟ] ଜିନଦାସ, ଜିନେନ୍ଦ୍ରଭୂଷଣ, ଦାମୋଦର, ଦେବପ୍ରଭ, ଦୋଡ୍ଡୟ୍ୟ, ଦୋଡ୍ଡଣାଙ୍କ ଧର୍ମକୀର୍ତ୍ତି, ନରସେନ, ନାଗଦେବ, ନାଗଚନ୍ଦ୍ର, ନେମିଦତ୍ତ, ପମ୍ପ, ପୋନ୍ନ, ପୁଷ୍ପଦନ୍ତ, ପାର୍ଶ୍ୱପଣ୍ଡିତ, ମଲ୍ଲିଷେଣ, ଶ୍ରୀ ବିଜୟ, ସକଳକୀର୍ତ୍ତି, ସୁରେନ୍ଦ୍ରଭୂଷଣ, ସ୍ୱୟମ୍ଭୂ, ମହାବଲ, ମଙ୍ଗରସ, ମଧୁର, ଯଶକୀର୍ତ୍ତି, ରବିଷେଣ, ହସ୍ତିମଲ୍ଲ ଆଦି ବହୁ ମହାନ୍ ପଣ୍ଡିତମାନଙ୍କ ଦ୍ୱାରା ପ୍ରାକୃତ ଓ ସଂସ୍କୃତ ଭାଷାରେ ରଚିତ ପୁରାଣଗ୍ରନ୍ଥ ଗୁଡ଼ିକ ଏହାର ଜ୍ୱଳନ୍ତ ପ୍ରମାଣ ।

ଦିଗମ୍ବର ଜୈନ ସମ୍ପ୍ରଦାୟର ପୁରାଣଗୁଡ଼ିକ ମଧ୍ୟରେ ପଦ୍ମପୁରାଣ ଅଥବା ପଦ୍ମ ଚରିତ ସର୍ବ ପ୍ରାଚୀନ । ଏହାର ପୂର୍ବବର୍ତ୍ତୀ କୌଣସି କଥାଗ୍ରନ୍ଥ ଅଦ୍ୟାବଧି ପ୍ରକାଶିତ ହୋଇପାରିନାହିଁ । ଭାବନଗରର ଜୈନଧର୍ମ ପ୍ରସାରକ ସଭା ଆନୁକୂଲ୍ୟରେ ଯେଉଁ 'ପଉମ ଚରିୟ' ନାମକ ପ୍ରାକୃତ ଗ୍ରନ୍ଥ (୩) ପ୍ରକାଶ କରାଯାଇଛି ତାହା 'ପଦ୍ମପୁରାଣ' କିମ୍ବା 'ପଦ୍ମଚରିତ' ଠାରୁ ପ୍ରାଚୀନ ବୋଲି କେତେକ ମତବ୍ୟକ୍ତ କରିଥିଲେ ହେଁ, ଜୈନଧର୍ମର ଦୁଇଟି ସମ୍ପ୍ରଦାୟ (ଶ୍ୱେତାମ୍ବର ଓ ଦିଗମ୍ବର) ମଧ୍ୟରୁ କେଉଁ ସମ୍ପ୍ରଦାୟ ଭୁକ୍ତ ପଣ୍ଡିତ ଏହାକୁ ରଚନା କରିଥିଲେ ତାହା ଆଜି ସୁଦ୍ଧା ଅମୀମାଂସିତ । 'ପଦ୍ମଚରିତ' ମହାବୀରଙ୍କ ନିର୍ବାଣର ୧୨୦୩ ବର୍ଷ ପରେ ଅର୍ଥାତ୍ ୬୭୫ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିବା ଜଣାଯାଏ ।

"ଦ୍ୱିଶତାଭ୍ୟଧିକେ ସମାସହସ୍ରେ ସମତୀତେ
ଅର୍ଦ୍ଧ ଚତୁର୍ଥ ବର୍ଷ ଯୁକ୍ତେ
ଜିନ ଭାସ୍କର ବର୍ଦ୍ଧମାନସିଦ୍ଧେ ଚରିତଂ
ପଦ୍ମମୁନେରିଦଂ ନିବଦ୍ଧମ୍" ।

ଆଚାର୍ଯ୍ୟ ଜିନସେନ ୭୮୩ ଖ୍ରୀ:ଅ.ରେ ହରିବଂଶ ପୁରାଣ ସମ୍ପୂର୍ଣ୍ଣ କରିଥିଲେ । ପ୍ରଧାନତଃ ରବିଷେଣଙ୍କର ପଦ୍ମ ପୁରାଣ, ଭଗବଜ୍ଜିନସେନଙ୍କର ଆଦି ପୁରାଣ, ପୁନ୍ନାଟ ଜିନସେନଙ୍କର ହରିବଂଶ ବା ଅରିଷ୍ଟନେମି ପୁରାଣ, ଗୁଣଭଦ୍ରଙ୍କର ଉତ୍ତର ପୁରାଣ [ଖ୍ରୀ.ଅ.୯୦୦] ଏବଂ ଶୁଭଚନ୍ଦ୍ରଙ୍କର ପାଣ୍ଡବ ପୁରାଣ ଆଦି ପାଞ୍ଚଗୋଟି ପୁରାଣ ଅଧ୍ୟୟନ କଲେ ଦିଗାମ୍ବର ଜୈନ ସମ୍ପ୍ରଦାୟର ପୌରାଣିକ ତତ୍ତ୍ୱ ଉପଲବ୍ଧ ହୋଇପାରିବ ।

ଋଷଭନାଥଙ୍କ ଜୀବନୀ ପଠନ ପରେ ପରବର୍ତ୍ତୀ ୨୩ ଜଣ ତୀର୍ଥଙ୍କରମାନଙ୍କ ମାତା, ପିତା, ବଂଶ, ଜନ୍ମସ୍ଥାନ, ନାମ, ଶରୀରର ଉଚ୍ଚତା, ବର୍ଣ୍ଣ, ଆୟୁ, ଚିହ୍ନ, ଜନ୍ମାଦି ନକ୍ଷତ୍ର,

ଗଣଧର ସଂଖ୍ୟା, ଏବଂ ନିର୍ବାଣ ସ୍ଥାନ ଆଦି କେତେକ ବିଷୟ ଅନୁଧ୍ୟାନ କଲେ, ସେମାନଙ୍କ ଜୀବନୀ ଉପଲବ୍ଧ ହେବା ସହଜସାଧ୍ୟ ହୁଏ — ଯଥା — ତୀର୍ଥଙ୍କରଙ୍କ ଜୀବ ପୁଣ୍ୟ କର୍ମର ପରିପାକ ଦ୍ୱାରା ତୀର୍ଥଙ୍କର ନାମକ ଏକ ବିଶିଷ୍ଟ 'ନାମ କର୍ମକୁ' ଲାଭ କରି ସ୍ୱର୍ଗରେ ଜନ୍ମ ହୁଏ । ଏହି ଜୀବ ଯେଉଁ ମହାରାଣୀଙ୍କ ଗର୍ଭଗତ ହେବାକୁ ଯାଏ, ସେହି ରାଜ୍ୟରେ ଛଅ ମାସ ପୂର୍ବରୁ ଇନ୍ଦ୍ରଙ୍କ ଆଜ୍ଞାରେ କୁବେର ରତ୍ନ ବୃଷ୍ଟି କରାଇଥା'ନ୍ତି । ଛଅମାସ ପରେ ତୀର୍ଥଙ୍କରଙ୍କ ଭାବୀ ମାତାଙ୍କ ଗର୍ଭଶୋଧନାର୍ଥେ ଇନ୍ଦ୍ର ଶ୍ରୀ ଆଦି ଦେବୀମାନଙ୍କୁ ପ୍ରେରଣ କରନ୍ତି । ତୀର୍ଥଙ୍କରଙ୍କ ମାତା ଗଜ, ବୃଷଭ, ସିଂହ, ଦେବୀ ଶ୍ରୀ, ପୁଷ୍ପମାଳ, ଚନ୍ଦ୍ର, ସୂର୍ଯ୍ୟ, ଧ୍ୱଜ ଆଦି ଷୋଡ଼ଶ ଶୁଭସ୍ୱପ୍ନ ଦେଖନ୍ତି । ତାଙ୍କ ଗର୍ଭରେ ତୀର୍ଥଙ୍କରଙ୍କ ଅବତାର ହୁଏ । ଇନ୍ଦ୍ର ସମସ୍ତ ଦେବ ନିକାୟଙ୍କ ସହ ତୀର୍ଥଙ୍କରଙ୍କ ଅବତାର ଅଥବା ଗର୍ଭକଲ୍ୟାଣକୁ ସମାରୋହରେ ସମ୍ପନ୍ନ କରନ୍ତି । ୯ ମାସ ପରେ ତୀର୍ଥଙ୍କର ମତି, ଶ୍ରୁତି, ଅବଧି ନାମକ ତ୍ରିବିଧ ଜ୍ଞାନ ସହିତ ଜନ୍ମଗ୍ରହଣ କରନ୍ତି । ଇନ୍ଦ୍ର ଇନ୍ଦ୍ରାଣୀଙ୍କ ଦ୍ୱାରା ଏହି ଶିଶୁକୁ ମଗାଇ ଅନ୍ୟାନ୍ୟ ଇନ୍ଦ୍ର ଓ ସବୁ ଦେବନିକାୟଙ୍କ ଅତି ସମ୍ଭ୍ରମରେ ମେରୁ ଶିଖରରେ ଜନ୍ମ କଲ୍ୟାଣକୁ ପୂର୍ଣ୍ଣ କରନ୍ତି । ସେହି ଶିଶୁ (ବାଳକ ଯୌବନାବସ୍ଥା ଅତିକ୍ରମ କରି ବିରକ୍ତ ସହକାରେ ଗୃହତ୍ୟାଗ କରିବା ସମୟରେ ସେ ପୂର୍ବବତ୍ ଇନ୍ଦ୍ର ଉତ୍ସାହରେ ପରିନିଷ୍କ୍ରମଣ କଲ୍ୟାଣ ପୂର୍ଣ୍ଣ କରେ । ତୀର୍ଥଙ୍କର ଅଳ୍ପସମୟ ତପସ୍ୟା କରି 'ମନଃ ପର୍ଯ୍ୟାୟ' ନାମକ ଚତୁର୍ଥ ବିଶିଷ୍ଟ ଜ୍ଞାନ ଆହରଣ କରିଥା'ନ୍ତି । ତାଙ୍କର ପ୍ରଥମ ଆହାର ସମୟରେ ପଞ୍ଚାଶ୍ଚର୍ଯ୍ୟ ହୋଇଥାଏ । ତୀବ୍ର ତପସ୍ୟା ଦ୍ୱାରା କର୍ମଗୁଡ଼ିକୁ ଭସ୍ମ କରି ସେ କେବଳ ଜ୍ଞାନ ଅର୍ଥାତ୍ ସର୍ବଜ୍ଞାନ ପ୍ରାପ୍ତ ହୁଅନ୍ତି । ତୀର୍ଥଙ୍କର ଧର୍ମୋପଦେଶାର୍ଥେ ବିଚରଣ କରୁ କରୁ ପରିଶେଷରେ ମୁକ୍ତି ଲାଭ କରିବା ହେତୁ ଇନ୍ଦ୍ର ତାଙ୍କର ନିର୍ବାଣ କଲ୍ୟାଣକୁ ସାନନ୍ଦରେ ସମ୍ପନ୍ନ କରନ୍ତି ।

ଏହିଭଳି ଜୈନ ତୀର୍ଥଙ୍କରଙ୍କ ଚରିତ ପ୍ରାୟ ଏକପ୍ରକାର ହୋଇଥାଏ । ତଦୁପରି ଚକ୍ରବର୍ତ୍ତୀମାନଙ୍କ ଚରିତରେ ମଧ୍ୟ ସମତା ପରିଲକ୍ଷିତ ହୁଏ । ନାରାୟଣ, ବଳଦେବ ଓ ପ୍ରତି-ନାରାୟଣଙ୍କ ଜୀବନୀ ଚରିତ ମଧ୍ୟ ଭଳି ଏହି ହୋଇଥାଏ । ଜୈନ ପୁରାଣ ଗୁଡ଼ିକୁ କଥା ଓ ବର୍ଣ୍ଣନା ଭେଦରେ ଦୁଇଭାଗରେ ବିଭକ୍ତ କରାଯାଇପାରେ — କଥାରେ ତୀର୍ଥଙ୍କରମାନଙ୍କ ଜୀବାବଳୀ ପଞ୍ଚକଲ୍ୟାଣ ଓ ତତ୍କାଳୀନ ଚକ୍ରବର୍ତ୍ତୀ, ନାରାୟଣ ଆଦିଙ୍କ କଥା ସନ୍ନିବେଶିତ ହୋଇଥାଏ । ବର୍ଣ୍ଣନାରେ ପୁରାଣର ଅଷ୍ଟ ଅଙ୍ଗ ଏବଂ ଅଷ୍ଟାଦଶ ବର୍ଣ୍ଣନ, ଏ ଦୁଇଟି କେବଳ ଦର୍ଶାଯାଇଥାଏ । ପୁରାଣକାର ବର୍ଣ୍ଣନା ମାଧ୍ୟମରେ ନିଜର ସ୍ୱାତନ୍ତ୍ର୍ୟ ଯେପରି ଦର୍ଶାଇ ପାରନ୍ତି, କଥାରେ ସେପରି ହୋଇପାରେ ନାହିଁ । ସୁତରାଂ ଗ୍ରନ୍ଥ ବୃଦ୍ଧିରେ କେବଳ ବର୍ଣ୍ଣନାହିଁ ଅଧିକ ସହାୟକ ହୋଇଥାଏ ।

ତୀର୍ଥଙ୍କରମାନଙ୍କ ଆଦର୍ଶ ଚରିତ ଅବଗତ ନିମନ୍ତେ ସେମାନଙ୍କର ପୁରାଣ ହିଁ ଏକମାତ୍ର ଉପାଦାନ । ପୁରାଣରେ ପଞ୍ଚକଲ୍ୟାଣ ଓ ତୀର୍ଥଙ୍କରମାନଙ୍କ ବର୍ଣ୍ଣନା ପ୍ରାୟ ଏକ ପ୍ରକାର । ତୀର୍ଥଙ୍କରଙ୍କ ଆବିର୍ଭାବ ଠାରୁ ତିରୋଧାନ ପର୍ଯ୍ୟନ୍ତ ଅନୁଷ୍ଠିତ ପାଞ୍ଚଟି ଉତ୍ସବକୁ ପଞ୍ଚକଲ୍ୟାଣ କୁହାଯାଏ । ପଞ୍ଚକଲ୍ୟାଣହେଲା —ସ୍ୱର୍ଗାବତରଣ, ମନ୍ଦରାଭିଷେକ ଦୀକ୍ଷାକଲ୍ୟାଣ,

କେବଳୋତ୍ପତ୍ତି ଏବଂ ପରିନିର୍ବାଣ କଲ୍ୟାଣ । ଏହି ପଞ୍ଚ କଲ୍ୟାଣ ଉତ୍ସବଗୁଡ଼ିକରେ ଦେବଗଣ ସ୍ୱାଗତ ଦେଇଥା'ନ୍ତି । ତୀର୍ଥଙ୍କର ରୂପରେ ଆବିର୍ଭାବ ହେବାପାଇଁ ଦେବଗଣ ସ୍ୱର୍ଗରୁ ପୃଥିବୀ ପୃଷ୍ଠରେ ଅବତରଣ କଲାବେଳେ ସ୍ୱର୍ଗାବତରଣ ଉତ୍ସବ ଅନୁଷ୍ଠିତ ହୁଏ । ତୀର୍ଥଙ୍କର ଜନ୍ମଗ୍ରହଣ କଲାବେଳେ ମନ୍ଦରଗିରିର ଶୀର୍ଷଦେଶରେ ମହାଭିଷେକ ପାଳନ କରାଯାଏ । ତୀର୍ଥଙ୍କର ତପସ୍ୟା ଉଦ୍ଦେଶ୍ୟରେ ସାଂସାରିକ ବନ୍ଧନ ଛିନ୍ନ କଲାବେଳେ ଦୀକ୍ଷା କଲ୍ୟାଣ ଉତ୍ସବ ସମ୍ପାଦିତ ହୁଏ । ତପସ୍ୟାପରେ କର୍ମ ବନ୍ଧନରୁ ମୁକ୍ତ ହୋଇ ତୀର୍ଥଙ୍କର କେବଳ ଜ୍ଞାନ ପ୍ରାପ୍ତ ହେବା ସମୟରେ କେବଳୋତ୍ପତ୍ତି ଉତ୍ସବ ପାଳିତ ହୁଏ । ଶେଷରେ ତୀର୍ଥଙ୍କର ଯେତେବେଳେ ସମସ୍ତ କର୍ମର ବିନାଶ କରି ମୋକ୍ଷଲାଭ ଅଥବା ପରମାତ୍ମା ସ୍ୱରୂପକୁ ଉପଲବ୍ଧ କରନ୍ତି ସେତିକବେଳେ ପରିନିର୍ବାଣ କଲ୍ୟାଣ ପର୍ବ ସମ୍ପନ୍ନ ହୁଏ । (୪) । ପଞ୍ଚକଲ୍ୟାଣ ଓ ତୀର୍ଥଙ୍କର ମାନଙ୍କ ବର୍ଣ୍ଣନା ପ୍ରାୟ ଏକ ପ୍ରକାର ହେଲେ ମଧ୍ୟ ସେମାନଙ୍କ ପୂର୍ବଜନ୍ମର କଥାଗୁଡ଼ିକରେ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ବାସ୍ତବରେ ଏହି କଥାଗୁଡ଼ିକ ତୀର୍ଥଙ୍କରଙ୍କ ଜୀବନ ଚରିତ ନୁହେଁ, ବରଂ ତାହା ସର୍ବସାଧାରଣଙ୍କୁ ଜୈନଧର୍ମର ରହସ୍ୟ ଆସ୍ୱାଦନ କରାଉଥିବା ଗୋଟିଏ ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ । ଏହି ପୁରାଣ ଗୁଡ଼ିକର ସାରାଂଶ ନିମ୍ନରେ ପ୍ରଦତ୍ତ ହେଲା –

କର୍ମ ସମ୍ପର୍କରୁ ଜୀବ ଅନାଦି କାଳରୁ ନର୍କ, ତିର୍ଯ୍ୟକ, ମନୁଷ୍ୟ ଏବଂ ଦେବ-ଏହି ଚତୁର୍ଗତିରେ ଭ୍ରମଣ କରୁଥାଏ । ଏହି ଗତି ଗୁଡ଼ିକରେ ଆପଣାର ସଞ୍ଚିତ କର୍ମ ଅନୁସାରେ ସୁଖ ଅଥବା ଦୁଃଖ ଭୋଗିବାହିଁ ଏହାର ଏକମାତ୍ର କର୍ମ । ଏହି ମନୁଷ୍ୟାଦି ଗତି ଗୁଡ଼ିକରେ ସୁଖ ଦୁଃଖର ମାତ୍ରାରେ ତାରତମ୍ୟ ଅବଶ୍ୟ ପରିଲକ୍ଷିତ ହୁଏ । ଅର୍ଥାତ୍ ଜୀବକୁ ଅଳ୍ପ ପାପ ଯୋଗୁଁ ତିର୍ଯ୍ୟକ୍ ଗତି, ଅଧିକ ପାପରୁ ନର୍କଗତି, ଅଳ୍ପପୁଣ୍ୟରୁ ମନୁଷ୍ୟ ଗତି ଏବଂ ଅଧିକ ପୁଣ୍ୟ ଦ୍ୱାରା ଦେବଗତି ଲାଭ କରିବାକୁ ହୁଏ । ଏହି ଜୀବ ଯେତେବେଳେ ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର — ଏହି ରତ୍ନତ୍ରୟକୁ ଲାଭ କରେ, ସେତେବେଳେ ସେ ନିଜର ଆତ୍ମିକ ଗତି ବୃଦ୍ଧି କରିବାକୁ ସଚେଷ୍ଟ ହୁଏ । ମୋକ୍ଷ ପ୍ରାପ୍ତି ପାଇଁ ଏହି ରତ୍ନତ୍ରୟ ଏକାନ୍ତ ଆବଶ୍ୟକ । (୫) । ଶେଷରେ ଜୀବ ମନୁଷ୍ୟ ଗତି ପାର ହୋଇ କୈବଲ୍ୟ ସୁଖ ଲାଭ କରେ । ସେ ପୁନର୍ବାର ଏ ଦୁଃଖମୟ ସଂସାରକୁ ପ୍ରତ୍ୟାବର୍ତ୍ତନ କରେ ନାହିଁ । ଏହାହିଁ ଜୈନ ପୁରାଣର ସାରତତ୍ତ୍ୱ । ଏହି ତତ୍ତ୍ୱକୁ ବିଭିନ୍ନ ଦୃଷ୍ଟାନ୍ତ ଦ୍ୱାରା ଅତି ସୁନ୍ଦର ଢଙ୍ଗ ତଥା ଆକର୍ଷଣୀୟ ଶୈଳୀରେ ଜୈନପୁରାଣ ପାଠକ ତଥା ଶ୍ରୋତାଙ୍କୁ ଆସ୍ୱାଦନ କରାଇଥାଏ । ଜୈନ ପୁରାଣକାର ମାନେ ବିଶେଷତଃ ନିଜ ଜୀବନରେ ପ୍ରତ୍ୟକ୍ଷ ଅନୁଭୂତ ବିଷୟଗୁଡ଼ିକୁ ହିଁ ଚିତ୍ରଣ କରିବାର ପ୍ରୟାସ କରିଛନ୍ତି । ଅତଏବ ସେଥିରେ ସତ୍ୟ ଓ ସୌନ୍ଦର୍ଯ୍ୟ ପରିସ୍ଫୁଟ ।

ପଣ୍ଡିତ ସାର୍ବଭୌମ ପମ୍ପଙ୍କ ମତରେ (୧) ଲୋକାକାର,କଥନ୍ୟ(୨) ଦେଶନିବେଶୋପଦେଶ (୩) ନଗର ସମ୍ପତ୍ତି ପରିବର୍ଣ୍ଣନ,(୪) ରାଜ ରମଣୀୟ ବ୍ୟାଖ୍ୟାନ, (୫) ତୀର୍ଥମହିମା ସମର୍ଥନ, (୬) ଚତୁର୍ଗତି ସ୍ୱରୂପ,ନିରୂପଣ(୭) ତପୋଦାନ ବିଧାନ ବର୍ଣ୍ଣନ,ଏବଂ (୮) ପ୍ରାପ୍ତି ତତ୍ତ୍ୱଫଳ ପ୍ରଦର୍ଶନ - ଏହାହିଁ ଜୈନ ପୁରାଣର ଅଷ୍ଟାଙ୍ଗ ।

ଜୈନ ପୁରାଣରେ ପ୍ରାକ୍ ଐତିହାସିକ ଓ ଐତିହାସିକ ରାଜବଂଶ ଗୁଡ଼ିକର ବର୍ଣ୍ଣନା ରହିଛି । 'ଷଟଖଣ୍ଡାଗମ, ସୂତ୍ର' ଗ୍ରନ୍ଥରେ ଦ୍ୱାଦଶ ପ୍ରକାର ପୁରାଣ ଓ ଦ୍ୱାଦଶ ଜୈନ ଶ୍ରମଣ ଓ ରାଜବଂଶମାନଙ୍କର ଉଲ୍ଲେଖ ନିମ୍ନମତେ ରହିଛି--

"ବାରସବିହଂ ପୁରାଣଂ ଜଗଦିଟ୍ଠଂ ଜିଣବରେହି ସବ୍ବେହିଂ ।
ତଂ ସବ୍ବଂ ବର୍ଣ୍ଣେଦି ହୁ ଜିଣବଂଶେ ରାୟବଂଶେୟ ॥ ୭୭ ॥
ପଢ଼ମୋ ଅରହଂତାଣଂ ବିଦିୟୋ ପୁଣ ଚକ୍କବଟ୍ଟି-ବଂଶୋଦୁ ।
ବିଜ୍ଜହରାଣ ତଦିୟୋ ଚଉତ୍ଥୟୋ ବାସୁଦେବାଣଂ ॥ ୭୮ ॥
ଚାରଣ ବଂଶୋ ତହ ପଞ୍ଚମୋଦୁ ଛଟ୍ଠୋୟ ପର୍ଣ୍ଣ-ସମଣାଣଂ ।
ସତ୍ତମଓ କୁରୁବଂଶୋ ଅଟ୍ଠମଓ ତହୟ ହରିବଂଶୋ ॥ ୭୯ ॥
ଣବମୋୟ ଇକ୍ଖୟାଣଂ ଦସମୋ ବିୟ କାଶ୍ୟିୟାଣ ବୋଦ୍ଧବୋ ।
ବାଇଣେ କ୍କାରସମୋ ବାରସମୋ ଣାହବଂ ଶୋଦୁ ॥ ୮୦ ॥ (୬)

ଜୈନ ପୁରାଣରେ ବର୍ଣ୍ଣିତ ଦ୍ୱାଦଶ ଜିନ (ଶ୍ରମଣ) ଓ ରାଜବଂଶ ହେଲା—ତୀର୍ଥଙ୍କର ବଂଶ, ଚକ୍ରବର୍ତ୍ତୀ ବଂଶ, ବିଦ୍ୟାଧର ବଂଶ, ନାରାୟଣ – ପ୍ରତିନାରାୟଣ ବଂଶ, ଚାରଣ ବଂଶ, ପ୍ରଜ୍ଞା·ଶ୍ରମଣ ବଂଶ, କୁରୁ ବଂଶ, ହରି ବଂଶ, ଇକ୍ଷ୍ୱାକୁ ବଂଶ, କାଶ୍ୟପ ବଂଶ, ବାଦି ବଂଶ ଏବଂ ନାଥ ବଂଶ । ଜୈନ ପୁରାଣରେ ଏହି ବଂଶଗୁଡ଼ିକ ଦୁଇ ଭାଗରେ ବିଭକ୍ତ, ଯଥା :— ଜିନ (ଶ୍ରମଣ) ବଂଶ ଓ ରାଜ ବଂଶ । ଅରିହନ୍ତ ବଂଶ,ଚାରଣ-ଶ୍ରମଣ ବଂଶ,ପ୍ରଜ୍ଞା ଶ୍ରମଣ ବଂଶ, ଏବଂ ବାଦି·ଶ୍ରମଣ ବଂଶ—ଏହି ଚାରୋଟି ଜିନ ବଂଶ ଅନ୍ତର୍ଭୁକ୍ତ । ରାଜବଂଶ ଗୁଡ଼ିକ ହେଲା —ଚକ୍ରବର୍ତ୍ତୀ ବଂଶ,ବିଦ୍ୟାଧର ବଂଶ,ନାରାୟଣ ପ୍ରତିନାରାୟଣ ବଂଶ,କୁରୁ ବଂଶ,ହରି ବଂଶ, ଇକ୍ଷ୍ୱାକୁ ବଂଶ, କାଶ୍ୟପ ବଂଶ ଏବଂ ନାଥ ବଂଶ । ଜୈନ ପୁରାଣ ଗୁଡ଼ିକରେ ଏହି ବଂଶ ମାନଙ୍କର ବିଶଦ ବିବରଣୀ ରହିଛି ।

ଜୈନ ପୁରାଣ ସମ୍ବନ୍ଧରେ ହୀରାଲାଲ ଜୈନଙ୍କ ମତ ଉଲ୍ଲେଖଯୋଗ୍ୟ । ତାଙ୍କ ମତରେ ଜୈନଧର୍ମର ଇତିହାସ ବର୍ଦ୍ଧମାନ ମହାବୀର (ନିଗଣ୍ଠ ନାଟପୁତ୍ର)ଙ୍କ ସମୟ ଅଥବା ତାଙ୍କର କିଛି କାଳ ପୂର୍ବରୁ ପ୍ରାରମ୍ଭ । ଏହାର ପାକ୍କାଳୀନ ଇତିହାସ ନିମନ୍ତେ ଏକମାତ୍ର ଉପାଦାନ ହେଉଛି ଜୈନଧର୍ମର ପୁରାଣ ଗ୍ରନ୍ଥ । (୭) । ଏହି ପୁରାଣଗ୍ରନ୍ଥ ଗୁଡ଼ିକର ରଚନା କାଳ ଏବଂ ତହିଁରେ ବର୍ଣ୍ଣିତ ଘଟଣାବଳୀର କାଳ ମଧ୍ୟରେ ହଜାର ହଜାର ବର୍ଷର ପାର୍ଥକ୍ୟ ପରିଲକ୍ଷିତ ହୁଏ । ଅତଏବ ସେମାନଙ୍କର ଐତିହାସିକ ପ୍ରାମାଣିକତା ଏହି କଥା ଉପରେ ଆଧାରିତ ହୋଇଥାଏ କି ସେଗୁଡ଼ିକ କେତେଦୂର ପ୍ରାକୃତିକ ନିୟମ ଗୁଡ଼ିକର ଅନୁକୂଳ, ବିବେକର ଅବିରୁଦ୍ଧ ଅଥବା ଅନ୍ୟ ପ୍ରମାଣ ଗୁଡ଼ିକର ଅପ୍ରତିକୂଳ ଘଟଣା ଗୁଡ଼ିକର ଉଲ୍ଲେଖ କରନ୍ତି । ଯଦି ଏହି ଘଟଣା ଗୁଡ଼ିକ ପ୍ରକୃତି ବିରୁଦ୍ଧ, ମାନବିକ ବୁଦ୍ଧିର ପ୍ରତିକୂଳ ବା ଅନ୍ୟ ପ୍ରମାଣ ଗୁଡ଼ିକରୁ ବାଧିତ ହୋଇଥାଏ, ତେବେ ସେଗୁଡ଼ିକ ଧାର୍ମିକ ଶ୍ରଦ୍ଧା ବ୍ୟତୀତ ଅନ୍ୟ

କୌଣସି ଆଧାର ଉପରେ ଆସ୍ଥା ସ୍ଥାପନ ହୋଇନପାରନ୍ତି; କିନ୍ତୁ ଯଦି ସେହି ଘଟଣା-ଗୁଡ଼ିକ ଅନ୍ୟ ନିସ୍ସମ ପ୍ରମାଣ ଗୁଡ଼ିକରୁ ବାଧିତ ନହୋଇଥିବା ପୂର୍ବକାଳର ଯୁକ୍ତିସଙ୍ଗତ ଦର୍ଶନ ଉପସ୍ଥାପିତ କରିଥାଆନ୍ତି ତେବେ ସେହି ପୁରାଣଗ୍ରନ୍ଥ ଗୁଡ଼ିକର ଐତିହାସିକତା ସମ୍ପର୍କରେ ସଂଶୟ ସୃଷ୍ଟି କରିବାର କୌଣସି କାରଣ ନାହିଁ ।

ଜୈନ ପୁରାଣ ଅଧ୍ୟୟନ କରି କେତେକ ଐତିହାସିକ ନିମ୍ନଲିଖିତ ତିନୋଟି ବିଷୟର ସମାଲୋଚନା କରିଛନ୍ତି; ଯଥା :—୧] ପୁରାଣ ଗୁଡ଼ିକର ଅତ୍ୟନ୍ତ ଦୀର୍ଘ ସମୟ ବିଭାଗ, ୨] ମହାପୁରୁଷମାନଙ୍କର ଦୀର୍ଘ ଅତି କାୟ ଶରୀର, ତଥା ସେମାନଙ୍କର ଅକଳନୀୟ ପରମାୟୁ,ଏବଂ ୩] କାଳର ପରିବର୍ତ୍ତନରେ ଭୋଗଭୂମି ଓ କର୍ମଭୂମିର ପରିବର୍ତ୍ତନ; କିନ୍ତୁ ଏହି ସମାଲୋଚନା ଯୁକ୍ତିଯୁକ୍ତ ମନେହୁଏ ନାହିଁ । କାରଣ ବୈଜ୍ଞାନିକ ମାନଙ୍କ ଗବେଷଣାରୁ ସୃଷ୍ଟିର ଆରମ୍ଭ ସମ୍ପର୍କରେ ସଠିକ୍ ଧାରଣା ଏବେ ମଧ୍ୟ ମିଳିନାହିଁ । ତେବେ ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଯେଉଁସବୁ ଗବେଷଣାମାନ ହୋଇଯାଇଛି ତଦ୍ୱାରା ଖ୍ରୀ:ପୂ: ୪୦୦୦ଠାରୁ ପୂର୍ବରୁ ମଧ୍ୟ ମନୁଷ୍ୟର ପ୍ରାଚୀନତା ନିର୍ଦ୍ଧାରଣ କରାଯାଇପାରେ । ଖ୍ରୀ:ପୂ: ୩୦୦୦ ବର୍ଷ ପୂର୍ବରୁ ମିଶରର ପିରମିଡ଼ (Pyramid) ନିର୍ମିତ ହୋଇଥିଲା । ସର୍ବୋପରି ହରପ୍ପା ସଭ୍ୟତା ମଧ୍ୟ ଖ୍ରୀ:ପୂ:୩୦୦୦ ବର୍ଷ ବେଳକୁ ବିକାଶ ଲାଭ କରିଥିଲା । ଏଥିରୁ ଜ୍ଞାତ ହୁଏ ଯେ ଏତେ ପ୍ରାଚୀନ କାଳରେ ମଧ୍ୟ ମନୁଷ୍ୟ ବେଶ୍ ଉନ୍ନତ ଥିଲା । ଏଭଳି ଉନ୍ନତ ସଭ୍ୟତା ନିଶ୍ଚିତ ରୂପରେ ମନୁଷ୍ୟର ଶହ ଶହ ବର୍ଷ ସାଧନାର ଫଳ । ଅତଏବ ଜୈନପୁରାଣକାର ମାନବ ଇତିହାସ ବିଷୟରେ ଯଦି ସଂଖ୍ୟାତିତ ବର୍ଷର ଉଲ୍ଲେଖ କରନ୍ତି ତେବେ ସେଥିରେ ସନ୍ଦେହର ଅବକାଶ ନାହିଁ । ପ୍ରତ୍ନତତ୍ତ୍ୱବିତ୍ଙ୍କ ଦ୍ୱାରା ମଧ୍ୟ ଏହା ସମର୍ଥିତ । (୮) ।

ଦ୍ୱିତୀୟତଃ ମହାପୁରୁଷମାନଙ୍କର ଶରୀରର ଆକୃତି ତଥା ଦୀର୍ଘ ପରମାୟୁ ସମ୍ପର୍କରେ କେତେକ ଐତିହାସିକ ସନ୍ଦେହ ପ୍ରକାଶ କରିଛନ୍ତି । ଭୂତତ୍ତ୍ୱ ଗବେଷଣା ପ୍ରତି ଦୃଷ୍ଟିଦେଲେ ଏ ସନ୍ଦେହ ଦୂର ହୋଇପାରିବ । ପ୍ରାଚୀନ କାଳର ବୃହଦ୍‌କାୟ ମନୁଷ୍ୟ ତଥା ପ୍ରାଣୀମାନଙ୍କର ଅସ୍ଥି ପଞ୍ଜର (Fossils) ବିଭିନ୍ନ ସ୍ଥାନରେ ଆବିଷ୍କୃତ ହୋଇଛି । ସେଥିରୁ ସେମାନଙ୍କର ଅସ୍ତିତ୍ୱ ସିଦ୍ଧ ହୁଏ । ଯେଉଁ ଜୀବର ଅସ୍ଥି ପଞ୍ଜର ଯେତିକି ବଡ଼ ତା'ର ପ୍ରାଚୀନତା ସେତେ ଅଧିକ ବୋଲି ମଧ୍ୟ ଜଣାଯାଇଛି । ଯେଉଁ ଜୀବ ଯେତିକି ବୃହଦ୍‌କାୟ ତା'ର ଜୀବନକାଳ ସେତିକି ଦୀର୍ଘ । ପ୍ରତ୍ୟକ୍ଷରେ ମଧ୍ୟ ଆମେ ଦେଖିବାକୁ ପାଉ, କ୍ଷୁଦ୍ର ପ୍ରାଣୀମାନେ କ୍ଷୀଣାୟୁ ହୁଅନ୍ତି ! ପ୍ରାଣୀମାନଙ୍କ ମଧ୍ୟରେ ହସ୍ତୀ ବୃହଦ୍‌କାୟ ହୋଇଥିବାରୁ ତୁଳନାତ୍ମକ ଭାବରେ ସେ ଦୀର୍ଘାୟୁ । ଅତଏବ ଜୈନ ପୁରାଣ ଗୁଡ଼ିକରେ ମଧ୍ୟ ଏହି ନିୟମାନୁଯାୟୀ ପ୍ରାଚୀନ କାଳରେ ବୃହତ୍ ଶରୀରଧାରୀ ମନୁଷ୍ୟଙ୍କ ଜୀବନକାଳ ଦୀର୍ଘତର ବୋଲି ପ୍ରତିପାଦନ କରାଯାଇଛି । ଯଦି ଜୈନ ପୁରାଣରୁ ଏହି ନିୟମ ବିରୁଦ୍ଧ ପ୍ରମାଣ ମିଳୁଥାଆନ୍ତା ତେବେ ଜୈନ ପୁରାଣକୁ ଆମେ ପ୍ରକୃତି ବିରୁଦ୍ଧ ବୋଲି ବିବେଚନା କରନ୍ତୁ ।

ବସ୍ତୁତଃ ସମୟର ପରିବର୍ତ୍ତନରେ ଭୋଗଭୂମି ବା କର୍ମଭୂମିର ରଚନା ଗୁଡ଼ିକର ପରି-ବର୍ତ୍ତନ ହୋଇଥିଲା । ପୂର୍ବେ ଭୋଗକ୍ଷେତ୍ର ବା କର୍ମକ୍ଷେତ୍ରରେ ଲୋକମାନେ ବନାଶ୍ରମରେ ଓ ସୁଖସ୍ୱଚ୍ଛନ୍ଦ୍ୟରେ ଜୀବିକା ନିର୍ବାହ କରୁଥିଲେ ବୋଲି ଜୈନ ପୁରାଣରୁ ଜ୍ଞାତ ହୁଏ । ଲୋକ-ମାନଙ୍କର ଆବଶ୍ୟକତା କଳ୍ପବୃକ୍ଷ ଦ୍ୱାରା ପରିପୂର୍ଣ୍ଣ ହେଉଥିଲା । ଭଲ-ମନ୍ଦ, ପାପ-ପୁଣ୍ୟର କୌଣସି ଭିନ୍ନ ପ୍ରବୃତ୍ତି ନଥିଲା । ଏହାହିଁ ଭୋଗଭୂମି । କ୍ରମଶଃ ଏହି ଅବସ୍ଥାର ପରିବର୍ତ୍ତନ ହୋଇ କଳ୍ପବୃକ୍ଷ ବିଲୀନ ହେଲା । ଆପଣାର ଆବଶ୍ୟକତା ଗୁଡ଼ିକ ପୂର୍ଣ୍ଣ କରିବା ପାଇଁ ମନୁଷ୍ୟକୁ କଠୋର ପରିଶ୍ରମ କରିବାକୁ ପଡ଼ିଲା । ବ୍ୟକ୍ତିଗତ ସମ୍ପତ୍ତିର ଭାବ ଜାଗ୍ରତ ହେଲା । କୃଷି ଓ ପଶୁପାଳନର ଉଦ୍ୟମ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଲେଖନାଦି କଳା ଗୁଡ଼ିକର ପ୍ରସାର ମଧ୍ୟ ହେଲା । (୯) । ଏହିପରି କର୍ମଭୂମିର ଅଭ୍ୟୁଦୟ ହେଲା । ଏହି ଭୋଗଭୂମିର ସ୍ୱାଭାବିକ ପରିବର୍ତ୍ତନରେ ହିଁ ଆଧୁନିକ ସଭ୍ୟତାର ପ୍ରାରମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁମାନେ ସ୍ୱର୍ଣ୍ଣଯୁଗ (Golden Age)ର ପ୍ରାକୃତିକ ଜୀବନ (Life according to nature) ର ବର୍ଣ୍ଣନ ଅଧ୍ୟୟନ କରିଛନ୍ତି ସେହିମାନେ ହିଁ ଏହାର ତାତ୍ପର୍ଯ୍ୟ ବୁଝି-ପାରିବେ । ଆଧୁନିକ ସଭ୍ୟତାର ପ୍ରାରମ୍ଭିକ କାଳରେ ମନୁଷ୍ୟ ଜନର ସମସ୍ତ ଆବଶ୍ୟକତା ବୃକ୍ଷଦ୍ୱାରା ହିଁ ପୂରଣ କରାଯାଉଥିଲା । ବସ୍ତ୍ର ପରିବର୍ତ୍ତେ ବଳକଳ, ଭୋଜନାର୍ଥେ ଫଳ ଓ ବାସ ନିମନ୍ତେ ଡାଳ ଓ ପତ୍ରରେ ତିଆରି କୁଡ଼ିଆ ଇତ୍ୟାଦିରେ ତୃପ୍ତ ହେଉଥିବା ପ୍ରାଣୀ ପକ୍ଷରେ ଧନ ସମ୍ପତ୍ତିର ମୂଲ୍ୟ ନଥିଲା । ପରସ୍ପର ମଧ୍ୟରେ ସଦ୍‌ଭାବ ଓ ଏକତା ରହିଥିଲା । କ୍ରମଶଃ ଆଧୁନିକ ସଭ୍ୟତାର ଆଦି ପୃଷ୍ଠ ପୋଷକମାନେ ନାନା ପ୍ରକାର ଉଦ୍ୟମ ଓ କଳାର ଆବିଷ୍କାର ପୂର୍ବକ ମନୁଷ୍ୟଙ୍କୁ ଆଧୁନିକ ସଂସ୍କୃତି ସହ ପରିଚିତ କରାଇଥିଲେ । ଜୈନ ପୁରାଣ ଅନୁସାରେ 'ପ୍ରତିଶ୍ରୁତି' ଏହି ସଭ୍ୟତାର ପ୍ରଥମ ପଥିକୃତ୍ । ସେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ବିଷୟରେ ବହୁ ତଥ୍ୟ ଉଦଘାଟନ କରି ପ୍ରଚାର କରିଥିଲେ । ତାଙ୍କ ପରେ ପରେ 'ସମ୍ମତି', 'କ୍ଷେମଙ୍କର' ଆଦି ଜ୍ୟୋତିଷ ଶାସ୍ତ୍ର ସମ୍ପର୍କରେ ବହୁ ଜ୍ଞାନ ଉପାର୍ଜନ କରି ଲୋକ ମୁଖରେ ପ୍ରଚାର କରିଥିଲେ । ସେମାନେ କେତେକ ସାମାଜିକ ନୀତି, ନିୟମ ମଧ୍ୟ ନିଯୁକ୍ତ କରିଥିଲେ । ଜୈନ ପୁରାଣରେ ଏ ସବୁ ବିଷୟର ଉଲ୍ଲେଖ ରହିଛି । ତେଣୁ ଜୈନ ପୁରାଣ ସମାଦୃତ ହୋଇପାରିଛି ।

କେତେକ ଜୈନ ପୁରାଣର ପ୍ରଭାବ ଓଡ଼ିଶାର ଲୋକ ସାହିତ୍ୟରେ ପରିଦୃଷ୍ଟହୁଏ । ସାରଳା ମହାଭାରତରେ ରାଧା ଚକ୍ର ଶବ୍ଦର ବ୍ୟବହାରରୁ ଏହାର ପ୍ରମାଣ ମିଳେ —

> "ରାଧା ଚକ୍ରେ ବୃନ୍ଦ ଅଛୁ ସାତ ତାଳ ଉଚ୍ଚେ
> ତାହା ଭିତରେ ଘଣ୍ଟାଏ ଅଛୁ ଯେ ପ୍ରସଙ୍ଗେ
> ଲକ୍ଷେ ଦଳ ଧନୁଧର ସେ ପଟ୍ଟାରେ ଉଠି"

"ଦ୍ରୌପଦୀଙ୍କ ସ୍ୱୟମ୍ବରରେ ଅର୍ଜୁନ ଲକ୍ଷ ବିନ୍ଧିବା ବେଳେ ଘୂର୍ଣ୍ଣମାନ ଚକ୍ରର ସନ୍ଧିରେ ରାଧା ଅର୍ଥାତ୍ ଲକ୍ଷକୁ ଭେଦ କରିଥିବା କଥା ଜୈନ ହରିବଂଶରେ ଉଲ୍ଲେଖ ଅଛି ।

ସାରଳା ମହାଭାରତରେ ଏହି ରାଧା ଚନ୍ଦ ଶବ୍ଦର ପ୍ରୟୋଗ ଥିଲେ ହେଁ ସଂସ୍କୃତ ମହା-ଭାରତରେ ରାଧା ଶବ୍ଦର ଆଦୌ ଉଲ୍ଲେଖନାହିଁ । ତେଣୁ ଏହାଯେ ଜୈନ ହରିବଂଶରୁ ସାରଳା ଦାସଙ୍କ ଦ୍ୱାରା ଗୃହୀତ ହୋଇଛି ଏଥିରେ ସନ୍ଦେହ ହୋଇନପାରେ” ।(୧୦) । ଚୈତନ୍ୟ ଦାସଙ୍କ ବିଷ୍ଣୁଗର୍ଭ ପୁରାଣ ଏବଂ ଦୀନକୃଷ୍ଣ ଦାସଙ୍କ ରସ କଲ୍ଲୋଳରେ ମଧ୍ୟ ଜୈନ ପୁରାଣର ପ୍ରଭାବ ପରିଲକ୍ଷିତ ହୁଏ ।

ବଙ୍କି ଐତିହାସିକମାନଙ୍କ ନିମନ୍ତେ ଯେ କୌଣସି ରାଷ୍ଟ୍ର ସମ୍ବନ୍ଧୀୟ ଶୃଙ୍ଖଳିତ ତଥା ପ୍ରାମାଣିକ ଇତିହାସ ସଙ୍କଳନ ନିମନ୍ତେ ବିଭିନ୍ନ କାଳର ଭିନ୍ନ ଭିନ୍ନ ସ୍ଥାନରେ ବିଭିନ୍ନ ପ୍ରାନ୍ତର ଲେଖକମାନଙ୍କ ଦ୍ୱାରା ରଚିତ ପୁରାଣ ଅଥବା କଥା – ସାହିତ୍ୟର ଆଶ୍ରୟ ନେବା କେବଳ ଆବଶ୍ୟକ ନୁହେଁ, ଅନିବାର୍ଯ୍ୟ ମଧ୍ୟ । ସେହି ପୁରାଣ ଗୁଡ଼ିକରୁ ତତ୍କାଳୀନ ଶୀଳ-ସ୍ୱଭାବ, ରୀତିନୀତି, ଆଚାର-ବ୍ୟବହାର, ସାମାଜିକ ସଂଗଠନ, ଧର୍ମ ରୁଚି, ଶାସନ ପଦ୍ଧତି, ବିଚାର ଓ ଦଣ୍ଡନୀତି, ଆର୍ଥିକ ସ୍ଥିତି, କୃଷି, ଶିଳ୍ପ, ବାଣିଜ୍ୟ ଶିକ୍ଷା, ସାହିତ୍ୟ-ପ୍ରଗତି, ଚିତ୍ର-କଳା, ସମାଜରେ ବିଭିନ୍ନ ଶ୍ରେଣୀର ଅବସ୍ଥାଦି ବିଷୟରେ ଏକ ସମ୍ୟକ ଧାରଣା ଜନ୍ମେ । ଏସବୁ ବିଷୟରେ ଜୈନ ପୁରାଣରୁ ଅବଗତ ହେଲାପରେ ହିଁ ଯେକୌଣସି ଐତିହାସିକ ଏକ ସର୍ବାଙ୍ଗୀନ ପ୍ରାମାଣିକ ଜୈନ ଇତିହାସ ସଙ୍କଳନ କରିବାରେ ସମର୍ଥ ହେବ ।

ପାଦଟୀକା .

୧. ହେମଚନ୍ଦ୍ରଙ୍କ ତ୍ରିଷଷ୍ଟିଶଳାକା ପୁରୁଷ ଚରିତ,
English translation by H M.Wilson, Baroda, 1930.
୨. H Jacobi, Saered Books of the East, XLV, pp (XX-XXIII; କଳ୍ପସୂତ୍ର, ୧୪୯, ୫୫.
୩. ବିମଳ ସୂରିଙ୍କ ପଉମ ଚରିୟ, H· Jacobi ଙ୍କ ଦ୍ୱାରା ସମ୍ପାଦିତ, ଭାବନଗର ୧୯୧୪.
୪. The Cultural Heritage of India, vol I, p 193.
୫. ତତ୍ତ୍ୱାର୍ଥସୂତ୍ର, ୧, ୫, ୧.
୬. ଷଟ୍‌ଖଣ୍ଡାଗମ ସୂତ୍ର, ଧବଳଟୀକା, ପୃ ୧୧୨.
୭ H L Jain 'Contribution of Jainism to Indian culture', Journal of Bihar and Orissa Research Society, vol XLIV, No /2 pp I ff.
୮. J G R Forlong, short studies in the Science of comparative religions, pp 243 244.
୯. ଭଗବଜ୍ଜିନସେନ କୃତ ଆଦି ପୁରାଣ, ୩ୟ ଅଧ୍ୟାୟ, ପୃ [illegible]
୧୦. ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଓଡ଼ିଶାରେ ଜୈନ ଧର୍ମ, ପୃ ୧୧୭-୧୧୮.

○

---

“ପୁରାତନଂ ପ୍ରବରଣଂ ଯଥାଭନ୍ନୁହନ୍ମ ହଦାଖ୍ୟାତ୍ ।”

# ଦଶମ ଅଧ୍ୟାୟ

## ଜୈନ ସାହିତ୍ୟ ଓ ଯକ୍ଷ ପୂଜା

ବୈଦିକ ସାହିତ୍ୟ, ଜୈନ ଓ ବୌଦ୍ଧ ଗ୍ରନ୍ଥ ଏବଂ ପୁରାଣରେ ଯକ୍ଷମାନେ ଭୂତ, କିନ୍ନର, ରାକ୍ଷସ, ବିଦ୍ୟାଧର ଗନ୍ଧର୍ବ, ନାଗ, ଦାନବ ଆଦି ଶ୍ରେଣୀ ଅନ୍ତର୍ଭୁକ୍ତ ହୋଇଛନ୍ତି । ଯକ୍ଷମାନଙ୍କର ବିଭିନ୍ନ ଉପାସନା ପଦ୍ଧତି ମଧ୍ୟ ଉକ୍ତ ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ହୋଇଛି । ଅମରକୋଷ (୧)ରେ ଯକ୍ଷମାନଙ୍କ ସମ୍ପର୍କରେ ନିମ୍ନୋକ୍ତ ଉଲ୍ଲେଖ ରହିଛି—

"ବିଦ୍ୟାଧରୋଽପ୍‌ସରେ ଯକ୍ଷୋ ରକ୍ଷୋ ଗନ୍ଧର୍ବ କିନ୍ନରାଃ,
ପିଶାଚେ ଗୁହ୍ୟକୋ ସିଦ୍ଧୋ ଭୂତୋଽମୀ ଦେବଯୋନୟଃ ।"

ବେଦ ତଥା ଜୈମିନୀୟ ବ୍ରାହ୍ମଣ ଆଦି ଗ୍ରନ୍ଥମାନଙ୍କରେ 'ଯକ୍ଷ' ଶବ୍ଦର ପ୍ରୟୋଗ କେବଳ ଆଶ୍ଚର୍ଯ୍ୟଜନକ ଅଥବା ଭୟାନକ ଅର୍ଥରେ ବ୍ୟବହୃତ ହୋଇଛି । ବେଦ, ବ୍ରାହ୍ମଣ, ଉପନିଷଦ, ସୂତ୍ର, ପୁରାଣ ଆଦି ସାହିତ୍ୟରେ ଯକ୍ଷମାନେ ମହାମାନବ ରୂପେ ଅଭିହିତ । (୨) । ହରିବଂଶ ପୁରାଣରେ ଯକ୍ଷମାନଙ୍କୁ ଧନପତି କୁବେରଙ୍କର ଭଣ୍ଡାରଘର ତଥା ଉଦ୍ୟାନ ରକ୍ଷକ ବୋଲି ବର୍ଣ୍ଣନା କରାଯାଇଛି । ଯକ୍ଷମାନଙ୍କ କାର୍ଯ୍ୟକଳାପ ସମ୍ପର୍କରେ ହରିବଂଶରେ ବର୍ଣ୍ଣନା ଅଛି ଯେ,

"ଯକ୍ଷୋତ୍ତମା ଯକ୍ଷପତିଂ ଧନେଶଂ
ରକ୍ଷନ୍ତି ବୈ ପ୍ରାପ୍ତ ଗଦାଦି ହସ୍ତାଃ ।"

କୁବେର ଯକ୍ଷମାନଙ୍କର ଅଧିଶ୍ୱର ବୋଲି ମଧ୍ୟ କେତେକ ପୁରାଣ ଓ କଥା ସାହିତ୍ୟ ଗ୍ରନ୍ଥରେ ଉଲ୍ଲେଖ ଅଛି (୩) । ବୌଦ୍ଧ ଗ୍ରନ୍ଥ ମହାବଂଶ ଅନୁସାରେ ସିଂହଳ ଦ୍ୱୀପ (ଶ୍ରୀଲଙ୍କା)ର ଆଦିମ ଅଧିବାସୀମାନେ ଥିଲେ ଯକ୍ଷ । କେତେକ ବୌଦ୍ଧ ଜାତକରେ ଯକ୍ଷ-ନଗରର ବର୍ଣ୍ଣନା ରହିଛି । ଯକ୍ଷମାନେ ଯକ୍ଷନଗରରେ ବାସ କରୁଥିଲେ । ସାଧାରଣତଃ ଦ୍ୱୀପ, ଘନ ଅରଣ୍ୟ, ମରୁଭୂମି କିମ୍ବା ପାର୍ବତ୍ୟ ଅଞ୍ଚଳରେ ଯକ୍ଷନଗରଗୁଡ଼ିକ ଅବସ୍ଥିତ ଥିଲା, ଯଥା—ତମ୍ବପର୍ଣ୍ଣୀ ଦ୍ୱୀପ, (ସିଂହଳ)ରେ 'ସିରିସବତ୍ଥୁ' ନାମକ ଯକ୍ଷ ନଗର ଅବସ୍ଥିତ ଥିଲା । (୪) । 'ସଂଯୁକ୍ତ ନିକାୟ' ଏବଂ 'ସୁତ୍ତନିପାତ ଗ୍ରନ୍ଥରେ (୫) ଗୟାବାସୀ 'ସୂଚୀ ଲୋମ' ନାମକ ଯକ୍ଷ ଗୌତମବୁଦ୍ଧଙ୍କ ସହିତ ଧର୍ମାଲୋଚନା କରିବାର ବର୍ଣ୍ଣନା ରହିଛି ।

ଯକ୍ଷମାନଙ୍କର ଉତ୍ପତ୍ତି ସମ୍ବନ୍ଧରେ ରାମାୟଣରୁ ଜଣାଯାଏ ଯେ, ପ୍ରଜାପତି ଜଳରାଶି ସଂରକ୍ଷଣ ପାଇଁ ବିପୁଳ ସାମର୍ଥ୍ୟଯୁକ୍ତ ଏକ ସତ୍ତ୍ୱା ସୃଷ୍ଟି କଲେ । ଜନ୍ମ ହେବା କ୍ଷଣି ସେମାନଙ୍କ ମଧ୍ୟରୁ କେତେକ ରକ୍ଷାମ୍ ବୋଲି ଉଚ୍ଚାରଣ କରିବାରୁ ସେମାନେ ରାକ୍ଷସ ନାମରେ ଅଭିହିତ ହେଲେ । ଅନ୍ୟ କେତେକ 'ଯକ୍ଷାମ୍' ବୋଲି ଉଚ୍ଚାରଣ କରିବାରୁ ସେମାନେ 'ଯକ୍ଷ'

ନାମରେ କଥିତ ହେଲେ । (୭) । ପୁରାଣରେ ବର୍ଣ୍ଣିତ ଏକ ଆଖ୍ୟାୟିକାରୁ ଜଣାଯାଏ ଯେ ବ୍ରହ୍ମା ଏକଦା ପୁଲସ୍ତ୍ୟ ନାମକ ଏକ ମାନସ ପୁତ୍ର ସୃଷ୍ଟି କଲେ । ପୁଲସ୍ତ୍ୟଙ୍କର ବୈଶ୍ରବନ ବା କୁବେର ନାମକ ଏକ ପୁତ୍ର ଜାତ ହେଲା । ସେ ଧନପତି, ଧନଦ, ଅଳକାପତି ଆଦି ନାମରେ ମଧ୍ୟ କଥିତ । ବୈଶ୍ରବନ ବ୍ରହ୍ମାଙ୍କଠାରୁ ଅମରତ୍ୱ, ଐଶ୍ୱର୍ଯ୍ୟ, ଯକ୍ଷକୁଳ ଏବଂ ଲଙ୍କାର ପ୍ରଭୁତ୍ୱ ଆଦି ବିଭିନ୍ନ ବର ଲାଭ କରିଥିଲେ । ଏଥିରେ ବୈଶ୍ରବନଙ୍କ ପିତା ଓ ବୈମାତ୍ରେୟ ଭ୍ରାତାମାନେ ଈର୍ଷାପରାୟଣ ହୋଇ ତାଙ୍କ ପ୍ରତି ଶତ୍ରୁତା କଲେ । କେବଳ ସେତିକି ନୁହେଁ, ତାଙ୍କ ଶତ୍ରୁଗଣଙ୍କ ମଧ୍ୟରୁ ରାବଣ ତାଙ୍କୁ ଲଙ୍କାରୁ ଉଚ୍ଛେଦ କରିଥିଲେ । ତାପରେ ସେ ଶିବଙ୍କ ଅନୁଗ୍ରହରୁ ଯକ୍ଷମାନଙ୍କର ଅଧୀଶ୍ୱର ତଥା ଉତ୍ତର ଦିଗର ଅଧିପତି ହୋଇଥିଲେ । (୭) ।

ଯକ୍ଷମାନେ ବୃହତ୍‌କାୟ ଓ ମାଂସାଶୀ ବୋଲି 'କଥା ସରିତ୍ ସାଗର'ରୁ ଜଣାଯାଏ । ସେମାନଙ୍କର ଚକ୍ଷୁ ବୃହଦାକାର ଓ ସର୍ବଦା ରକ୍ତବର୍ଣ୍ଣ ଧାରଣ କରିଥାଏ । ସେମାନଙ୍କ ଶରୀରର ଉଚ୍ଚତା ତାଳବୃକ୍ଷ ପରି, ମୁଖ ଶ୍ୟେନ ପକ୍ଷୀର ଚଞ୍ଚୁ ସଦୃଶ ଏବଂ ରୂପ ଭୟଙ୍କର । ଏହା ବ୍ୟତୀତ ସେମାନେ ଅଶ୍ୱପାଦ ଯୁକ୍ତ । ଏହି ଶ୍ରେଣୀର ଯକ୍ଷମାନେ ରାକ୍ଷସ ବା ଭୂତଯୋନି ବିଶେଷ । ସେମାନେ ପଶୁମାଂସ ଭକ୍ଷଣ କରନ୍ତି ଏବଂ ଅରଣ୍ୟ ଅଥବା ନିର୍ଜନ ସ୍ଥାନରେ ବାସ କରନ୍ତି । ଅନ୍ୟ ଶ୍ରେଣୀର ଯକ୍ଷମାନେ ହେଲେ ଦେବଯୋନି ଅଥବା ଉପଦେବତା ବିଶେଷ । ସେମାନେ ବଳବାନ୍, ସୁନ୍ଦର ଶରୀର ସମ୍ପନ୍ନ ଏବଂ ଲୋକହିତକାରୀ । ଦେବଯୋନି ବିଶେଷ ଯକ୍ଷମାନଙ୍କୁ ଆରାଧନା କଲେ ସାଧକ ସେମାନଙ୍କ ଅନୁଗ୍ରହ ଲାଭ କରି ସିଦ୍ଧି ପ୍ରାପ୍ତ ହୁଏ ।

ଜୈନ ଅଙ୍ଗ ଓ ଉପାଙ୍ଗର ପ୍ରାୟ ପ୍ରତ୍ୟେକ ସୂତ୍ରରେ ଯକ୍ଷ ଓ ଯକ୍ଷାୟତନମାନଙ୍କର ବହୁ ଉଲ୍ଲେଖ ରହିଛି । (୮) । ଉତ୍ତର ଓ ପୂର୍ବ ଭାରତରେ ପ୍ରାୟ ଏକଶତ ଯକ୍ଷାୟତନ ପ୍ରତିଷ୍ଠିତ ହୋଇଥିଲା । ସେଗୁଡ଼ିକ ମଧ୍ୟରୁ ନିମ୍ନଲିଖିତ ଯକ୍ଷାୟତନମାନ ଖ୍ୟାତିଲାଭ କରିଥିଲା—

୧. ବର୍ଦ୍ଧମାନ ପୁରର ମଣିଭଦ୍ର
୨. ରାଜଗୃହର ଗୁଣଶୀଳ, କୁଣ୍ଡିକ ଓ ମୋଗ୍‌ଗର ପାଣି (ମୁଦ୍‌ଗର ପାଣି)
୩. କଯଂଗଲର ଛତ୍ରପଲାସ
୪. ଚମ୍ପାର ପୁର୍ଣ୍ଣଭଦ୍ର ଏବଂ ଅଙ୍ଗ ମନ୍ଦିର
୫. ବାଣିଯଗ୍ରାମର ଦୁତିପଲାସ ଏବଂ ଦୁଂପଲାସ
୬. ବୈଶାଳୀର ବହୁପୁତ୍ରିକା
୭. ମିଥିଳାର ମଣିଭଦ୍ର
୮. ଆଲଭିୟାର ଶଂଖବନ ଓ ପତ୍ରକାଲଗ
୯. ବାରାଣସୀର କୋଠ୍‌ଠୟ, ଅମ୍ବସାଲବନ ଏବଂ କୋଷ୍ଟକ

୧୦. କୌଶାମ୍ବୀର ଚଂଡ୍ରୋଡବଣ
୧୧. ଶ୍ରାବସ୍ତୀର ଜ୍ୟୋଠ୍ଠସ୍ଥ ଓ କୋଷ୍ଟକ
୧୨. ମଥୁରାର ସୁଦର୍ଶନ ଓ ଭଣ୍ଡୀରବଣ
୧୩. ହସ୍ତିନାପୁରର ସହସମ୍ରବନ
୧୪. ଦ୍ୱାରବତୀର ସୁରପ୍ରିୟ
୧୫. ପାଟଳିପୁତ୍ରର ଅଜକଳାପକ
୧୬. କମ୍ପିଲ୍ୟପୁରର ସହସ୍ରାମ୍ରବଣ
୧୭. ଆଲଭୀର ଶଂଖବଣ
୧୮. ସାକେତର ସୁରପିପ୍ୟ (୯)

ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ଯକ୍ଷ ପୂଜା ଲୋକପ୍ରିୟ ହୋଇପାରିଥିଲା । ପ୍ରାୟ ପ୍ରତ୍ୟେକ ନଗରରେ ଯକ୍ଷାୟତନ ପ୍ରତିଷ୍ଠିତ ହୋଇଥିଲା । ଜୈନ ସାହିତ୍ୟରେ ତୀର୍ଥଙ୍କରମାନେ ଯକ୍ଷାୟତନ ପରିଦର୍ଶନ କରିଥିବାର ଉଲ୍ଲେଖ ରହିଛି । 'ନ୍ୟାୟାଧମ୍ମକହା' (୧୦) ରୁ ଜଣାଯାଏ ଯେ, ପାର୍ଶ୍ୱନାଥ ବାରଣସୀର କୋଷ୍ଠକ ଏବଂ ଚମ୍ପାର ପୂର୍ଣ୍ଣଭଦ୍ର ଚୈତ୍ୟପୀଠ ପରିଦର୍ଶନ କରିଥିଲେ । ରାଜଗୃହର ଗୁଣଶୀଳ, ଚମ୍ପାର ପୂର୍ଣ୍ଣଭଦ୍ର, ଶ୍ରାବସ୍ତୀର କୋଷ୍ଠକ, ବାଣିଜ୍ୟଗ୍ରାମର ଦ୍ୟୁତିପଲାଶ, ବାରଣସୀର କୋଷ୍ଠକ, ପୋଲାସପୁରର ସହସ୍ରାମ୍ରବଣ ପ୍ରଭୃତି ବର୍ଦ୍ଧମାନ ମହାବୀର ପରିଦର୍ଶନ କରିଥିବା 'ଉବାସଗ ଦସାଓ'ରୁ ଜ୍ଞାତ ହୁଏ । ମହାବୀର ଅଧିକାଂଶ ସମୟରେ ରାଜଗୃହର ଗୁଣଶୀଳ ଯକ୍ଷପୀଠରେ ପ୍ରବଚନ ଦେଉଥିଲେ । (୧୧) । ଯକ୍ଷମାନଙ୍କ ପରି ବାଣମନ୍ତ୍ରୀ ବା ଯକ୍ଷିଣୀମାନେ ମଧ୍ୟ ପୂଜିତା ହେଉଥିଲେ ।

ପ୍ରତ୍ୟେକ ଜୈନ ତୀର୍ଥଙ୍କରଙ୍କର ଯକ୍ଷ-ଯକ୍ଷିଣୀ ଯୁଗଳ ଥିଲେ । ସାଧାରଣତଃ ଯକ୍ଷମାନଙ୍କୁ ଶାସନ ଦେବ ଓ ଯକ୍ଷିଣୀମାନଙ୍କୁ ଶାସନଦେବୀ କୁହାଯାଏ । ସେମାନେ ତୀର୍ଥଙ୍କରମାନଙ୍କ ଭକ୍ତ ଓ ପରିସ୍ତରକ ରୂପେ ବବେଚିତ । ଜୈନ ସମ୍ପ୍ରଦାୟରେ ନାରୀମାନେ ଯକ୍ଷିଣୀଙ୍କୁ ସେମାନଙ୍କର ନେତ୍ରୀ ଓ ଅଧିଷ୍ଠାତ୍ରୀ ବୋଲି ମାନ୍ୟ କରନ୍ତି । ଭାରତର ବିଭିନ୍ନ ଅଞ୍ଚଳରେ ଯକ୍ଷ-ଯକ୍ଷିଣୀମାନେ ଗ୍ରାମ ଦେବତା ଓ ଗ୍ରାମ ଦେବୀ ରୂପେ ପୂଜିତ ହେଉଥିଲେ । ଯକ୍ଷମାନେ ମନୁଷ୍ୟର ଜନ୍ମ ଓ ମୃତ୍ୟୁ ସମ୍ପର୍କୀୟ ବ୍ୟାପାରରେ ଅଭିଜ୍ଞ ହୋଇଥିବାରୁ ସେମାନଙ୍କର ମୂର୍ତ୍ତି ସ୍ଥୂଳକାୟ, ଖର୍ବ ଓ ଘଟୋଦର ପରିକଳ୍ପିତ ହୋଇଥିବା ସମ୍ଭବ । ଏହି ମୂର୍ତ୍ତିମାନ ଓଡ଼ିଶାର ବିଭିନ୍ନ ଅଞ୍ଚଳ ସମେତ ପାଟଣା, ମଥୁରା, ଗ୍ୱାଲିୟର, ଗୁଜରାଟର ସୋପାରା, ଆନ୍ଧ୍ରର ଅମରାବତୀ ଓ ନାଗାର୍ଜୁନକୋଣ୍ଡା ପ୍ରଭୃତି ସ୍ଥାନରେ ଦେଖିବାକୁ ମିଳେ । କୁବେରପୁର ରାଜା ବୈଶ୍ରବଣ ନାମକ ଯକ୍ଷ ସର୍ବଲୋକଙ୍କ ଦ୍ୱାରା ନମସ୍କୃତ ହୁଅନ୍ତି ବୋଲି ରାମାୟଣରେ ବର୍ଣ୍ଣିତ ହୋଇଛି । ବୈଶ୍ରବଣ ଥିଲେ ଗୁହ୍ୟକ ବା ଯକ୍ଷମାନଙ୍କର ରାଜା --

"କୁବେର ଭବନଂ ରମ୍ୟଂ ନିର୍ମିତଂ ବିଶ୍ୱକର୍ମଣା ॥
ବିଶାଳା ନଳିନୀ ଯତ୍ର ପ୍ରଭୁତ କମଳୋତ୍ପଳା ।
ହଂସ କାରଣ୍ଡ ବା କୀର୍ଣ୍ଣା ଅପ୍ସରୋଗଣ ସେବିତା ॥
ତତ୍ର ବୈଶ୍ରବଣୋ ରାଜା ସର୍ବଲୋକ ନମସ୍କୃତଃ ।
ଧନଦୋରମତେ ଶ୍ରୀମାନ୍ ଗୁହ୍ୟକୈଃ ସହଯକ୍ଷରାଟ୍ ॥" (୧୨)

ଶକ୍ତି ଉପାସନାର ପ୍ରଭାବ ଦ୍ୱାରା ଜୈନଧର୍ମରେ ଯକ୍ଷିଣୀ ପୂଜାର ପ୍ରଚଳନ ହୋଇଥିଲା । 'ଉତ୍ତରାଧ୍ୟୟନ ସୂତ୍ର' ଓ 'ଆଚାର ଦିନକର' ପ୍ରଭୃତି ଗ୍ରନ୍ଥରେ ବିଭିନ୍ନ ଦେବୀଙ୍କ ନାମ ଓ ସ୍ୱରୂପ ସମ୍ବନ୍ଧରେ ପରିଚୟ ମିଳେ । ଜୈନଧର୍ମରେ ଶକ୍ତିବାଦ ଓ ଦେବୀତତ୍ତ୍ୱ ଅନୁଶୀଳନ କରି ଗବେଷକମାନେ ତୀର୍ଥଙ୍କରମାନଙ୍କ ଶାସନଦେବୀ 'ଯକ୍ଷିଣୀ'ଙ୍କୁ ସର୍ବାଗ୍ରଗଣ୍ୟ ବୋଲି ସ୍ୱୀକାର କରନ୍ତି । (୧୩) । ଆଚାର ଦିନକର ଗ୍ରନ୍ଥରେ ଦେବୀମାନଙ୍କୁ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି । ସେମାନେ ହେଲେ ପ୍ରସାଦ ଦେବୀ, ସମ୍ପ୍ରଦାୟ ଦେବୀ, ଓ କୁଳଦେବୀ । କୁଳଦେବୀମାନେ ସାଧାରଣତଃ ତାନ୍ତ୍ରିକା ଦେବୀ । ସେମାନଙ୍କ ମଧ୍ୟରୁ କାଳୀ, କଙ୍କାଳୀ, ମହାକାଳୀ, କୁଷ୍ମାଣ୍ଡା ଜ୍ୱାଳାମୁଖୀ, କାମାକ୍ଷା, କପାଳିନୀ, ଭଦ୍ରକାଳୀ, ଦୁର୍ଗା, ଲଳିତା, ଗୌରୀ, ସୁମଙ୍ଗଳା, ରୋହିଣୀ, ତ୍ରିପୁରା, କୁରୁକୁଲ୍ଲା, ଯମଘଣ୍ଟା ଓ ଶାନ୍ତିମୁଖୀ ପ୍ରଭୃତି ପ୍ରଧାନ । (୧୪) । ହେମଚନ୍ଦ୍ରଙ୍କର 'ଅଭିଧାନ ଚିନ୍ତାମଣି' ଗ୍ରନ୍ଥରେ ରୋହିଣୀ, ପ୍ରଜ୍ଞାପ୍ତି, ବଜ୍ରଶୃଙ୍ଖଳା, ବଜ୍ରାଙ୍କୁଶା ଅପ୍ରତି ଚକ୍ରା, ପୁରୁଷଦତ୍ତା, କାଳୀ, ମହାକାଳୀ, ଗୌରୀ, ଗାନ୍ଧାରୀ, ଜ୍ୱାଳାମାଳିନୀ, ମାନବୀ, ବୈରୋଟୀ, ଅଚ୍ୟୁତା, ମାନସୀ ଓ ମହାମାନସୀ ପ୍ରଭୃତି ଷୋଡ଼ଶ ବିଦ୍ୟାଙ୍କ ନାମୋଲ୍ଲେଖ ଅଛି । ହିନ୍ଦୁଧର୍ମର ଚଉଷଠି ଯୋଗିନୀଙ୍କ ପରି ଜୈନ-ଗ୍ରନ୍ଥମାନଙ୍କରେ ମଧ୍ୟ ଚଉଷଠି ଯୋଗିନୀଙ୍କର ବର୍ଣ୍ଣନା ରହିଛି । ଜୈନଧର୍ମର ଯକ୍ଷିଣୀ ଦେବୀମାନେ ହିନ୍ଦୁ ଦେବୀମାନଙ୍କ ପରି ବହୁ ହସ୍ତ ବିଶିଷ୍ଟା । ସେମାନଙ୍କର ହସ୍ତଗୁଡ଼ିକ ନାନା ଅଳଙ୍କାରରେ ମଣ୍ଡିତ ହୋଇ ବିଭିନ୍ନ ମୁଦ୍ରାରେ ପରିଦୃଷ୍ଟ ହୁଏ । କେତେକ ଯକ୍ଷିଣୀ ଅତିସୁନ୍ଦରୀ, ମାୟାବିନୀ, ଦୟାମୟୀ ଏବଂ ଶକ୍ତି ସମ୍ପନ୍ନା । ଅନ୍ୟ କେତେକଙ୍କର ରୂପ ଦେଖିବାକୁ ଭୟଙ୍କର ଓ କଦାକାର । ଯକ୍ଷିଣୀମାନେ ଅସହାୟ ଓ ନିରୀହ ଜୀବମାନଙ୍କୁ ରକ୍ଷା କରନ୍ତି । ଦୁର୍ଗମ ପାର୍ବତ୍ୟ ଅଞ୍ଚଳ ଅଥବା ଅରଣ୍ୟମଧ୍ୟରେ ପଥଭ୍ରାନ୍ତ ଓ, ନିଃସଙ୍ଗ ତଥା ଅସହାୟ ପଥିକର ଯକ୍ଷିଣୀମାନେ ସହାୟିକା ହୋଇଥା'ନ୍ତି ବୋଲି ବିଶ୍ୱାସ କରାଯାଏ । ଅତଏବ, ଲକ୍ଷ୍ମୀ, ଏକାନଂଶା, ସୁଭଦ୍ରା, ପ୍ରଭୃତି ଦେବୀଙ୍କୁ କେତେକ ଯକ୍ଷିଣୀ ଶ୍ରେଣୀଭୁକ୍ତ କରିଥା'ନ୍ତି । ଯେଉଁ ଯକ୍ଷିଣୀମାନେ ମାୟା ରଚନା କରି ନିଜ ନିଜର କାର୍ଯ୍ୟ ସାଧନ କରିବାରେ ନିପୁଣା ସେମାନେ ମାୟାବିନୀ ନାମରେ ଆଖ୍ୟାତ । କେତେକଙ୍କ ମତରେ ରାମାୟଣୋକ୍ତ ତାଡ଼କା ଏହି ଶ୍ରେଣୀଭୁକ୍ତ । (୧୫) ।

ଯକ୍ଷମାନଙ୍କର ସମ୍ମାନାର୍ଥେ ବହୁ ଉତ୍ସବ ଅନୁଷ୍ଠିତ ହେଉଥିଲା । 'ନିଶିଥ ଚୂର୍ଣ୍ଣି'ଗ୍ରନ୍ଥରେ 'ଇନ୍ଦ୍ରମହ', 'ସ୍କନ୍ଦମହ', 'ଯକ୍ଷମହ' ଏବଂ 'ଭୂତମହ' 'ଏହିପରି ଚାରୋଟି ଉତ୍ସବ ମହାନ

ଉତ୍ସବ (ମହାମହ) ରୂପେ ବିବେଚିତ ହୋଇଛି । (୧୭) ଏହି ଉତ୍ସବ ଗୁଡ଼ିକ ଯକ୍ଷମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଏବଂ ସେଗୁଡ଼ିକ ଆଷାଢ଼, ଆଶ୍ୱିନ କାର୍ତ୍ତିକ ଏବଂ ଚୈତ୍ରମାସମାନଙ୍କରେ ଅନୁଷ୍ଠିତ ହୋଇଥାଏ । ଉକ୍ତ ଉତ୍ସବ ଗୁଡ଼ିକରେ ସାଧୁମାନଙ୍କର ସ୍ୱାଧ୍ୟାୟ ନିଷିଦ୍ଧ ହୋଇଥାଏ ।

ଇନ୍ଦ୍ରମହ ଉତ୍ସବରେ 'ଇନ୍ଦ୍ରକେତୁ' ସ୍ଥାପିତ ହୋଇ ପୂଜିତ ହୁଅନ୍ତି । କାମ୍ପିଲ୍ୟପୁରର ରାଜା ଦୁର୍ମୁଖ ମହାସମାରୋହରେ 'ଇନ୍ଦ୍ରମହ' ଉତ୍ସବ ଅନୁଷ୍ଠାନ କରିଥିବା ଜୈନ ସାହିତ୍ୟରୁ ଜଣାଯାଏ । ଦୁର୍ମୁଖଙ୍କ ନିର୍ଦ୍ଦେଶରେ ନଗରବାସୀମାନେ ଇନ୍ଦ୍ରକେତୁକୁ ଶ୍ୱେତଧ୍ୱଜପଟ, ମଣିରତ୍ନମାଳା ପ୍ରଭୃତି ଦ୍ୱାରା ସଜ୍ଜିତ କରି ସ୍ଥାପନ କରିଥିଲେ । ନର୍ତ୍ତକୀମାନଙ୍କର ବିଭିନ୍ନ ଭଙ୍ଗିରେ ନୃତ୍ୟ, ଲବ୍ଧପ୍ରତିଷ୍ଠ କବିମାନଙ୍କର କାବ୍ୟପାଠ ଐନ୍ଦ୍ରଜାଲିକ ମାନଙ୍କର ଯାଦୁ ପ୍ରଦର୍ଶନ, ବାଦ୍ୟକାରମାନଙ୍କ ମୃଦଙ୍ଗ ବାଦନ ଏବଂ କୁଙ୍କୁମ, କର୍ପୂର, ଚନ୍ଦନ, ଜଳାଦି ସେଚନ ଦ୍ୱାରା ଏହି ଉତ୍ସବ ଆନନ୍ଦ ମୁଖରିତ ହେଉଥିଲା । ଏହିପରି ଏକ ସପ୍ତାହ ଆମୋଦ ପ୍ରମୋଦରେ ଅତିବାହିତ ହେଲାପରେ ପୂର୍ଣ୍ଣିମାର ପୂର୍ଣ୍ଣ ମୁହୂର୍ତ୍ତରେ ରାଜା ଦୁର୍ମୁଖ ପୁଷ୍ପ ବସ୍ତ୍ରାଦି ଦ୍ୱାରା ଇନ୍ଦ୍ରକେତୁଙ୍କୁ ଆରାଧନା କରୁଥିଲେ । ନଗରର କୁଳ ବାଳିକାମାନେ ଏହି ଇନ୍ଦ୍ରମହୋତ୍ସବରେ ବଳି, ପୁଷ୍ପ, ଧୂପ, ଦୀପ, ଗନ୍ଧ ପ୍ରଭୃତିରେ ଇନ୍ଦ୍ରପୂଜା କରି ନିଜ ନିଜର ଯୋଗ୍ୟ ବରପାତ୍ର ପାଇଁ ପ୍ରାର୍ଥନା କରୁଥିଲେ । 'ଇନ୍ଦ୍ରମହୋତ୍ସବ' ମଧ୍ୟ ଏକ ମହାନ୍ ଉତ୍ସବ ରୂପେ ପାଳିତ ହେଉଥିଲା ।

ପ୍ରାଚୀନ କାଳରେ ଲୋକେ ପୁତ୍ର ସନ୍ତାନ ଲାଭ ଆଶାରେ ଯକ୍ଷାରାଧନ କରୁଥିଲେ । ବୈଦିକ, ଜୈନ, ଓ ବୌଦ୍ଧ ସାହିତ୍ୟରେ ଏହାର ଅନେକ ଦୃଷ୍ଟାନ୍ତ ରହିଛି । ଏ ସମ୍ପର୍କରେ 'ଧମ୍ମପଦ'ରେ ବର୍ଣ୍ଣିତ ଏକ କଥା ଉଲ୍ଲେଖଯୋଗ୍ୟ । ଏକଦା ଶ୍ରାବସ୍ତୀ ନଗରୀରେ 'ମହାସୁବର୍ଣ୍ଣ' ନାମକ ଜଣେ ଗୃହସ୍ଥ ବାସ କରୁଥିଲେ । ଥରେ ସେ ସ୍ନାନାଦି କର୍ମ ସମାପନ କରି ଗୃହକୁ ପ୍ରତ୍ୟାବର୍ତ୍ତନ କରିବା ବେଳେ ଯକ୍ଷାଧିଷ୍ଠିତ ଏକ ମହାନ୍ ବୃକ୍ଷ ଦେଖିଲେ । ମହାସୁବର୍ଣ୍ଣ ଧନଧାନ୍ୟାଦିରେ ସମୃଦ୍ଧ ଥିଲେ ମଧ୍ୟ ତାଙ୍କର ପୁତ୍ର ସନ୍ତାନ ନଥିଲା । ତେଣୁ ସେ ବୃକ୍ଷର ଚତୁଃପାର୍ଶ୍ୱ ବେଷ୍ଟନ କରି ଊର୍ଦ୍ଧ୍ୱରେ ପତାକା ଉତ୍ତୋଳନ କଲେ । ତାଙ୍କର ପୁତ୍ର ସନ୍ତାନ ଜାତ ହେଲେ ଉକ୍ତ ବୃକ୍ଷକୁ ପୂଜା କରିବେ ବୋଲି ସେ ପ୍ରତିଜ୍ଞା କରିଥିଲେ ।

'ନ୍ୟାୟାଧମ୍ମକହା'ରେ ମଧ୍ୟ ଏହିଭଳି ଏକ ଆଖ୍ୟାନର ଉଲ୍ଲେଖ ମିଳେ । ଧନ୍ୟ-ସାର୍ଥବାହ ନାମକ ଜଣେ ଗୃହସ୍ଥ ରାଜଗୃହରେ ବାସ କରୁଥିଲେ । ତାଙ୍କର ପତ୍ନୀ ବନ୍ଧ୍ୟା ଥିବା ଯୋଗୁଁ ରାଜଗୃହ ଉପକଣ୍ଠରେ ପ୍ରତିଷ୍ଠିତ ନାଗ, ଭୂତ, ଯକ୍ଷ, ଇନ୍ଦ୍ର, ସ୍କନ୍ଦ, ରୁଦ୍ର, ଶିବ ଏବଂ ବୈଶ୍ରମଣଙ୍କର ପ୍ରତିମାମାନଙ୍କୁ ସେ ଆରାଧନା କରୁଥିଲେ । ଯଦି ତାଙ୍କର ସନ୍ତାନୋତ୍ପତ୍ତି ହୁଏ ତେବେ ସେ ଏହି ପ୍ରତିମାମାନଙ୍କର ପୂଜା ଉତ୍ସବ ମହା ଆଡ଼ମ୍ବରରେ ସମ୍ପନ୍ନ କରିବେ ବୋଲି ସଙ୍କଳ୍ପ କରିଥିଲେ । ଏହାପରେ ସେ ପ୍ରତ୍ୟେକ ଅଷ୍ଟମୀ, ଚତୁର୍ଦ୍ଦଶୀ ଅମାବାସ୍ୟା ଏବଂ ପୂର୍ଣ୍ଣିମା ଦିନ ସେହି ପ୍ରତିମୂର୍ତ୍ତିମାନଙ୍କଠାରେ ଅଭିଷେକ କରିବାକୁ

ଲଗିଲେ । କଚ୍ଛୁଦନ ଅନ୍ତେ ତାଙ୍କର ମନସ୍କାମନା ପୂର୍ଣ୍ଣ ହେଲା । ସେ ସନ୍ତାନ ଲାଭ କଲେ । (୧୭) ।

ସନ୍ତାନୋତ୍ପତ୍ତି ଅଭିଳାଷ ପୂର୍ଣ୍ଣ କରିବା ସମ୍ବନ୍ଧରେ 'ହରିଣଗମେଷୀ' ବା 'ନୈଗମେଗ'ଙ୍କ ନାମ 'କଲ୍ପସୂତ୍ର'ରୁ ଜ୍ଞାତ ହୁଏ । ମଥୁରାରୁ ପ୍ରାପ୍ତ ଜୈନ ଶିଳାଲେଖରେ ହରିଣଗମେଷୀଙ୍କୁ 'ଭଗବାନେମେଷୋ' ବୋଲି କୁହାଯାଇଛି । 'ଅନ୍ତର୍ଗତ ସୂତ୍ର'ର ଷଷ୍ଠ ଅଧ୍ୟାୟରୁ ହରିଣଗମେଷୀଙ୍କ ସମ୍ପର୍କରେ ନିମ୍ନଲିଖିତ ଆଖ୍ୟାନ ଜଣାଯାଏ—

ଭଦିଲପୁରର ସୁଲସା ନାମ୍ନୀ ଏକ ଗୃହିଣୀଙ୍କର ବହୁଦିନ ପର୍ଯ୍ୟନ୍ତ ପୁତ୍ର ସନ୍ତାନ ନହେବାରୁ ସେ ଅତ୍ୟନ୍ତ ଭକ୍ତି ସହକାରେ ହରିଣଗମେଷୀଙ୍କୁ ଆରାଧନା କଲେ । ସୁଲସାଙ୍କର ପ୍ରଗାଢ଼ ଭକ୍ତିରେ ପ୍ରସନ୍ନ ହୋଇ 'ହରିଣଗମେଷୀ' ସୁଲସା ଏବଂ କୃଷ୍ଣଙ୍କର ମାତା ଦେବକୀଙ୍କୁ ଏକ ସଙ୍ଗରେ ଗର୍ଭବତୀ କରାଇଲେ । ସୁଲସା ଏବଂ ଦେବକୀଙ୍କର ଯଥାକ୍ରମେ ଏକ ମୃତ ଓ ଜୀବିତ ପୁତ୍ର ଜନ୍ମହେଲେ । ଫଳରେ ହରିଣଗମେଷୀ ସୁଲସାଙ୍କର ମୃତ ପୁତ୍ରକୁ ଦେବକୀଙ୍କୁ ଏବଂ ଦେବକୀଙ୍କର ଜୀବିତ ପୁତ୍ରକୁ ସୁଲସାଙ୍କୁ ଅର୍ପଣ କଲେ । ତତ୍ପଶ୍ଚାତ୍ କୃଷ୍ଣ ହରିଣଗମେଷୀଙ୍କୁ ଆରାଧନା କରନ୍ତେ ଦେବକୀଙ୍କର ଗଜ ସୁକୁମାଳ ନାମକ ଏକ ପୁତ୍ର ଜନ୍ମ ହୋଇଥିଲା । ସେହିପରି ଗଙ୍ଗଦତ୍ତ (୧୮) ଏବଂ ସୁଭଦ୍ରା (୧୯) ମଧ୍ୟ ଯକ୍ଷପୂଜା କରି ସନ୍ତାନ ପ୍ରାପ୍ତ ହୋଇଥିବା ଜଣାଯାଏ ।

ପୁତ୍ରୋତ୍ପତ୍ତି ବ୍ୟତୀତ ଅନ୍ୟାନ୍ୟ ଶୁଭଲକ୍ଷଣ ଓ ସୁଫଳ ନିମନ୍ତେ ମଧ୍ୟ ଯକ୍ଷାଦିଙ୍କୁ ଆରାଧନା କରାଯାଉଥିଲା । (୨୦) ଏହାର ଦୃଷ୍ଟାନ୍ତ ମିଳେ 'ନ୍ୟାୟାଧର୍ମକଥା'ର ଅଷ୍ଟମ ଅଧ୍ୟାୟରୁ । ତହିଁରେ ଉଲ୍ଲେଖ ଅଛି, ଚମ୍ପା ନଗରୀର ବଣିକମାନେ ଧନୋପାର୍ଜନ ନିମନ୍ତେ ନୌବାଣିଜ୍ୟ କରୁଥିଲେ । କିନ୍ତୁ ସମୁଦ୍ର ଯାତ୍ରା ବେଳେ ନାନା ପ୍ରକାର ପ୍ରେତ ତଥା ଭୟାନକ ଉପଦ୍ରବ ହେବାରୁ ବଣିକମାନେ ଭୀତତ୍ରସ୍ତ ହୋଇ ଇନ୍ଦ୍ର, ସ୍କନ୍ଦ, ରୁଦ୍ର, ଶିବ, ବୈଶ୍ରବଣ, ନାଗ ଭୂତ, ଯକ୍ଷ, ଆର୍ଯ୍ୟା ଏବଂ ଦୁର୍ଗାଙ୍କୁ ପ୍ରାର୍ଥନା କରି ନିର୍ବିଘ୍ନରେ ଯାତ୍ରା ସମାପନ କରୁଥିଲେ । ଯକ୍ଷ ପୂଜାକରି ରୋଗମୁକ୍ତ ହେବାର ଦୃଷ୍ଟାନ୍ତ ମଧ୍ୟ 'ନଶୀଥ ଚୂର୍ଣ୍ଣୀ' ଗ୍ରନ୍ଥରେ ରହିଛି ।

ଯକ୍ଷଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଚୈତ୍ୟ ଅଥବା ଦେବକୁଳିକା ମାନଙ୍କରେ ଛାଗଳ ବଳିଦାନ ପ୍ରଥା ଜୈନଗ୍ରନ୍ଥ ମାନଙ୍କରୁ ଜଣାପଡ଼େ, ଉଦାହରଣ ସ୍ୱରୂପ ରାଜଗୃହ ନଗରୀରେ 'ଗୁଣ ସିଲୟ' ଚମ୍ପାନଗରୀରେ 'ପୂର୍ଣ୍ଣଭଦ୍ର' ଏବଂ ଆମଲକପାରେ 'ଆମ୍ରସ ଲ-ବନ' ନାମକ ଚୈତ୍ୟ ବା ଦେବକୁଳିକାମାନ ଥିଲା । ଏହି ଚୈତ୍ୟମାନଂକ ସମ୍ମୁଖରେ ଯକ୍ଷାଧିଷ୍ଠିତ ଉଦ୍ୟାନ ମଧ୍ୟ ଥିଲା, ଯଥା .—ବାଣୀଯ୍ୟ ଗ୍ରାମ ନଗରର ସୁଧର୍ମଯକ୍ଷାଧିଷ୍ଠିତ 'ଦୁଇ ପଳାସ' ଉଦ୍ୟାନ,ମଥୁରାର ସୁଦର୍ଶନଯକ୍ଷାଧିଷ୍ଠିତ ଭଣ୍ଡିର ଉଦ୍ୟାନ ତଥା ବର୍ଦ୍ଧମାଣ ପୁରର ମଣିଭଦ୍ର ଯକ୍ଷାଧିଷ୍ଠିତ ବିଜୟ ବର୍ଦ୍ଧମାଣ ନାମକ ଉଦ୍ୟାନ । ଏହି ଯକ୍ଷାଧିଷ୍ଠିତ ଉଦ୍ୟାନ ଗୁଡ଼ିକ

ନଗରର ବହିର୍ଭାଗରେ, ପର୍ବତ ଶିଖରେ, ପୁଷ୍କରଣୀ ତଟରେ ନଗରର ଦ୍ୱାରଦେଶରେ କିମ୍ବା ନଗରର ମଧ୍ୟଭାଗରେ ଅବସ୍ଥିତ ଥିଲା । (୨୧) ।

'ଔପପାତିକ ସୂତ୍ର'ରେ ଚମ୍ପାର 'ପୂର୍ଣ୍ଣଭଦ୍ର ଚୈତ୍ୟ' ପ୍ରାଚୀନ, ଦିବ୍ୟ ଏବଂ ସୁପ୍ରସିଦ୍ଧ ରୂପେ ବର୍ଣ୍ଣିତ । ତାହା ବେଦି, ଛତ୍ର, ଧ୍ୱଜ, କଳସ ଓ ତୋରଣାଦିରେ ସଜ୍ଜିତ, ଗୋମୟରେ ଲିପ୍ତ ଏବଂ ଚନ୍ଦନ, ପୁଷ୍ପ ଧୂପ, ପ୍ରଭୃତି ଦ୍ରବ୍ୟ ସୁଗନ୍ଧିତ ହେଉଥିଲା । ଏହି ଚୈତ୍ୟ ନର୍ତ୍ତକ, ସ୍ତୋତ୍ର ପାଠକ, ମଲ୍ଲବୀର, ମୌଷ୍ଟିକ, ବିଦୂଷକ, ଜ୍ୟୋତିଷ ପ୍ରଭୃତିଙ୍କର ଆଶ୍ରୟସ୍ଥଳୀ ଥିଲା । ଜୈନ ଓ ବୌଦ୍ଧ ଭିକ୍ଷୁମାନେ ସେଠାରେ ସମବେତ ହୋଇ ଉତ୍ସବାଦି ଅନୁଷ୍ଠାନରେ ଅଂଶଗ୍ରହଣ କରୁଥିଲେ । ସେଠାରେ ଯୋଗଯଜ୍ଞାଦି କର୍ମମଧ୍ୟ ଅନୁଷ୍ଠିତ ହେଉଥିଲା । ବର୍ଦ୍ଧମାନ ମହାବୀର ପୂର୍ଣ୍ଣଭଦ୍ର ଚୈତ୍ୟ ପରିଦର୍ଶନ କରିଥିଲେ ବୋଲି 'ଉବାସଗ ଦସାଓ' (୨୨)ରୁ ଜଣାଯାଏ ।

ପୂର୍ଣ୍ଣଭଦ୍ର, ମଣିଭଦ୍ର, ଶ୍ୱେତଭଦ୍ର, ମନୁଷ୍ୟଭକ୍ଷ, ଵନାଧିପତି, ଵନାହାର, ରୂପଯକ୍ଷ, ଯକ୍ଷୋତ୍ତମ, ଇତ୍ୟାଦି ତେର ପ୍ରକାର ଯକ୍ଷଙ୍କ ନାମ 'ପ୍ରଜ୍ଞାପନା ସୂତ୍ର'ରୁ ଜ୍ଞାତହୁଏ । ଏହି ଯକ୍ଷମାନଙ୍କ ମଧ୍ୟରେ 'ପୂର୍ଣ୍ଣଭଦ୍ର ଏବଂ 'ମଣିଭଦ୍ର' ବିଖ୍ୟାତ । (୨୩) । ଜୈନଗ୍ରନ୍ଥ 'ପ୍ରତିଷ୍ଠା କଳ୍ପ'ରୁ ବିଦିତ ହୁଏ,ଯକ୍ଷ ବା ଶାସନ ଦେବତାମାନେ ଜୈନଧର୍ମର ସଂରକ୍ଷଣ ତଥା ଅଭିବୃଦ୍ଧି ସାଧନ ଦିଗରେ ସର୍ବଦା ସଚେଷ୍ଟ ରହନ୍ତି । ତେଣୁ ଜୈନମାନେ ଯକ୍ଷମାନଙ୍କୁ ଭକ୍ତିପୂର୍ଣ୍ଣ ଭାବରେ ଆରାଧନା କରନ୍ତି ।—

'ଯଯାତି ଶାସନଂ ଜୈନଂ ସଦ୍ୟଃ ପ୍ରତ୍ୟୁହନାଶିନୀ
ସାଭିପ୍ରେତ ସମୃଦ୍ଧ୍ୟର୍ଥଂ ଭୂୟାତ୍ ଶାସନ ଦେବତା ।' (୨୪)

ଏତଦ୍‌ବ୍ୟତୀତ ଜୈନ ସାହିତ୍ୟରେ ଆହୁରି ଅନେକ ଯକ୍ଷ ଓ ଯକ୍ଷିଣୀଙ୍କ ନାମୋଲ୍ଲେଖ ରହିଛି । ବାରାଣସୀର ଗଣ୍ଡିତିନ୍ଦୁଗ ଯକ୍ଷ ତିନ୍ଦୁଗ ଉଦ୍ୟାନରେ ବାସ କରୁଥିବା ବିଖ୍ୟାତ ଋଷି ମାତଙ୍ଗଙ୍କର ପ୍ରହରୀ ରୂପେ କାର୍ଯ୍ୟ କରୁଥିଲେ । (୨୫) ରାଜକୁମାରୀ ଭଦ୍ରାଙ୍କ ସହିତ ତାଙ୍କର ଯୌନ ସମ୍ପର୍କ ଥିବା ଗଣ୍ଡତିନ୍ଦୁ ଜାତକରୁ ଜଣାଯାଏ । (୨୬) ବିହେଲଗ ନାମକ ଯକ୍ଷ ଧ୍ୟାନରତ ମହାବୀରଙ୍କୁ ଆରାଧନା କରିଥିଲେ । (୨୭) । ସେହିଭଳି ସଲେହା ନାମକ ଯକ୍ଷିଣୀ ବା ବାଣମନ୍ତ୍ରୀ ମହାବୀରଙ୍କୁ ଉପାସନା କରିଥିଲେ । (୨୮) । କିନ୍ତୁ କଟପୂତନା ନାମ୍ନୀ ଯକ୍ଷିଣୀ ମହାବୀରଙ୍କ ତପସ୍ୟାରେ ବିଘ୍ନ ସୃଷ୍ଟି କରିଥିଲେ । (୨୯) ।

ଜୈନ ସାହିତ୍ୟରେ ଯକ୍ଷଗ୍ରହ ଏବଂ ତାହାର ବିବିଧ ଚିକିତ୍ସା ପ୍ରଣାଳୀର ନାନା ବିବରଣ ରହିଛି । 'ଜମ୍ବୂଦ୍ୱୀପ ପ୍ରଜ୍ଞପ୍ତି'ରେ ଅନ୍ୟ ବ୍ୟାଧିଗୁଡ଼ିକ ସହ 'ଇନ୍ଦ୍ରଗ୍ରହ','ଧନୁଗ୍ରହ', 'ସ୍କନ୍ଦ ଗ୍ରହ' 'କୁମାର ଗ୍ରହ','ଯକ୍ଷ ଗ୍ରହ',ଏବଂ ଭୂତ ଗ୍ରହର ମଧ୍ୟ ଉଲ୍ଲେଖ ରହିଛି । ଯଦି କୌଣସି ଭିକ୍ଷୁ ଭୂତଗ୍ରହର ଶିକାର ହୁଏ ତେବେ ଆମିଷୋଦକ ପାନ କରାଇବା ବିଧେୟ ବୋଲି ବିନୟ ପିଟକରେ ସୂଚିତ ହୋଇଛି । ଯଦି କୌଣସି ଯକ୍ଷ ବା ଯକ୍ଷିଣୀ ଦ୍ୱେଷଯୁକ୍ତ ଚିତ୍ତରେ ଜୈନଭିକ୍ଷୁକୁ ଅନୁସରଣ କରେ ତେବେ ଇନ୍ଦ୍ର, ସୋମ ଆଦି ମହାଯକ୍ଷ ମାନଙ୍କୁ ସ୍ମରଣ

କରିବାର ବିଧାନ 'ବିପାକଶାସ୍ତ୍ର' ରେ ରହିଛି । କୌଣସି ସାଧୁ ଯକ୍ଷାବିଷ୍ଟ ହେଲେ ତାଙ୍କୁ କାର୍ଯ୍ୟୋତ୍ସର୍ଗ ଦ୍ୱାରା ଦେବତାମାନଙ୍କୁ ପ୍ରସନ୍ନ କରାଇ ଭୂତ ଚିକିତ୍ସା କରିବା ପ୍ରୟୋଜନ ବୋଲି ଜୈନ ଗ୍ରନ୍ଥରୁ ବିଦିତ ହୁଏ । 'ପୂର୍ଣ୍ଣଭଦ୍ର', 'ମଣିଭଦ୍ର' ଆଦି ଯକ୍ଷମାନଙ୍କ ବ୍ୟତୀତ ଜୈନଗ୍ରନ୍ଥ-ମାନଙ୍କରେ ଅନ୍ୟାନ୍ୟ ଯକ୍ଷମାନଙ୍କର ମଧ୍ୟ ବିସ୍ତୃତ ବର୍ଣ୍ଣନା ମିଳେ । ତାହାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା—

'ଜୈନ ଅନ୍ତର୍ଗତ ସୂତ୍ର'ରେ 'ମୋଗ୍‌ଗରପାଣି' ଯକ୍ଷ ସମ୍ପର୍କରେ ବିବୃତ୍ତ ଏକ ଉପାଖ୍ୟାନରୁ ଜଣାଯାଏ ଯେ, ରାଜଗୃହରେ 'ଅର୍ଜ୍ଜୁନକ' ନାମକ ଏକ ମାଳାକାର ବାସ କରୁଥିଲା । ନଗର ଉପକଣ୍ଠରେ ତାହାର ଉଦ୍ୟାନଟିଏ ଥିଲା । ଉଦ୍ୟାନ ପାର୍ଶ୍ୱରେ 'ମୋଗ୍‌ଗର ପାଣି' ଯକ୍ଷାୟତନ ରହିଥିଲା । ଏହାମଧ୍ୟ 'ପୂର୍ଣ୍ଣଭଦ୍ର ଚୈତ୍ୟ' ପରି ପ୍ରାଚୀନ, ଦିବ୍ୟ ଏବଂ ସୁପ୍ରସିଦ୍ଧ । ଅର୍ଜ୍ଜୁନକର ପିତାମହ ଏହି ଯକ୍ଷମାନଙ୍କୁ ପୂଜା କରି ଆସୁଥିଲେ । ଯକ୍ଷଙ୍କର ହସ୍ତରେ ଏକ ବିଶାଳ ଲୌହ ମୁଦ୍‌ଗର ରହିଥିଲା । ଅର୍ଜ୍ଜୁନକୁ ଶୈଶବାବସ୍ଥାରୁ ହିଁ ମୋଗ୍‌ଗରପାଣିଙ୍କୁ ଭକ୍ତିଭରେ ଆରାଧନା କରୁଥିଲେ । ଦିନେ ଯକ୍ଷଙ୍କୁ ପୂଜା କରିବା ନିମନ୍ତେ ସେ ସପତ୍ନୀକ ଉଦ୍ୟାନକୁ ଯିବା ସମୟରେ ଯକ୍ଷାୟତନର ଦ୍ୱାର ଦେଶରେ ଛଅଜଣ ଦୁର୍ବୃତ୍ତ ଲୁଚି ରହିଥିଲେ । ଅର୍ଜ୍ଜୁନକ ଓ ତାହାର ପତ୍ନୀ ଯକ୍ଷାୟତନରେ ପ୍ରବେଶ କରିବା ମାତ୍ରେ ଉକ୍ତ ଖଳ ଲୋକମାନେ ଅର୍ଜ୍ଜୁନକକୁ ରଜ୍ଜୁରେ ବନ୍ଧନ କଲେ ଓ ତାହାର ପତ୍ନୀକୁ ଧର୍ଷଣ କଲେ । ତହିଁ ଅର୍ଜ୍ଜୁନକ କ୍ରୁଦ୍ଧ ହୋଇ ଯକ୍ଷକୁ ଭର୍ତ୍ସନା କରନ୍ତେ ଯକ୍ଷ ତାହାର ଶରୀରରେ ପ୍ରବେଶ କରି ଅର୍ଜ୍ଜୁନକକୁ ବନ୍ଧନ ମୁକ୍ତ କଲେ । ତଦନନ୍ତର ଯକ୍ଷାବିଷ୍ଟ ମାଳାକାର ଅର୍ଜ୍ଜୁନକ) ମୁଦ୍‌ଗର ଦ୍ୱାରା ସେହି ଦୁର୍ଜ୍ଜନଙ୍କୁ ଏବଂ ନିଜ ପତ୍ନୀକୁ ହତ୍ୟା କରିଥିଲେ ।

ସାକେତ ନଗରୀର ଉତ୍ତର ପୂର୍ବ ଦିଗରେ ଅବସ୍ଥିତ 'ସୁରପ୍ରିୟ' ନାମକ ଯକ୍ଷାୟତନ ପ୍ରତିବର୍ଷ ନାନା ରଙ୍ଗ ଓ ଚିତ୍ରରେ ରଞ୍ଜିତ ଓ ସଜ୍ଜିତ ହୋଇ ଆଡ଼ମ୍ବରମୟ ପୂଜା-ପାର୍ବଣରେ ଚିତ୍ତାକର୍ଷକ ହେଉଥିଲା । ଏହି ଯକ୍ଷାୟତନକୁ ଚିତ୍ରିତ ଏବଂ ରଙ୍ଗାର୍ପିତ କରୁଥିବା ଚିତ୍ରକର ସେହି ଯକ୍ଷ (ସୁରପ୍ରିୟ) ଦ୍ୱାରା ନିହତ ହେଉଥିଲା । ପୁନଶ୍ଚ ଯକ୍ଷାୟତନଟି ଚିତ୍ରିତ ହେଉନଥିଲେ ରାଜ୍ୟବାସୀ ମହାମାରୀରେ ଆକ୍ରାନ୍ତ ହେଉଥିଲେ । ଫଳତଃ ସାକେତ ନଗରୀର ଚିତ୍ରକର ମାନେ ଭୀତତ୍ରସ୍ତ ହୋଇ ନଗର ତ୍ୟାଗ କରି ଅନ୍ୟତ୍ର ବସବାସ କଲେ । ଏହା ରାଜାଙ୍କ ପାଇଁ ଏକ ସମସ୍ୟା ହେଲା । କିଛିକାଳ ଅନ୍ତେ ରାଜା ଅତ୍ୟନ୍ତ ଚତୁରତାର ସହିତ ସମସ୍ତ ଚିତ୍ରକର ମାନଙ୍କୁ ଏକତ୍ରିତ କରି ଏବଂ ସେମାନଙ୍କର ନାମ କେତେକ ତାଳ-ପତ୍ରରେ ଲେଖି ଏକ ପାତ୍ର ମଧ୍ୟରେ ରଖିଲେ । ପ୍ରତିବର୍ଷ ସେହି ପାତ୍ରରୁ ତାଳପତ୍ର ଗୁଡ଼ିକୁ ବାହାର କରି କ୍ରମାନ୍ୱୟରେ ଯେଉଁ ଚିତ୍ରକରର ନାମ ବାହାରିଲା, ତା'କୁ ଯକ୍ଷାୟତନକୁ ଚିତ୍ରଣ ଓ ନାନା ରଙ୍ଗରେ ଲେପନ କରିବା'କୁ ବାଧ୍ୟ କରାଗଲା । ଏକଦା କୌଶାମ୍ବୀ

(ଆଲ୍ଲାବାଦ ଠାରୁ ୫୭ କିଲୋମିଟର ଦୂରରେ ଦକ୍ଷିଣ ପଶ୍ଚିମରେ ଯମୁନା ନଦୀ କୂଳରେ ଅବସ୍ଥିତ ଆଧୁନିକ କୋଶମ୍) ନଗରୀର ଏକ ଚିତ୍ରକର ପୁତ୍ର ଗୃହରୁ ପଳାୟନ କରି ସାକେତ ନଗରୀର ଏକ ଚିତ୍ରକର ନିକଟରେ ଆଶ୍ରୟ ନେଇଥିଲା । ଯୋଗକୁ ସେହି ବର୍ଷ ଯକ୍ଷାୟତନକୁ ଚିତ୍ରଣ କରିବାର ପାଳି ତାହାର ଆଶ୍ରୟଦାତାଙ୍କ ପଡ଼ିଲା । ଅତଏବ ଚିତ୍ରକରର ପତ୍ନୀ ଏବଂ ବୃଦ୍ଧାମାତା ଦୁଃଖିତ ହେବାରୁ କୌଶାମ୍ବୀର ଚିତ୍ରକର ପୁତ୍ର ସେମାନଙ୍କୁ ଆଶ୍ୱାସନା ଦେଇ ସ୍ୱୟଂ ଚିତ୍ରଣ କରିବା ନିମନ୍ତେ ପ୍ରସ୍ତୁତ ହେଲା । ସେ ଶୁଭ୍ର ବସ୍ତ୍ର ପରିଧାନ ପୂର୍ବକ ଯକ୍ଷାୟତନକୁ ଚିତ୍ରଣ କରିବାକୁ ଲାଗିଲା । ସେ ଯକ୍ଷଙ୍କ ପାଦ ବନ୍ଦନା କରି ସ୍ୱୀୟ ପୂର୍ବକୃତ ପାପ ପାଇଁ କ୍ଷମାଭିକ୍ଷା କଲା । ଏହି ବାଳକର ଭକ୍ତିରେ ପ୍ରସନ୍ନ ହୋଇ ଯକ୍ଷ ତାକୁ ଏକ ବର ମାଗିବାକୁ ନିର୍ଦ୍ଦେଶ ଦେବାରୁ ଚିତ୍ରକର ପୁତ୍ର କହିଲା —"ହେ ଯକ୍ଷ ! ଆପଣ ମାନବ ସମାଜର ବିନାଶ କରନ୍ତୁ ନାହିଁ ।" ଯକ୍ଷ ଉତ୍ତର ଦେଲେ — "ହେ ବାଳକ ! ମୁଁ ଅଧୁନା କାହାର ବିନାଶ କରୁନାହିଁ । ସୁତରାଂ ତୁମେ କୌଣସି ବର ମାଗିପାର ।" ଚିତ୍ରକର ପୁତ୍ର କହିଲା, "ମୁଁ ଦ୍ୱିପଦ, ଚତୁଷ୍ପଦ ଆଦି ପ୍ରାଣୀ ମାନଙ୍କର ଗୋଟିଏ ପାର୍ଶ୍ୱକୁ ଦେଖି ସେମାନଙ୍କର ପୂର୍ଣ୍ଣାବୟବ ଚିତ୍ର ଅଙ୍କନ କରିବାକୁ ଯେପରି ସମର୍ଥ ହେବି ସେହିଭଳି ଏକ ବର ପ୍ରଦାନ କରନ୍ତୁ ।" ଯକ୍ଷ ବାଳକର ମନସ୍କାମନା ପୂର୍ଣ୍ଣ କରିଥିଲେ । ଉପର୍ଯ୍ୟୁକ୍ତ କଥାଟି 'ଆବଶ୍ୟକ ହରିଭଦ୍ର ବୃତ୍ତି' ରେ ଲିଖିତ ହୋଇଛି ।

'ଆବଶ୍ୟକ ଚୂର୍ଣ୍ଣି' ଆଦି ଗ୍ରନ୍ଥରେ 'ଭଣ୍ଡିର ଯକ୍ଷ' ର ଉଲ୍ଲେଖ ରହିଛି । ମଥୁରା ନଗରୀରେ 'ଭଣ୍ଡିର ଯକ୍ଷ'ର ମାହାତ୍ମ୍ୟ ଥିଲା । ସେଠାରେ 'ଭଣ୍ଡିର ଯକ୍ଷ'ଙ୍କ ପୂଜା ଉତ୍ସବ ଜାକ ଜମକରେ ପାଳିତ ହେଉଥିଲା । (୩୦) । ମଥୁରାରେ ଏକ ଯକ୍ଷ ଗୁମ୍ଫା ମଧ୍ୟ ଥିବାର ପ୍ରମାଣ ମିଳେ । (୩୧) । ଏହି ଗୁମ୍ଫାରେ ଆର୍ଯ୍ୟରକ୍ଷିତ ଆଚାର୍ଯ୍ୟ କିଛି କାଳ ଅତିବାହିତ କରୁଥିବା ଜଣାଯାଏ । —

"ଅଥାର୍ଯ୍ୟ ରକ୍ଷିତାଚାର୍ଯ୍ୟାଃ
ମଥୁରା ନଗରୀ ଗତାଃ ।
ତତ୍ର ଯକ୍ଷ ଗୁହାୟାଂଚ
ବ୍ୟନ୍ତରାୟତନେ ସ୍ଥିତାଃ ॥ (୩୨) ।

ମଥୁରାବାସୀମାନେ 'ଭଣ୍ଡି ଯକ୍ଷ' ର ସ୍ମୃତି ରକ୍ଷା ନିମନ୍ତେ ଭଣ୍ଡିରବଟ' ଭଣ୍ଡିର ଭଣ୍ଡି ସହି ଚୈତ୍ୟ', ଭଣ୍ଡିର ଭଣ୍ଡି ସହ ଉଦ୍ୟାନ', 'ଭଣ୍ଡିର ବନ' ଆଦି ସ୍ମାରକମାନ ପ୍ରତିଷ୍ଠା କରିଥିଲେ । ଏବେ ମଧ୍ୟ ବିଭିନ୍ନ ପର୍ବପର୍ବାଣୀରେ ବହୁ ତୀର୍ଥଯାତ୍ରୀ ସେଠାରେ ସମବେତ ହୁଅନ୍ତି ।

ମାନବ ରୂପୀ ଯକ୍ଷମାନଙ୍କ ସମ୍ବନ୍ଧରେ କେତେକ ବିବରଣୀ ନିମ୍ନଲିଖିତ ଜୈନ ଗ୍ରନ୍ଥମାନଙ୍କରୁ ମିଳେ ।

'ଉତ୍ତରାଧ୍ୟୟନ ଚୂର୍ଣ୍ଣି'(୩୩)ରୁ ଜଣାଯାଏ, ଜଣେ ବ୍ରାହ୍ମଣର ଏକ ରୂପବତୀ କନ୍ୟା ଥିଲା । ବ୍ରାହ୍ମଣ ନିଜ କନ୍ୟା ପ୍ରତି ପ୍ରେମାସକ୍ତ ହୋଇ ତାହାର ସାନ୍ନିଧ୍ୟ ଲାଭ କରିବା ନିମନ୍ତେ ଏକ ବ୍ରାହ୍ମଣୀକୁ ଦୂତୀ ରୂପରେ ତାହା ନିକଟକୁ ପ୍ରେରଣ କଲା । ବ୍ରାହ୍ମଣୀ କୌଶଳରେ ବ୍ରାହ୍ମଣ କନ୍ୟାକୁ କହିଲା, ଆମ କୁଳରେ କନ୍ୟାମାନଙ୍କୁ ଯକ୍ଷ ଉପଭୋଗ କରିବାର ପରମ୍ପରା ଅଛି । ତେଣୁ ଯକ୍ଷ ତୋ ନିକଟକୁ ଆସିଲେ ତୁ ତାଙ୍କୁ ସସମ୍ମାନେ ସ୍ୱାଗତ କରିବୁ । ଯକ୍ଷ ରାତିରେ ସମସ୍ତଙ୍କର ଅଲକ୍ଷରେ, ଆଗମନ କରୁଥିବାରୁ ତୁ ଦୀପ ଜାଳିବୁ ନାହିଁ । ଚତୁର ଦ୍ୱିଜା କନ୍ୟା ପ୍ରକୃତ ଘଟଣା ଅବଲୋକନ କରିବା ନିମନ୍ତେ ଘଟରେ ଏକ ପ୍ରଦୀପ ଜାଳି ତାକୁ ଏକ ମାଟି ପାତ୍ରରେ ଘୋଡ଼ାଇ ରଖିଲା । ନିର୍ଦ୍ଦିଷ୍ଟ ସମୟରେ ଯକ୍ଷ ଆସିଲାରୁ ସେ ମାଟିପାତ୍ରଟି ଉଠାଇ ଦୀପାଲୋକରେ ଯକ୍ଷରୂପୀ ନିଜର ପିତାଙ୍କୁ ଚିହ୍ନି ପାରିଲା । ଏବଂ ନିଜକୁ ରକ୍ଷା କରିପାରିଲା । ଏହିପରି ଦୁରାତ୍ମା ବ୍ରାହ୍ମଣର ଅଭିଳାଷ ପୂର୍ଣ୍ଣ ହୋଇପାରିଲା ନାହିଁ ।

'କୁମାରପାଳ ପ୍ରତିବୋଧ' ଗ୍ରନ୍ଥରେ ମଧ୍ୟ ମନୁଷ୍ୟରୂପୀ ଯକ୍ଷମାନଙ୍କର ଉଲ୍ଲେଖ ରହିଛି । 'ବ୍ୟବହାର ସୂତ୍ର'ରେ ଦଣ୍ଡନୀତି ଅର୍ଥ ଶାସ୍ତ୍ରରେ ନିପୁଣ ଯକ୍ଷମାନଙ୍କର ବର୍ଣ୍ଣନା ରହିଛି । ସେମାନେ ଲାଞ୍ଚମିଛ ଆଦିକୁ ପ୍ରଶ୍ରୟ ଦେଉନଥିଲେ କିମ୍ବା କୌଣସି ଦୁର୍ନୀତିଗ୍ରସ୍ତ ବ୍ୟକ୍ତିକୁ ସମର୍ଥନ କରୁନଥିଲେ । (୩୪)

ବୈଦିକ ଏବଂ ବୌଦ୍ଧ ସାହିତ୍ୟରେ ଯକ୍ଷଙ୍କୁ ଦେବତା ତୁଲ୍ୟ ପୂଜା କରିବା ପାଇଁ ବିଧାନ ଅଛି । (୩୫) । 'ସ୍ଥାନାଙ୍ଗ ସୂତ୍ର'ରେ ବର୍ଣ୍ଣିତ ଆଠଗୋଟି ବ୍ୟନ୍ତରଦେବଙ୍କର ଚୈତ୍ୟ ବୃକ୍ଷର ନାମ ହେଲା— ପିଶାଚ (କଦମ୍ବ), ଯକ୍ଷ (ବଟ), ଭୂତ (ତୁଳସୀ), ରାକ୍ଷସ (କଣ୍ଡକ), କିନ୍ନର (ଅଶୋକ), କିଂପୁରୁଷ (ଚମ୍ପକ), ଭୁଜଙ୍ଗ (ନାଗବୃକ୍ଷ) ଏବଂ ଗନ୍ଧର୍ବ (ତେନ୍ଦୁ) । ବର୍ତ୍ତମାନ ମଧ୍ୟ ଅନେକ ବଟ ତୁଳସୀ ବୃକ୍ଷକୁ ଯକ୍ଷାଧିଷ୍ଠିତ ମାନି ପୂଜାକରନ୍ତି । ନାଗବଂଶ ପରି ଯକ୍ଷମାନଙ୍କର ମଧ୍ୟ ଏକ ବଂଶ ଥିଲା । ଭୟାନକ ହୋଇଥିବାରୁ ସମ୍ଭବତଃ ଜନସାଧାରଣ ଯକ୍ଷମାନଙ୍କୁ ଭୟରେ ଭକ୍ତି କରିବାକୁ ଲାଗିଲେ ।

ଭାରତର ବିଭିନ୍ନ ଅଞ୍ଚଳରୁ ଆବିଷ୍କୃତ ପ୍ରାଚୀନ ମୂର୍ତ୍ତିଗୁଡ଼ିକ ମଧ୍ୟରେ ବହୁ ପ୍ରାଚୀନତମ ଯକ୍ଷମୂର୍ତ୍ତିମାନ ଦେଖିବାକୁ ମିଳେ । ଏହି ଯକ୍ଷ ମୂର୍ତ୍ତିଗୁଡ଼ିକ ପ୍ରଥମେ କାଠରେ ତିଆରି ହେଉଥିଲା । କ୍ରମଶଃ ସେଗୁଡ଼ିକ ହାତୀଦାନ୍ତ ଓ ପ୍ରସ୍ତରରେ ମଧ୍ୟ ନିର୍ମିତ ହେଲା । (୩୬) । ଓଡ଼ିଶାର ଭୁବନେଶ୍ୱର ନିକଟବର୍ତ୍ତୀ ଶିଶୁପାଳଗଡ଼, ଧଉଳୀ, ଖଣ୍ଡଗିରି, 'ଦୁମ୍ ଦୁମା' ଏବଂ ବ୍ରହ୍ମେଶ୍ୱର ନିକଟରୁ ବହୁ ଯକ୍ଷ ମୂର୍ତ୍ତି ଆବିଷ୍କୃତ ହୋଇଛି । ଖଣ୍ଡଗିରି ଓ ଉଦୟଗିରିର ଅଦୂରବର୍ତ୍ତୀ ଜାଗମରା ନିକଟସ୍ଥ ଦୁମ ଦୁମା ଗ୍ରାମରୁ ତିନୋଟି ଯକ୍ଷମୂର୍ତ୍ତି ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଦ୍ୱାରା ସଂଗୃହିତ ହୋଇଛି । (୩୭) । ଏହି ମୂର୍ତ୍ତି ଓ ସାଞ୍ଚିର ଯକ୍ଷ ମୂର୍ତ୍ତି ମଧ୍ୟରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । (୩. ) । ତା ଛଡ଼ା ପ୍ରସ୍ତୁତ ପ୍ରବନ୍ଧର ଲେଖକ ଅଶୋକ

କୁମାର ରଥ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କ୍ୟୁରେଟର ଥିବାବେଳେ ୧୯୬୩ ମସିହାରେ ଭୁବନେଶ୍ୱରର ବଡ଼ଗଡ଼ ଓ ସ୍ୱପ୍ନେଶ୍ୱର ମନ୍ଦିର ନିକଟବର୍ତ୍ତୀ ଅଞ୍ଚଳରୁ ଦୁଇଟି ଯକ୍ଷ ମୂର୍ତ୍ତି ସଂଗ୍ରହ କରିଥିଲେ । ତାହା ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । ଉଦୟଗିରିର ରାଣୀ ଗୁମ୍ଫା ଏବଂ ଖଣ୍ଡଗିରିର ନବମୁନି, ବାରଭୁଜ, ମହାବୀର, ଜୟବିଜୟା ଏବଂ ଲଲାଟେନ୍ଦୁ କେଶରୀ ଗୁମ୍ଫା ଗୁଡ଼ିକରେ ଜୈନ ତୀର୍ଥଙ୍କର ଏବଂ ସେମାନଙ୍କ ଶାସନ ଦେବତା (ଯକ୍ଷ) ଏବଂ ଶାସନ ଦେବୀ (ଯକ୍ଷିଣୀ)ଙ୍କ ମୂର୍ତ୍ତି ଖୋଦିତ ହୋଇଛି । ବିଶେଷତଃ ବାରଭୁଜ ଗୁମ୍ଫାରେ ୨୪ ଜଣ ତୀର୍ଥଙ୍କର ଏବଂ ସେମାନଙ୍କ ଶାସନ ଦେବୀ (ଯକ୍ଷୀ)ଙ୍କ ପ୍ରତିମା ଦେଖିବାକୁ ମିଳେ (୩୯) । ଜୟ-ବିଜୟ ଗୁମ୍ଫାର ଦ୍ୱାରରେ ଖୋଦିତ ଯକ୍ଷ ଯକ୍ଷିଣୀମୂର୍ତ୍ତି ସହିତ ଆନ୍ଧ୍ରପ୍ରଦେଶର ଅମରାବତୀ ଏବଂ ନାଗାର୍ଜ୍ଜୁନ କୋଣ୍ଡାର ଯକ୍ଷ ଓ ଯକ୍ଷିଣୀ ମୂର୍ତ୍ତିର ସାଦୃଶ୍ୟ ପରିଲକ୍ଷିତ ହୁଏ । ପ୍ରାଚୀ ଅବବାହିକାର ଲତାହରଣ ଗ୍ରାମରେ ନୀଳ ମୁଗୁନି ପଥରର ଏକ ଫଳକରେ ଯଥାକ୍ରମେ ଗୋମେଧ ଏବଂ ଅମ୍ବିକାନାମକ ଯକ୍ଷ ଓ ଯକ୍ଷିଣୀଙ୍କ ଯୁଗଳମୂର୍ତ୍ତି ଲଳିତାସନରେ ଖୋଦିତ ହୋଇଛି । (୪୦) । ଏହା ବ୍ୟତୀତ କେନ୍ଦୁଝର ଜିଲ୍ଲାର ପୋଡ଼ାସିଙ୍ଗିଡ଼ି, ବାଲେଶ୍ୱର ଜିଲ୍ଲାର ଅଯୋଧ୍ୟା, କୋରାପୁଟ ଜିଲ୍ଲାର ଭୈରବସିଂହପୁର ଏବଂ ଖଣ୍ଡଗିରି ଗୁମ୍ଫାରେ ମଧ୍ୟ ଗୋମେଧ ଏବଂ ଅମ୍ବିକାଙ୍କ ମୂର୍ତ୍ତି ଦେଖିବାକୁ ମିଳେ ।(୪୧)ବାଣପୁର ନିକଟବର୍ତ୍ତୀ ଅଚ୍ୟୁତରାଜପୁରରୁ ମଧ୍ୟ କେତେକ ବ୍ରୋଞ୍ଜ ନିର୍ମିତ ଯକ୍ଷ ଯକ୍ଷିଣୀ ମୂର୍ତ୍ତି ଆବିଷ୍କୃତ ହୋଇଛି । (୪୨) । ବଲାଙ୍ଗୀର ଜିଲ୍ଲାରେ ଅବସ୍ଥିତ ସୋନପୁର ପାର୍ଶ୍ୱବର୍ତ୍ତୀ ତେଲ ଓ ମହାନଦୀର ସଂଗମସ୍ଥଳ ନିକଟରେ ଅବସ୍ଥିତ ଝୁମରଗଡ଼ରୁ ଏକ ଯକ୍ଷିଣୀ ପ୍ରତିମା ମିଳିଛି । ୧୨ ସେଣ୍ଟିମିଟର ଉଚ୍ଚତା ବିଶିଷ୍ଟ ଏହି ପ୍ରତିମାଟି କର୍ଣ୍ଣକୁଣ୍ଡଳ, କଣ୍ଠହାର, କଙ୍କଣ, ବାହୁବଳୟ, କଟିମେଖଳା ଆଦି ଅଳଙ୍କାରରେ ଭୂଷିତ । ବାମ ଓ ଡାହାଣ ହସ୍ତରେ ଯଥାକ୍ରମେ ରତ୍ନଥାଳୀ ଓ ମୁଦ୍‌ଗର ରହିଛି ।(୪୩) । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ପ୍ରାପ୍ତ ଯକ୍ଷ ମୂର୍ତ୍ତି ଗୁଡ଼ିକ ଖର୍ବକାୟ ଓ ପୃଥୁଳାକୃତି ଉଦର ସମ୍ପନ୍ନ ମନୁଷ୍ୟ ମୂର୍ତ୍ତି । ଯକ୍ଷିଣୀ ମୂର୍ତ୍ତି ଗୁଡ଼ିକର ବେଶଭୂଷା ଅଦ୍ଭୁତଧରଣର । ସେମାନଙ୍କର ହସ୍ତ ଓ ବାହୁରେ ଯେଉଁ ସ୍ଥୂଳ ବଳୟ ଦେଖାଯାଏ ତାହା ଅନ୍ୟାନ୍ୟ ମୂର୍ତ୍ତିରେ ପ୍ରାୟ ଦୃଷ୍ଟ ହୁଏନାହିଁ । ବଳୟ ପରି ହାର ଓ କଣ୍ଠଭୂଷା ମଧ୍ୟ ସ୍ଥୂଳ ଓ ମସୃଣତାହୀନ ।

ଚବିଶ ତୀର୍ଥଙ୍କର ଏବଂ ତାଙ୍କର ଶାସନ ଦେବ (ଯକ୍ଷ) ଓ ଶାସନ ଦେବୀ (ଯକ୍ଷିଣୀ)ଙ୍କ ନାମ କ୍ରମରେ ପ୍ରଦତ୍ତ ହେଲା—

| ତୀର୍ଥଙ୍କର | | ଶାସନଦେବ | | ଶାସନଦେବୀ |
|---|---|---|---|---|
| ୧. ଋଷଭନାଥ | ...... | ଗୋମୁଖ | ... | ଚକ୍ରେଶ୍ୱରୀ |
| ୨. ଅଜିତନାଥ | ...... | ମହାଯକ୍ଷ | ... | ରୋହିଣୀ |
| ୩. ସମ୍ଭବନାଥ | | ତ୍ରିମୁଖ | ... | ପ୍ରଜ୍ଞପ୍ତି |

| | | |
|---|---|---|
| ୪. ଅଭିନନ୍ଦନନାଥ | ଯକ୍ଷେଶ୍ୱର | ବଜ୍ରଶୃଙ୍ଖଳ |
| ୫. ସୁମତିନାଥ | ତୁମ୍ବୁରୁ | ପୁରୁଷଦତ୍ତା |
| ୬. ପଦ୍ମପ୍ରଭ | କୁସୁମ | ମନୋବେଗା |
| ୭. ସୁପାର୍ଶ୍ୱନାଥ | ମାତଙ୍ଗ | କାଳି |
| ୮. ଚନ୍ଦ୍ରପ୍ରଭ | ବିଜୟ | ଜ୍ୱାଳାମାଳିନୀ |
| ୯. ସୁବିଧିନାଥ (ପୁଷ୍ପଦନ୍ତ) | ଅଜିତ | ମହାକାଳି |
| ୧୦. ଶୀତଳନାଥ | ବ୍ରହ୍ମା | ମାନବୀ |
| ୧୧. ଶ୍ରେୟାଂଶନାଥ | ଈଶ୍ୱର | ଗୌରୀ |
| ୧୨. ବାସୁପୂଜ୍ୟ ...... | କୁମାର | ଗାନ୍ଧାରୀ |
| ୧୩. ବିମଳନାଥ | ଷେଣମୁ ...... | ବୈରୋଟୀ |
| ୧୪. ଅନନ୍ତନାଥ | ପାତାଳ ...... | ଅନନ୍ତମତୀ |
| ୧୫. ଧର୍ମନାଥ | କିନ୍ନର | ମାନସୀ |
| ୧୬. ଶାନ୍ତିନାଥ ... | କିଂପୁରୁଷ | ମହାମାନସୀ |
| ୧୭. କୁନ୍ଥନାଥ ...... | ଗନ୍ଧର୍ବ | ବିଜୟା |
| ୧୮. ଅରନାଥ | ଯକ୍ଷେନ୍ଦ୍ର | ତାରା |
| ୧୯. ମଲ୍ଲିନାଥ | କୁବେର | ଅପରାଜିତା |
| ୨୦. ମୁନିସୁବ୍ରତ | ବରୁଣ | ବହୁରୂପିଣୀ |
| ୨୧. ନମିନାଥ ... | ଭୃକୁଟୀ | ଚାମୁଣ୍ଡା |
| ୨୨. ନେମିନାଥ | ସର୍ବାହ୍ନ | ଅମ୍ବିକା |
| ୨୩. ପାର୍ଶ୍ୱନାଥ | ଧରଣେନ୍ଦ୍ର | ପଦ୍ମାବତୀ |
| ୨୪. ମହାବୀର | ମାତଙ୍ଗ | ସିଦ୍ଧାୟିକା |

ଜୈନ ସାହିତ୍ୟରେ ଯକ୍ଷ, ଯକ୍ଷାୟତନ-ତଥା ଯକ୍ଷ ପୂଜାନୁଷ୍ଠାନର ବିସ୍ତୃତ ବିବରଣୀ ଏବଂ ଓଡ଼ିଶା ତଥା ଭାରତର ବିଭିନ୍ନ ଅଞ୍ଚଳରୁ ପ୍ରାପ୍ତ ଯକ୍ଷ-ଯକ୍ଷିଣୀ ପ୍ରତିମାମାନଙ୍କରୁ ପ୍ରାଚୀନ ଭାରତରେ ଯକ୍ଷମାନଙ୍କର ସ୍ଥାନ ଏବଂ ଯକ୍ଷ ପୂଜାର ପରମ୍ପରା ମହତ୍ତ୍ୱପୂର୍ଣ୍ଣ ଥିବା ପ୍ରମାଣିତ ହୁଏ ।

**ପାଦଟୀକା :**

୧. ଅର୍ଯ୍ୟଶୂର, ଜାତକମାଳା, ୧୯୫୯, ପୃ ୪୪

୨. K.C. Jain, Lord Mahavira and his times, p 191.

୩. ମହାଭାରତ, ବନପର୍ବ ଅନୁଚ୍ଛେଦ—୩ ଶ୍ଳୋକ ୧୦.

୪. E B. Cowell, Jataka II, 127.

୫· ସମ୍ମୁକ୍ତ ନକାସ୍ମ, p ୨୦୭; ସ୍ତ୍ରଭନପାଠ, ୨ ୯୫ ।

୬· ଝଙ୍କାର, ୧୦ମ ସଖ୍ୟା, ଜାନୁଆରୀ ୧୯୮୮, ପୃ ୯୧୩-୯୧୮ ।

୭· ବାମନ ପୁରାଣ—ଅଧ ୭, ପୃ ୪୫-୫୫;
ଅଗ୍ନିପୁରାଣ, ଅଧ-୫୦, ପୃ ୯୮ ।

୮· U P. Shah, Yaksha worship in Early Jaina Literature', Journal of Oriental Institute, vol III, No I, pp 55.

୯ A K Chatterjee, "Early Jainism and Yaksha worship", Journal of Ancient Indian History, vol V III, parts I and II, pp 317-325, edited by Dr. D C. Surcar.

୧୦. Nyaya Dhamma Kahao, Para 152

୧ . K C. Jain. Lord Mahavira and his times p 192

୧୨. ଜମ୍ବୁଦ୍ୱୀପପ୍ରଜ୍ଞପ୍ତି, ଶ୍ଳୋକ ୨୧-୨୩ ।

୧୩· ନବୀନକୁମାର ସଣ୍ଡା ଓଡ଼ିଶାରେ ଧର୍ମଧାରା ପୃ ୮, କଟକ, ୧୯୮୨ ।

୧୪· N·N· Bhattacharya Indian Mother Goddess, pp 109-110

୧୫· ହରିବଂଶ, ଶ୍ଳୋକ ୧୦୮, ୩୭-୩୯, ପୃ ୭୫୦ ।

୧୬ ନଶୀଥ ଚୂର୍ଣ୍ଣୀ, ଦ୍ୱିତୀୟ ଅଧ୍ୟାୟ, ପୃ ୨୦୦ ।

୧୭ ବ୍ୟାଖ୍ୟାଧର୍ମ କଥା. ଦ୍ୱିତୀୟ ଅଧ୍ୟାୟ, ପୃ ୪୯ ।

୧୮. ଭଗବତୀ ସୂତ୍ର, ସପ୍ତମ ଅଧ୍ୟାୟ. ପୃ ୪୯ ।

୧୯ ଆବଶ୍ୟକ ଚୂର୍ଣ୍ଣୀ ଦ୍ୱିତୀୟ ଅଧ୍ୟାୟ, ପୃ ୧୯୩ ।

୨୦. ବିପାକସୂତ୍ର ପୃ ୨୪୪-୨୪୮ ।

୨୧ ନଶୀଥଚୂର୍ଣ୍ଣୀ, ଦ୍ୱିତୀୟ ଅଧ୍ୟାୟ, ପୃ ୭୦୨ ।

୨୨. K C. Jain, Lord Mahavira and his times, p 325.

୨୩. ବ୍ୟବହାର ଭାଷ୍ୟ, ଭାଗ ୩, ପୃ ୧୩୨; K.A. Coomarasvami, Yakshas, pp 13-23

୨୪ ପ୍ରତିଷ୍ଠା କଳ୍ପ, ପୃ ୩୦ ।

୨୫ ଉତ୍ତରାଧ୍ୟୟନ ସୂତ୍ର, ପୃ ୧୨ ।

୨୬· ଗଣ୍ଡତନ୍ଦୁ ଜାତକ, ସଖ୍ୟା ୫୨୦; Lord Mahavira and his times, p 191

୨୭. ଆବଶ୍ୟକ ନିର୍ଯୁକ୍ତି, ପୃ. ୪୮୬.

୨୮. ଆବଶ୍ୟକ ଚୂର୍ଣ୍ଣୀ, ପୃ. ୨୯୪

୨୯. ଆବଶ୍ୟକ ଚୂର୍ଣ୍ଣୀ, ପୃ. ୨୯୦; ଅଯୋଘର ଜାତକ, ସ. ୪୯୧, ଶ୍ଳୋକ ୫୧୦.

୩୦. ଆବଶ୍ୟକ ଚୂର୍ଣ୍ଣୀ, ଦ୍ୱିତୀୟ ଅଧ୍ୟାୟ, ପୃ. ୨୮୧

୩୧. V.A. Smith Jaina Stupa and other antiquities of Mathura, pp. 12 ff, Second Edition, 1969 (Delhi)

୩୨. ଅଭିଧାନ ରାଜେନ୍ଦ୍ର କୋଷ

୩୩. ଉତ୍ତରାଧ୍ୟୟନ ଚୂର୍ଣ୍ଣୀ, ପୃ. ୮୧

୩୪. K.C. Jain, Lord Mabavira and his times, P. 192.

୩୫. ବୌଦ୍ଧ ସାହିତ୍ୟରେ ୩୦ ରୁ ଅଧିକ ଯକ୍ଷଙ୍କର ନାମୋଲ୍ଲେଖ ଅଛି ।

G.D. Malalasekhara, Dictionary of Pali proper names; ଖୁଦ୍ଦକପାଠ, ପୃ. ୨୦୮.

୩୬. ବ୍ୟବହାର ଭାଷ୍ୟ, ୪, ୧-୧୮; ବୃହତ୍ ଭାଷ୍ୟ ୧-୨୪୬୧

୩୭. Dr.K.C. Panigrahi, Archaeological Remains at Bhubaneswar, pp. 202, 203, 207

୩୮. Sir John Marshall, The monuments of sanchi, vol II, plates LVII and LIX.

୩୯. Mrs. Debala Mitra, Sasanadevisd in the Khandagiri Caves, J.A.S, vol I, No 2, 1959, pp. 127-133.

୪୦. G.S.Das, Prachi Valley Report, Chapter III, P.K. Ray, Prachi Valley Report (Edited) pp. 45-60

୪୧. R. p. Mahapatra, Jaina Monuments of Orissa, pp.72-133.

୪୨. Mrs-Debala, Mitra Bronzes from Achyutrajpur, pp. 45–48, Delhi, 1978,

୪୩. ଶ୍ରୀ ପ୍ରସନ୍ନକୁମାର ଶ୍ରେଷ୍ଠରତ୍ନ ଓ ଶ୍ରୀ କମଳାକାନ୍ତ ଖୁଣ୍ଟିଆ, 'ଅସୁରଗଡ଼ର ଯକ୍ଷଣୀ ଓ ଯକ୍ଷ ପୂଜାର ପରମ୍ପରା, ଝଙ୍କାର, ୩୯ଶ ବର୍ଷ, ୧୦ମ ସଂଖ୍ୟା, ମକର ୧୩୯୫ ସାଲ୍, ଜାନୁଆରୀ ୧୯୮୮, ପୃ ୯୧୭.

।O।

'ଓଁ ନମୋ ଯକ୍ଷାୟ'

# ଏକାଦଶ ଅଧ୍ୟାୟ

## ମନ୍ଦିର ଓ ମୂର୍ତ୍ତିମାନଙ୍କର ଉତ୍ପତ୍ତି

ଭାରତ ବର୍ଷ ଅଥବା ଯେ କୌଣସି ଦେଶରେ ମୂର୍ତ୍ତିପୂଜା ଏବଂ ମନ୍ଦିରର ଉତ୍ପତ୍ତି ଏକ ସଙ୍ଗରେ ହୋଇନଥିଲା ବୋଲି ଡକ୍ଟର ପ୍ରସନ୍ନକୁମାର ଆଚାର୍ଯ୍ୟ (୧) ମତବ୍ୟକ୍ତ କରିଛନ୍ତି । 'ଦେବ ପୂଜନ' ଶବ୍ଦ ପୂଜା ସ୍ଥଳରେ ମୂର୍ତ୍ତିର ଆବଶ୍ୟକତା ସୂଚିତ କରେ ନାହିଁ । ବୈଦିକ ଯୁଗରେ ମୂର୍ତ୍ତି ପୂଜକଙ୍କୁ ପ୍ରାକୃତିକ ଦୃଶ୍ୟ ଏବଂ ବସ୍ତୁ ଗୁଡ଼ିକରେ ହିଁ ପରମେଶ୍ୱରଙ୍କ ସତ୍ତା ଅନୁଭୂତ ହୋଇଥିଲା । ପରବର୍ତ୍ତୀ କାଳରେ ଲୋକେ ପରମେଶ୍ୱରଙ୍କୁ ସର୍ବଶକ୍ତିମାନ୍ ଅଥବା ସର୍ବବ୍ୟାପୀ ମନୁଷ୍ୟ ସହସ୍ର ଲୋଚନ ବା ସହସ୍ର ପାଦ ରୂପରେ କଳ୍ପନା କରିବାକୁ ଲାଗିଲେ । ମୂର୍ତ୍ତି ପ୍ରତିଷ୍ଠା ପରେ ପରେ ହିନ୍ଦୁ ସମାଜରେ ପୂଜା-ପଦ୍ଧତି ପ୍ରଚଳିତ ହୋଇଥିଲା ବୋଲି ଯେଉଁମାନେ ବିବେଚନା କରନ୍ତି ତାହା ଭ୍ରମାତ୍ମକ ବୋଲି ଡକ୍ଟର ଆଚାର୍ଯ୍ୟଙ୍କ ମତ ( ) ।

ମନ୍ଦିରର ଉତ୍ପତ୍ତି ସମ୍ବନ୍ଧରେ ସୁପ୍ରସିଦ୍ଧ ପଣ୍ଡିତ ବେଚର ଦାସ କହନ୍ତି, ସମ୍ଭବତଃ ଚୈତ୍ୟ ଶବ୍ଦ ଚିତାରୁ ହିଁ ଉଦ୍ଭୂତ । ମହାପୁରୁଷମାନଙ୍କ ଚିତା ଉପରେ ବୃକ୍ଷରୋପଣ, ପାଷାଣ ଖଣ୍ଡ ସ୍ଥାପନ, କିମ୍ବା ମୃତ ଶରୀରର ଅବଶେଷ ଉପରେ ସ୍ତୂପ ନିର୍ମାଣ ଚୈତ୍ୟ ନାମରେ ଅଭିହିତ ହୋଇଥିଲା । କାଳକ୍ରମେ ମହାପୁରୁଷ ମାନଙ୍କର ମୂର୍ତ୍ତିମାନ ନିର୍ମିତ ହେବାରୁ ସେଗୁଡ଼ିକ ମଧ୍ୟ ଚୈତ୍ୟ ରୂପେ ବିବେଚିତ ହେଲା । ପୁନଶ୍ଚ ତାହାର ସଂରକ୍ଷଣ ଉଦ୍ଦେଶ୍ୟରେ ମନ୍ଦିର ନିର୍ମାଣର ପରିକଳ୍ପନାକୁ ହିଁ 'ଚୈତ୍ୟାଳୟ' ନାମରେ କଥିତ ହେଲା । କିନ୍ତୁ ଡକ୍ଟର ଆଚାର୍ଯ୍ୟଙ୍କ କଥନ ହେଉଛି ଚୈତ୍ୟ ଅଥବ କବର ସହ ମନ୍ଦିରର କୌଣସି ସମ୍ବନ୍ଧ ନଥିଲା । ସେ ମନ୍ଦିରର ଉତ୍ପତ୍ତି ସମ୍ବନ୍ଧରେ 'କଳ୍ପସୂତ୍ର'ର ଉଲ୍ଲେଖ କରିଛନ୍ତି । 'କଳ୍ପସୂତ୍ର'ର ଜୈକତକ ଅଂଶକୁ 'ଶୁଲ୍ୟ ସୂତ୍ର' କୁହାଯାଏ, ଯେଉଁଥିରେ ବେଦୀ ନିର୍ମାଣ କରିବାର ରୀତି ଓ ତାହାର ଦୈର୍ଘ୍ୟ ଇତ୍ୟାଦିର ବର୍ଣ୍ଣନା ରହିଛି । ସେଥିରେ ଇଷ୍ଟକ ନିର୍ମିତ ବେଦୀ ଗୁଡ଼ିକର ନିର୍ମାଣ ଶୈଳୀ ଉଲ୍ଲିଖିତ ହୋଇଛି । ଏହି ବେଦୀ ଗୁଡ଼ିକ 'ସୋମ ଯଜ୍ଞ'ଙ୍କ ନାମରେ ଉତ୍ସର୍ଗ କରିଯାଇ ବୈଜ୍ଞାନିକ ଢଙ୍ଗରେ ନିର୍ମିତ ହୋଇଥିଲା । ସମ୍ଭବତଃ ବେଦୀ ଗୁଡ଼ିକରୁ ହିଁ ମନ୍ଦିର ନିର୍ମାଣ କଳ୍ପନାର ସୂତ୍ରପାତ ହୋଇଛି । ମହାମହୋପାଧ୍ୟାୟ ଗୌରୀଶଙ୍କର ହିରାଲାଲ ଓଝାଙ୍କ ମତରେ ମୂର୍ତ୍ତି ପୂଜାର ପ୍ରାରମ୍ଭିକ ବିକାଶ ସମ୍ବନ୍ଧରେ ନିଶ୍ଚିତ ମତ ଦେବା ଏକ ଦୁରୂହ ବ୍ୟାପାର । ତେବେ ଜେ.ଏନ୍ ବାନାର୍ଜିଙ୍କ ମତରେ (୧) ଉତ୍ତର ବୈଦିକ ଯୁଗରେ (Later Vedic Age) ମୂର୍ତ୍ତିପୂଜାର ପ୍ରଚଳନ ହୋଇଥିଲା ।

ଖ୍ରୀ.ପୂ. ୨୦୦ ଶତାବ୍ଦୀର ଶେଷ ଆଡ଼କୁ ତକ୍ଷଶୀଳାର ଗ୍ରୀକ୍ ରାଜା ଏଣ୍ଟି ଆଲ୍-କିଡ଼ାସ୍‌ଙ୍କ ରାଜଦୂତ ହେଲିଓଡୋରସ୍‌ଙ୍କ ବେସନଗର ଠାରେ ଥିବା ଗରୁଡ଼ ଧ୍ୱଜ ସ୍ତମ୍ଭ ଅଭିଲେଖରୁ (୩) ଜଣାଯାଏ ଯେ ସଙ୍କର୍ଷଣ ଓ ବାସୁଦେବଙ୍କ ମୂର୍ତ୍ତି ପୂଜା ପାଇଁ ସର୍ବ ପ୍ରଥମେ ମନ୍ଦିର ନିର୍ମିତ ହୋଇଥିଲା । ଏତଦ୍‌ବ୍ୟତୀତ ରାଜସ୍ଥାନର ଚିତୋରଗଡ଼ ଜିଲ୍ଲା ଅନ୍ତର୍ଗତ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର ଘୋଷୁଣ୍ଡି ଶିଳାଲେଖରୁ (୪) ମଧ୍ୟ ସଙ୍କର୍ଷଣ ଓ ବାସୁଦେବଙ୍କ ପୂଜା ନିମନ୍ତେ ମନ୍ଦିର ନିର୍ମିତ ହୋଇଥିବାର ପ୍ରମାଣ ମିଳେ । ଏହା ମୂର୍ତ୍ତି ପୂଜାର ସର୍ବ ପ୍ରାଚୀନ ଲିଖିତ ପ୍ରମାଣ କହିଲେ ଅତ୍ୟୁକ୍ତି ହେବନାହିଁ । ଏଥିରୁ ସୁବିଦିତ ହୁଏ ଯେ ଖ୍ରୀ.ପୂ. ୨୦୦ ଶତାବ୍ଦୀ ପୂର୍ବରୁ ମୂର୍ତ୍ତି ପୂଜାର ପ୍ରଚଳନ ଥିଲା । କାଶୀପ୍ରସାଦ ଜୟ-ସ୍ୱାଲଙ୍କ ମତରେ ଅଦ୍ୟାବଧି ଉପଲବ୍ଧ ମୂର୍ତ୍ତିମାନଙ୍କ ମଧ୍ୟରେ ଜୈନ ମୂର୍ତ୍ତି ହିଁ ସର୍ବ ପ୍ରାଚୀନ । ହରପ୍‌ପା ଓ ମହେଞ୍ଜୋଦାରୋ ଭୂଖନନରୁ ପ୍ରାପ୍ତ ନଗ୍ନ ପୁରୁଷ ମୂର୍ତ୍ତିଗୁଡ଼ିକ ଜୈନ ମୂର୍ତ୍ତି ବୋଲି କେତେକ ଐତିହାସିକ ମତବ୍ୟକ୍ତ କରନ୍ତି । (୫) । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଜୈନ ମୂର୍ତ୍ତିଗୁଡ଼ିକ ମୌର୍ଯ୍ୟକାଳ ଅର୍ଥାତ୍ ଖ୍ରୀ. ପୂ. ତୃତୀୟ ଶତାବ୍ଦୀ ଠାରୁ ନିର୍ମିତ ହୋଇଥିଲେ ମଧ୍ୟ ତତ୍‌ସମ୍ବନ୍ଧୀୟ ପ୍ରାମାଣିକ ସାହିତ୍ୟ ଏକାଦଶ ଦ୍ୱାଦଶ ଖ୍ରୀଷ୍ଟାବ୍ଦ ପୂର୍ବରୁ ମିଳେ ନାହିଁ । ଏଥି ପୂର୍ବରୁ କେଉଁ ରୀତି-ନୀତିର ଅନୁସରଣରେ ମୂର୍ତ୍ତି ଗୁଡ଼ିକ ନିର୍ମିତ ଓ ଅଧିଷ୍ଠିତ ହେଉଥିଲା, ସେ ସମ୍ପର୍କରେ କୌଣସି ପ୍ରାମାଣିକ ତଥ୍ୟ ଅଦ୍ୟାପି ଲୋକଲୋଚନକୁ ଆସିନାହିଁ ।

ପୂର୍ବେ ଚିତି ଅଥବା ବେଦୀ 'ଚତୁର ପ୍ରଶ୍ୟେନଚିତ', 'ପୌଚିଚିତ', 'ରଥ ଚକ୍ରଚିତ', ଦ୍ରୋଣ ଚିତ', ପରିଚୟ ଚିତ', 'ସମୂହ ଚିତ' ଏବଂ 'କୂର୍ମ ଚିତ' ଆଦି ବହୁ ପ୍ରକାରେ ନିର୍ମିତ ହେଉଥିଲା । 'ତୈତ୍ତିରୀୟ ସଂହିତା' (୬) ରେ ଏହାର ସର୍ବ ପ୍ରଥମ ଉଲ୍ଲେଖ ମିଳେ ବୋଲି ଡ଼ : ପି. କେ . ଆଚାର୍ଯ୍ୟ ମତବ୍ୟକ୍ତ କରିଛନ୍ତି । ଏହାର ଆଧାର ଉପରେ 'ବୌଧାୟନ' ଓ 'ଆପସ୍ତମ୍ବ'ରେ ବିବିଧ ଚିତି (ବେଦି) ଗୁଡ଼ିକର ଆକାର ବର୍ଣ୍ଣିତ ହୋଇଛି । ଚିତିଗୁଡ଼ିକର ଆକାର-ପ୍ରକାର ହିନ୍ଦୁ, ଜୈନ ଏବଂ ବୌଦ୍ଧ ମନ୍ଦିରର ବେଦୀ ସଦୃଶ । ମସଜିଦ ଓ ଗିର୍ଜାଗୁଡ଼ିକର ଗଠନ ପ୍ରଣାଳୀ ସହିତ ମଧ୍ୟ ସେଗୁଡ଼ିକର ସୌସାଦୃଶ୍ୟ ରହିଛି । ସମୟ କ୍ରମେ ମନ୍ଦିରର ଉଚ୍ଚତା ଓ ଆକୃତି ବୃଦ୍ଧି ପାଇବାକୁ ଲାଗିଲା । ବେଦୀ ଗୁଡ଼ିକର ସମ୍ମୁଖରେ କ୍ରମଶଃ 'ଭୋଗ ମଣ୍ଡପ', 'ନାଟ ମଣ୍ଡପ' ଆଦି ଅନ୍ୟାନ୍ୟ ମଣ୍ଡପଗୁଡ଼ିକର ମଧ୍ୟ କଳ୍ପନା ହେଲା । ଏଥିରୁ ଅନୁମିତ ହୁଏ, କାଳକ୍ରମେ ବିବିଧ ଚେତି (ବେଦୀ) ଗୁଡ଼ିକରୁ ହିଁ ଭିନ୍ନ ଭିନ୍ନ ଆକାର ଓ ପ୍ରକାରର ମନ୍ଦିର ଉତ୍ପତ୍ତି ହେଲା ଏବଂ ତାହା ଶନୈଃ ଶନୈଃ ବିଶାଳ ତଥା ସୁଉଚ୍ଚ ମନ୍ଦିରରେ ପରିଣତ ହେଲା । ତାହା ବ୍ୟତୀତ ମନ୍ଦିର ଗୁଡ଼ିକ ପାର୍ଶ୍ୱ ବିଭାଗ ସହିତ ସୁସଜ୍ଜିତ ଓ ବିଭିନ୍ନ କାରୁକଳାରେ ମଣ୍ଡିତ ହେବାକୁ ଲାଗିଲା, ଯଥା :— 'ଅନ୍ତର ମଣ୍ଡଳ', 'ଅନ୍ତର ବିହାର', ମଧ୍ୟମ ହାର', ' ପ୍ରାକାର ଓ 'ମହାମର୍ଯ୍ୟାଦା' । କ୍ରମେ 'ଦ୍ୱାର ଶୋଭା', 'ଦ୍ୱାରଶାଳା', 'ଦ୍ୱାର ପ୍ରାସାଦ', 'ଦ୍ୱାର ହର୍ମ୍ୟ' ଏବଂ 'ମହାଗୋପୁର'ର ମଧ୍ୟ ପରିକଳ୍ପନା କରାଯାଇଥିଲା । ଏହାପରେ ଷଷ୍ଠ ଓ ସପ୍ତମ ବିଭାଗର ସୃଷ୍ଟି ହୋଇଥିଲା । ମନ୍ଦିରର ସୁରକ୍ଷା ସକାଶେ ସୈନିକମାନେ ଉକ୍ତ ବିଭାଗରେ ଅବସ୍ଥାନ କରୁଥିଲେ ।

ହିନ୍ଦୁ ଶିଳ୍ପ ଶାସ୍ତ୍ର 'ମାନସାର'ରେ 'ଶାନ୍ତିକ', 'ପୌଷ୍ଟିକ', 'ଜୟଦ' ଆଦି ମନ୍ଦିର ଗୁଡ଼ିକର ନାମୋଲ୍ଲେଖ ଅଛି । ଉକ୍ତ ମନ୍ଦିରଗୁଡ଼ିକର ପ୍ରତ୍ୟେକ ବିଭାଗର ଦୈର୍ଘ୍ୟ ଓ ପ୍ରସ୍ଥ ଆଦି ଭିନ୍ନ ଭିନ୍ନ ଭାବରେ ଦର୍ଶାଯାଇଛି । ମନ୍ଦିରର ଉପରଭାଗ ସବୁ ପ୍ରଥମେ ଚେପ୍ଟା (ଗୁମ୍ଫାର ଆକାରଭଳି) ଥିଲା । ପରେ ଗୋଲାକାର ସ୍ତୂପ ନିର୍ମିତ ହେବାକୁ ଲାଗିଲା । ଗୋଲାକାର ସ୍ତୂପ ଗୁଡ଼ିକ 'ଶିଖର', 'ଶିଖା', 'ଶିଖାନ୍ତ' ଓ 'ଶିଖାମଣି' ଏହିପରି ବିଭିନ୍ନ-ଭାଗରେ ବିଭକ୍ତ । ହିନ୍ଦୁ, ଜୈନ ଓ ବୌଦ୍ଧ ମନ୍ଦିର ଗୁଡ଼ିକର ଶିଖର ନିର୍ମାଣ ପ୍ରଣାଳୀରେ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ । ମାତ୍ର କେତେକ କ୍ଷେତ୍ରରେ ଉଚ୍ଚତାରେ ବୈଷମ୍ୟ ପରିଦୃଷ୍ଟ ହୁଏ । ପ୍ରାଚୀନ ମନ୍ଦିର ଗୁଡ଼ିକୁ ଗଠନ ପ୍ରଣାଳୀ ଭେଦରେ ବିଶେଷଜ୍ଞମାନେ 'ନାଗର', 'ବେସର' ଓ 'ଦ୍ରାବିଡ଼'—ଏହିପରି ତିନୋଟି ଶ୍ରେଣୀରେ ବିଭକ୍ତ କରିଛନ୍ତି । (୭) ।

"ନାଗରଂ ଦ୍ରାବିଡ଼ଂ ଚୈବ ବେସରଂଚ ତ୍ରିଧାମତମ୍ ।
କଣ୍ଠାଦାରଭ୍ୟ ବୃତ୍ତଂ ସ୍ୟାଦ୍ ବେସରମିତି ସ୍ମୃତମ୍ ।
ଗ୍ରୀବମାରଭ୍ୟ ଷଡ଼ଷ୍ଟାଶ୍ରଂ ବିମାନଂ ଦ୍ରାବିଡ଼ାଖ୍ୟକମ୍ ।
ସର୍ବଂବୈ ଚତୁରଶ୍ରଂସ୍ୟତୁ ପ୍ରାସାଦଂ ନାଗରଂ ତ୍ୱିଦମ୍ ।।"

(ମାନସାର)

× × × ×

"ବେଦାଶ୍ରଂ ନାଗରଂ ପ୍ରୋକ୍ତଂ ଷଡ଼ସ୍ରଂ ଦ୍ରାବିଡ଼ଂ ଭବେତ୍
ବୃତ୍ତଂ ବେସର ପ୍ରୋକ୍ତମେତ୍ତଂ ସ୍ୟାଦଷ୍ଟାସ୍ରକଂ ।" (୮)

କାଳକ୍ରମେ ଉପର୍ଯ୍ୟୁକ୍ତ ତିନି ପ୍ରକାର ମନ୍ଦିର ଗଠନ ପ୍ରଣାଳୀର ସମ୍ମିଶ୍ରଣ ହୋଇ କେବଳ ନାଗର ଓ ଦ୍ରାବିଡ଼ ଶୈଳୀରେ ମନ୍ଦିରମାନ ନିର୍ମିତ ହେଲା । କିନ୍ତୁ ଓଡ଼ିଶାର ସ୍ଥାପତ୍ୟ ଶୈଳୀ ଏ ତିନୋଟି ଶ୍ରେଣୀ ଅନ୍ତର୍ଭୁକ୍ତ ନଥିଲା । ତାହାର ସ୍ୱତନ୍ତ୍ର ସତ୍ତା ଥିଲା । ଓଡ଼ିଶାର ମନ୍ଦିରଗୁଡ଼ିକ କଳିଙ୍ଗ ନାମକ ଏକ ସ୍ୱତନ୍ତ୍ର ଶୈଳୀରେ ନିର୍ମିତ ହୋଇଥିଲା । (୯) । କର୍ଣ୍ଣାଟକ ରାଜ୍ୟ ଅନ୍ତର୍ଗତ ବେଲ୍ଲାରି ଜିଲ୍ଲାର ହୋଳାଲ୍ ଠାରେ ଅବସ୍ଥିତ ଅମୃତେଶ୍ୱର ମନ୍ଦିରରେ ଉତ୍କୀର୍ଣ୍ଣିତ ଶିଳାଲିପିରୁ ଉକ୍ତ ମନ୍ଦିରର ନିର୍ମାତା ୬୪ କଳା ଓ ଚାରିପ୍ରକାର ସ୍ଥାପତ୍ୟ (ନାଗର, କଳିଙ୍ଗ, ଦ୍ରାବିଡ଼ ଓ ବେସର) ଶୈଳୀ କ୍ଷେତ୍ରରେ ବିଶେଷ ଜ୍ଞାନ ଲାଭ କରିଥିବା ଜଣାଯାଏ ।(୧୦) । ଏଥିରୁ ପ୍ରମାଣିତ ହୁଏ ଯେ ପ୍ରାକ୍ ମଧ୍ୟ ଯୁଗରେ (ଖ୍ରୀ ଅ ୭୦୦-୧୨୦୦) କଳିଙ୍ଗ ଶିଳ୍ପୀମାନେ ସ୍ଥାପତ୍ୟ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲେ ।

ଓଡ଼ିଶାର ଶିଳ୍ପୀମାନେ 'ମୟ' ଓ 'ମଣ୍ଡନ'ଙ୍କର ଶିଳ୍ପମତ ଅନୁସରଣ କରିଥିବାର ପ୍ରମାଣ ନିଆଳିସ୍ଥ ଶୋଭନେଶ୍ୱର ମନ୍ଦିର ଓ ଭୁବନେଶ୍ୱରର ୧୨୭୮ ଖ୍ରୀ.ଅ. ରେ ଗଙ୍ଗରାଜା

ତୃତୀୟ ଅନଙ୍ଗଭୀମଦେବଙ୍କ କନ୍ୟା ଚନ୍ଦ୍ରିକା ଦେବୀଙ୍କ ଦ୍ୱାରା ନିର୍ମିତ ଅନନ୍ତବାସୁଦେବ ମନ୍ଦିରର ଅଭିଲେଖରୁ ଜଣାଯାଏ । ଶୋଭନେଶ୍ୱର ମନ୍ଦିରରେ ଖୋଦିତ ଶିଳାଲିପିରୁ ଜଣାପଡ଼େ ଯେ ବୈଦ୍ୟନାଥଙ୍କ ଆଜ୍ଞାରେ ସାବକ ନାମକ ଜଣେ ବ୍ରାହ୍ମଣ(ମସ୍ତ ନାମକ ଶିଳ୍ପୀଙ୍କ ସଦୃଶ) ନିଜର କୃତିତ୍ୱ ଦ୍ୱାରା ଗୋଟିଏ ସୁନ୍ଦର ମନ୍ଦିର ନିର୍ମାଣ କରିଥିଲେ;ଯାହାକି କଳା ଓ ସ୍ପର୍ଶ ଦ୍ୱାରା ପରିଶୋଭିତ ହୋଇ ଧର୍ମ ଓ ଆମୋଦ ପ୍ରମୋଦର କ୍ରୀଡ଼ାସ୍ଥଳୀ ଥିଲା —

"ମସ୍ତ ମଣ୍ଡନ ଗର୍ଭ ଗହ୍ୱର ଶ୍ରୀ...
ପ୍ରଜ୍ଞା ସୁନ୍ଦର ମନ୍ଦିରଂ କୁଳଗୃହଂ ନୀତେଃ
କଳା ସଂପଦା ମେଇଂ ଧାମଚ ଧର୍ମକର୍ମ ସଦନଂ
ଭୂତୋ ଦ୍ୱିଜଃ ସାବନଃ ତେନା ରୋପ୍ୟ ମଂସ୍ଥାପମେଦ
କୃତନା ଶ୍ରୀ ବୈଦନାଥାଜ୍ଞୟା"

ଭୁବନେଶ୍ୱରର ଏକମାତ୍ର ବୈଷ୍ଣବ ମନ୍ଦିର 'ଅନନ୍ତ ବାସୁଦେବ' ମନ୍ଦିର ଶିଳାଲେଖରୁ ମଧ୍ୟ ଉକ୍ତ ମନ୍ଦିର 'ମସ୍ତ' ଓ 'ମଣ୍ଡନ'ଙ୍କ ଶିଳ୍ପନୀତି ଅନୁସାରେ ନିର୍ମିତ ହୋଇଥିବାର ଜଣାଯାଏ—

"ଅସ୍ତମତ ଶସ୍ତି ରୁଂ ମୃଗାଂକ ଚ ଡ଼ାମଣି ମୂରସ୍ତାକୃତ ହେଳମୌକ୍ତିଖବଃ ।
ଅପି ଭୁବନ ପରଂ ଜହାସ ଦେବମସ୍ତ ମଣ୍ଡନ ଗର୍ଭଗହ୍ୱର ଶ୍ରୀଃ" ।। ୧୨) ।

ଉତ୍ତର ଭାରତ (ନାଗର) ଓ ଦକ୍ଷିଣ ଭାରତ (ଦ୍ରାବିଡ଼) ପ୍ରଥା ଓ ପ୍ରଣାଳୀ ସମ୍ମିଶ୍ରଣରେ କଳିଙ୍ଗରେ ମନ୍ଦିର ନିର୍ମାଣ କୌଶଳ ଗଢ଼ି ଉଠିଥିଲା । କେତେ ନାଗର ରୀତି ଅନୁଯାୟୀ ମନ୍ଦିରର ସିଂହଦ୍ୱାର, ପ୍ରାଙ୍ଗଣ, ଆମଳକ ନିର୍ମାଣ ଏବଂ ଦ୍ରାବିଡ଼ ଶୈଳୀ ଅନୁସାରେ ଶିଖର ମନ୍ଦିର ନିର୍ମାଣ ଓଡ଼ିଶାରେ ଦେଖାଯାଏ । ନାଗର ପ୍ରଥାର ବିଶିଷ୍ଟ ଶିଳ୍ପୀ 'ମଣ୍ଡନ' ଓ ଦ୍ରାବିଡ଼ ଶୈଳୀର ବିଖ୍ୟାତ ଶିଳ୍ପୀ 'ମସ୍ତ' ଓଡ଼ିଶାର ସ୍ଥାପତ୍ୟ କଳାକୁ ପ୍ରଭାବିତ କରିଥିଲେ ବୋଲି ଉପର୍ଯ୍ୟୁକ୍ତ ଶ୍ଳୋକାଂଶରୁ ଜ୍ଞାତ ହୁଏ । ଏ ସମ୍ପର୍କରେ ବିଶଦ ବିବରଣୀ ଡ଼: ପି. କେ. ଆଚାର୍ଯ୍ୟଙ୍କର 'Indian Architecture According to Manasara Silpasastra' ରେ ପ୍ରଦତ୍ତ ହୋଇଛି ।

ଦକ୍ଷିଣ ଭାରତରେ ମନ୍ଦିର ଗୁଡ଼ିକ ପ୍ରାୟ ଦ୍ରାବିଡ଼ ଓ ଚାଳୁକ୍ୟ ଶୈଳୀ ଅନ୍ତର୍ଭୁକ୍ତ । କେତେକ କଳାବିତ୍ 'ଚାଳୁକ୍ୟ ଶୈଳୀ'କୁ 'ହୋୟସାଲ' ନାମରେ ଅଭିହିତ କରନ୍ତି । ଦ୍ରାବିଡ଼ ଶୈଳୀର ମନ୍ଦିରରେ ପାଞ୍ଚଟି ବିଭାଗ ରହିଛି 'ବିମାନ', 'ମଣ୍ଡପ', 'ମୁଖମଣ୍ଡପ' 'ଦ୍ୱାର ମଣ୍ଡପ' ଏବଂ 'ସଭା ମଣ୍ଡପ' । କିନ୍ତୁ ଏଗୁଡ଼ିକର ନିର୍ମାଣ ଶୈଳୀରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । 'ହାଦଣ ବେଲଗୋଲା'ର ଚନ୍ଦ୍ରଗିରି ବସ୍ତି (୧୩) ଓ ସମୋଗା ଜିଲ୍ଲାର ସିକାରପୁର ତାଲୁକ ଅନ୍ତର୍ଗତ ବେଲଗାମିଠାରେ ତ୍ରିପୁରା କେଦାର (୧୪) ଓ

ଜୈନ (୧୫) ମନ୍ଦିର ଦ୍ରାବିଡ଼ ଶୈଳୀ ଏବଂ ମୁଙ୍ଗେର ଭାଲୁକର ଅଞ୍ଚଳରେ ଅବସ୍ଥିତ 'ମଲ୍ଲିନାଥ ବସ୍ତି'ର ମନ୍ଦିର ଚାଲୁକ୍ୟ ବା ହୋୟସାଳ ଶୈଳୀ ଅନ୍ତର୍ଭୁକ୍ତ । ଏହି ମନ୍ଦିର ଗୁଡ଼ିକ ଜୈନ କଳା ଓ ସ୍ଥାପତ୍ୟର ସ୍ପଷ୍ଟ ନିଦର୍ଶନ ରୂପେ ବିବେଚିତ ହୁଏ ।

ମଧ୍ୟଯୁଗରେ (ଖ୍ରୀ.ଅ. ୬୦୦-୧୨୦୦) କଦମ୍ବ, ରାଷ୍ଟ୍ରକୂଟ, ବାଦାମୀର ପଶ୍ଚିମ ଚାଲୁକ୍ୟ, ଭେଙ୍ଗିର ପୂର୍ବ ଚାଲୁକ୍ୟ ଏବଂ ଓଡ଼ିଶାର ସୋମବଂଶୀ ଓ ଗଙ୍ଗରାଜାମାନେ ବହୁ ଶୈବ, ଜୈନ ଓ ବିଷ୍ଣୁ ମନ୍ଦିର ନିର୍ମାଣ କରିଥିଲେ । ମନ୍ଦିର ଗୁଡ଼ିକର ରକ୍ଷଣାବେକ୍ଷଣ ତଥା ପୂଜା ପାର୍ବଣ ନିମନ୍ତେ ସେମାନେ ଭୂମି ଓ ଗ୍ରାମ ଦାନ କରିଥିଲେ । ଜୈନ ମନ୍ଦିର ନିର୍ମାଣ କ୍ଷେତ୍ରରେ ଚାଲୁକ୍ୟ ରାଜାମାନଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ଚାଲୁକ୍ୟ ରାଜା ଦ୍ୱିତୀୟ ପୁଲକେଶୀଙ୍କ ରାଜତ୍ୱ କାଳରେ (ଖ୍ରୀ ଅ· ୬୦୯-୬୪୨) କବି ରବିକୀର୍ତ୍ତି ଏକ ଜୈନ ମନ୍ଦିର ନିର୍ମାଣ କରିଥିଲେ । ରବିକୀର୍ତ୍ତି ଜୈନଧର୍ମ ଗ୍ରହଣ କରିଥିଲେ । ତାଙ୍କ ଅନୁରୋଧରେ ରାଜା ଦ୍ୱିତୀୟ ପୁଲକେଶୀ ଏହି ମନ୍ଦିରକୁ ଭୂମିଦାନ କରିଥିଲେ । (୧୬) । ପୂର୍ବ ଚାଲୁକ୍ୟ ବଂଶୀ ରାଜା ପ୍ରଥମ ବିଷ୍ଣୁ ବର୍ଦ୍ଧନ (ଖ୍ରୀ ଅ ୬୩୩-୬୬୩, ବେଜୱାଡ଼ା (ଆନ୍ଧ୍ର ପ୍ରଦେଶର କୃଷ୍ଣା ଜିଲ୍ଲା ଅନ୍ତର୍ଗତ ବିଜୟୱାଡ଼ା) ଠାରେ ନିର୍ମିତ ଏକ ଜୈନ ମନ୍ଦିରର ରକ୍ଷଣାବେକ୍ଷଣ ନିମନ୍ତେ ଗ୍ରାମ ଦାନ କରିଥିଲେ । (୧୭) । ଉକ୍ତ ବଂଶର ରାଜା ଦ୍ୱିତୀୟ ଅମ୍ମ (ଖ୍ରୀ.ଅ. ୯୪୭-୯୫୭) ଜୈନ ଭିକ୍ଷୁମାନଙ୍କୁ ବେଜୱାଡ଼ା ଠାରେ ଦୁଇଟି ଜୈନ ମନ୍ଦିର ନିର୍ମାଣ କରିବା ନିମନ୍ତେ ସେମାନଙ୍କ ସଙ୍ଘର ମୁଖ୍ୟ ଜୟସେନଙ୍କୁ ଗ୍ରାମ ଦାନ କରିଥିଲେ । (୧୮) ।

ଦକ୍ଷିଣ ଭାରତରେ ରାଜକର୍ମଚାରୀଙ୍କ ପରିବାରବର୍ଗ ଓ ଜନସାଧାରଣଙ୍କ ଦ୍ୱାରା ମଧ୍ୟ କେତେକ ଜୈନ ମନ୍ଦିର ନିର୍ମିତ ହୋଇଥିଲା । ଶ୍ରବଣବେଲଗୋଲ ଠାରେ ଏକ ଜୈନ ମନ୍ଦିର ଜଣେ ସେନାପତିଙ୍କ ସ୍ତ୍ରୀଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଉକ୍ତ ମହିଳା ଜୈନଧର୍ମାବଲମ୍ବୀ ଥିଲେ । ତାଙ୍କର ନାମ ଥିଲା ଅଚଲ ଦେବୀ । ସେ ଜୈନ ଥିଲେ ମଧ୍ୟ ତାଙ୍କର ସ୍ୱାମୀ ଶୈବ ଥିଲେ । (୧୯ ଇଶାଭୁର ଅଗ୍ରହାରର ଜଣେ ବ୍ରାହ୍ମଣ ପଣ୍ଡିତ ପଦ୍ମୋଜ ନାମକ ଜଣେ ଜୈନ ଶ୍ରମଣଙ୍କ ଦ୍ୱାରା ନିର୍ମିତ ଜୈନ ମନ୍ଦିରକୁ ଭୂମିଦାନ କରିଥିଲେ । (୨୦) । ତଦୁପରି ସେଉତ୍ତୁମ୍ମନଗରରେ ବାସ କରୁଥିବା ବ୍ରାହ୍ମଣମାନେ ଜୈନ ଶାସନ ଦେବୀ ଜ୍ୱାଳାମାଳିନୀଙ୍କର ଏକ ମନ୍ଦିର ସ୍ଥାପନ କରିଥିଲେ । ଦେବୀଙ୍କ ଅର୍ଚ୍ଚନା ବିଧି ତଥା ବିଭିନ୍ନ ପର୍ବପାଳନ ନିମନ୍ତେ ସେମାନେ ଅର୍ଥ ଦାନ କରିଥିଲେ । (୨୧) ।

ଦକ୍ଷିଣ ଭାରତର କେତେକ ରାଜପ୍ରାସାଦରେ ଗଣିକା ମାନେ ବାସ କରୁଥିଲେ । ସେମାନେ ରାଜାମାନଙ୍କର ରକ୍ଷିତା ଥିଲେ । ସେମାନଙ୍କ ମଧ୍ୟରୁ କେତେକ ଜୈନ ଥିଲେ । ପୁଣ୍ୟ ଅର୍ଜନ କରିବା ନିମନ୍ତେ ସେମାନେ ଜୈନମନ୍ଦିର ଗୁଡ଼ିକୁ ଗ୍ରାମ ଅଥବା ଅର୍ଥ ଦାନ କରିବା ନିମନ୍ତେ ରାଜାମାନଙ୍କୁ ପ୍ରଭାବିତ କରିଥିଲେ । ରାଜା ଦ୍ୱିତୀୟ ଅମ୍ମ ନିଜର ଜଣେ ରକ୍ଷିତାଙ୍କ ଅନୁରୋଧରେ ଜୈନ ମନ୍ଦିରକୁ ଗ୍ରାମ ଦାନ କରିଥିଲେ । (୨୨) । ସେହିପରି ଏକ ଦାନ କରିଥିଲେ ଚାଲୁକ୍ୟ ରାଜା ବିନୟାଦିତ୍ୟ (ଖ୍ରୀ ଅ.୬୮୧-୬୯୬) ନିଜର ବଣାପୋଦ

ନାମକ ଜଣେ ପ୍ରିୟତମାଙ୍କ ଅନୁରୋଧରେ । ମହୀଶୂରର ଗଙ୍ଗରାଜା ଦ୍ୱିତୀୟ ବୁଟୁଗ ତାଙ୍କର ପଦୋଲମ୍ବା ନାମକ ଜଣେ ପ୍ରେମିକାଙ୍କ ପ୍ରୁପାରିଶରେ ଗୋଟିଏ ଜୈନ ମନ୍ଦିରକୁ ଗ୍ରାମ ଦାନ କରିଥିଲେ । (୧୩) ।

ଓଡ଼ିଶାରେ ମଧ୍ୟ ଏହି ସମୟରେ କେତେକ ଜୈନ ମନ୍ଦିର ନିର୍ମିତ ହୋଇଥିଲା । ସୋମବଂଶୀ ରାଜା ଉଦ୍ୟୋତକେଶରୀଙ୍କ ରାଜତ୍ୱ କାଳରେ (ଖ୍ରୀ.ଅ.୧୦୪୦-୧୦୬୫) ଖଣ୍ଡଗିରିରେ ଗୁମ୍ଫା ମନ୍ଦିର ନିର୍ମିତ ହୋଇଥିଲା । (୧୪) । ଗଙ୍ଗରାଜା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବଙ୍କ ପୁତ୍ର ଅନନ୍ତବର୍ମା ଦ୍ୱିତୀୟ ରାଜରାଜ (ଖ୍ରୀ.ଅ.୧୧୭୦-୧୧୯୦)ଙ୍କ ରାଜତ୍ୱର ଏକାଦଶ ବର୍ଷରେ କାନ୍ନମ ନାୟକ ନାମକ ଜଣେ ସାମନ୍ତ ରାଜା ରାମତୀର୍ଥମ୍ (ଆଧୁନିକ ରାମତୀର୍ଥମ୍) ଠାରେ ଏକ ଜୈନ ମନ୍ଦିର ନିର୍ମାଣ କରିଥିଲେ । ତାହା ଦ୍ୱିତୀୟ ରାଜରାଜାଙ୍କ ନାମାନୁସାରେ ରାଜରାଜ ଜିନାଳୟ ନାମରେ ଅଭିହିତ ହୋଇଥିଲା । ଭୋଗପୁରର ବଣିକ-ମାନେ ଏହି ମନ୍ଦିରରେ ପ୍ରଦୀପ ଜାଳିବା ନିମନ୍ତେ ଭୂମିଦାନ କରୁଥିଲେ । ଏହି ମନ୍ଦିରରେ ଦ୍ୱାବିଂଶ ତୀର୍ଥଙ୍କର ନେମିନାଥଙ୍କ ଶାସନ ଦେବୀ ଅମ୍ବିକା ଦେବୀଙ୍କ ବିଗ୍ରହ ପୂଜିତ ହେଉଥିଲେ । (୧୫) । ରେଖା ଏବଂ ପିଢ଼ ଶୈଳୀରେ ଅନେକ ଜୈନ ମନ୍ଦିର ମୟୂର-ଭଞ୍ଜର ବଡ଼ସାହି, ବାଲେଶ୍ୱରର ଅଯୋଧ୍ୟା,କେନ୍ଦୁଝରର ଯୋଗୀଛଟା ଏବଂ କୋରାପୁଟର ଭଟେଲ, ସୁଆଇ, ନନ୍ଦପୁର, ଭୈରବସିଂହପୁର ଆଦି ସ୍ଥାନରେ ନିର୍ମିତ ହୋଇଥିଲା । ମଧ୍ୟଯୁଗୀୟ ବିଭିନ୍ନ ଶୈବ ଓ ବିଷ୍ଣୁ ମନ୍ଦିର ଗାତ୍ରରେ ଜୈନ ମୂର୍ତ୍ତିମାନ ପ୍ରତିଷ୍ଠିତ ହୋଇଥିଲା ।

ମଧ୍ୟଯୁଗରେ ଶୈବ ଓ ଜୈନ ଧର୍ମାବଲମ୍ବୀ ମାନଙ୍କ ମଧ୍ୟରେ ମନ୍ଦିର ନିର୍ମାଣ କ୍ଷେତ୍ରରେ ପ୍ରତିଯୋଗିତା ଆରମ୍ଭ ହୋଇଥିଲା । ଏହି ପ୍ରାଚୀନ ଯୁଗରେ ଜୈନଭିକ୍ଷୁମାନଙ୍କର ବିଶ୍ୱାସ ଥିଲା ଯେ ସେମାନେ ବନବାସ କରିବା ଉଚିତ ଏବଂ ଗୃହୀ ବିଶେଷତଃ ନାରୀମାନଙ୍କ ସହ ସମ୍ପର୍କ ରକ୍ଷା କରିବା ଅନୁଚିତ । କିନ୍ତୁ ଆଦି ମଧ୍ୟଯୁଗରେ ଜୈନ ଭିକ୍ଷୁମାନେ ବନବାସ ଅପେକ୍ଷା ଚୈତ୍ୟାବାସ ଉପରେ ଗୁରୁତ୍ୱାରୋପ କରିଥିଲେ । ସତତ ଇତସ୍ତତଃ ପରିବ୍ରଜନ ଅପେକ୍ଷା ସେମାନେ ସ୍ଥାୟୀ ଭାବରେ ବିହାର ମାନଙ୍କରେ ବସବାସ କଲେ । ଏପରିକି ସେମାନେ ଗ୍ରାମ ଓ ନଗରରେ ସ୍ଥାୟୀ ବସତି ସ୍ଥାପନ କଲେ ବୋଲି ବୃହତ୍ କଳ୍ପ ଭାଷ୍ୟରେ ଲିଖିତ ହୋଇଛି । (୧୬) । ଉକ୍ତ ସ୍ଥାନ ଗୁଡ଼ିକରେ ସେମାନେ ଜୈନ ଧର୍ମର ସ୍ଥିତି ସୁଦୃଢ଼ କରିବା ନିମନ୍ତେ ଜୈନ ମନ୍ଦିରମାନ ନିର୍ମାଣ କଲେ । ଜୈନ ଭିକ୍ଷୁମାନେ ମନ୍ଦିର ନିର୍ମାଣ କଲେ ସାଂସାରିକ ମୋହ-ମାୟାର ଆକର୍ଷଣରୁ ମୁକ୍ତିପାଇ ସ୍ୱର୍ଗଲାଭ କରିବେ ବୋଲି ବରାଙ୍ଗ ଚରିତରେ ଉଲ୍ଲେଖ ଅଛି । ଜୈନ ମନ୍ଦିର ସ୍ୱଳ୍ପ ବ୍ୟୟରେ ନିର୍ମିତ ହୋଇପାରେ ଏବଂ ଜୈନ ମନ୍ଦିର ମାନଙ୍କର ନିର୍ମାତା ପୃଥିବୀର ସବୁଠାରୁ ସୁଖି ଓ ଧନାଢ୍ୟ ବ୍ୟକ୍ତି ହୁଅନ୍ତି ବୋଲି ଜଟାସିଂହ ନନ୍ଦୀ ମତବ୍ୟକ୍ତ କରିଛନ୍ତି । (୧୭) ।

'ବାସ୍ତୁସାର ପ୍ରକରଣ' ରେ ଜୈନ ପ୍ରାସାଦ ଅଥବା ମନ୍ଦିରର ଗଠନ ଶୈଳୀ ଓ ଶିଖରର ପଞ୍ଚବିଂଶ ପ୍ରକାର ଭେଦ ଦର୍ଶାଯାଇଛି । ଏହାର ସବିସ୍ତାର ବର୍ଣ୍ଣନ 'ପ୍ରାସାଦ ମଣ୍ଡନ', 'ଅପରାଜିତ ପୃଚ୍ଛା' ଆଦି ଶିଳ୍ପ ଗ୍ରନ୍ଥ ଗୁଡ଼ିକରେ ରହିଛି । 'ବାସ୍ତୁସାର ପ୍ରକରଣ'ରେ ପ୍ରାସାଦର ସ୍ୱରୂପ, ପ୍ରାସାଦର ଅଙ୍ଗ, ପ୍ରାସାଦର ମାନ, ପ୍ରାସାଦ ଉଦୟର ପ୍ରମାଣ, ଶିଖର ଗୁଡ଼ିକର ଉଚ୍ଚତା ଆଦି ବର୍ଣ୍ଣିତ ହୋଇଛି ।

ସପ୍ତମ ଖ୍ରୀ.ଅ.ରୁ ଦ୍ୱାଦଶ ଖ୍ରୀ ଅ. ପର୍ଯ୍ୟନ୍ତ ସହସ୍ର ଜୈନ ଓ ହିନ୍ଦୁ (ବୈଦିକ ମତାବଲମ୍ବୀ) ମନ୍ଦିରର ଜୀର୍ଣ୍ଣାବଶେଷ ଅଦ୍ୟାପି ବିଦ୍ୟମାନ । ସ୍ଥାନ ଓ କାଳ ଭେଦରେ ଏହି ମନ୍ଦିରଗୁଡ଼ିକର ଶୈଳୀରେ ମଧ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ । କୃଷ୍ଣା ନଦୀର ଉତ୍ତରାଞ୍ଚଳଠାରୁ ସମଗ୍ର ଉତ୍ତର ଭାରତରେ ମନ୍ଦିର ଗୁଡ଼ିକ ଆର୍ଯ୍ୟଶୈଳୀ ଏବଂ ଉକ୍ତ ନଦୀର ଦକ୍ଷିଣାଞ୍ଚଳରେ ଅବସ୍ଥିତ ମନ୍ଦିରଗୁଡ଼ିକ ଦ୍ରାବିଡ଼ ଶୈଳୀ ଅନ୍ତର୍ଭୁକ୍ତ । ଜୈନ ଓ ବ୍ରାହ୍ମଣମାନଙ୍କ ମନ୍ଦିର ନିର୍ମାଣ ଶୈଳୀରେ ମଧ୍ୟ ବହୁ ସାମ୍ୟ ପରିଲକ୍ଷିତ ହୁଏ । କେବଳ ପାର୍ଥକ୍ୟ ହେଲା, ଜୈନ ମନ୍ଦିରଗୁଡ଼ିକର ସ୍ତମ୍ଭ ଓ ଛାତ ଆଦିରେ ତୀର୍ଥଙ୍କର ଓ ସେମାନଙ୍କ ଶାସନଦେବୀଙ୍କ ମୂର୍ତ୍ତି, ବହୁ ଜୈନ ପ୍ରତୀକ ତଥା ଜୈନଧର୍ମ ଓ ସଂସ୍କୃତି ସମ୍ପର୍କୀୟ କଥାବଳୀ ଚିତ୍ରାବଳୀରେ ଖୋଦିତ ହୋଇଥିବା ଦେଖାଯାଏ । ହିନ୍ଦୁ ମନ୍ଦିର ଗୁଡ଼ିକରେ ହିନ୍ଦୁ ଦେବଦେବୀଙ୍କ ପ୍ରତିଷ୍ଠା ସଙ୍ଗେ ସଙ୍ଗେ ବ୍ରାହ୍ମଣ୍ୟ ଧର୍ମ ସମ୍ବନ୍ଧୀୟ ଚରିତାବଳୀର ଚିତ୍ର ଉତ୍କୀର୍ଣ୍ଣ ହୋଇଥାଏ । ଜୈନ ମାନଙ୍କ ମନ୍ଦିର ଚତୁଃପାର୍ଶ୍ୱରେ କ୍ଷୁଦ୍ର କ୍ଷୁଦ୍ର 'ଦେବକୁଳିକା' ବା 'ଚୈତ୍ୟ' ନିର୍ମିତ ହୋଇଥାଏ । ଏହି 'ଦେବକୁଳିକା'ରେ ଜୈନ ତୀର୍ଥଙ୍କରମାନଙ୍କ ପ୍ରତିମୂର୍ତ୍ତି ସ୍ଥାପିତ ହୋଇଥାଏ । ବ୍ରାହ୍ମଣ୍ୟ ଧର୍ମର କେତେକ ମୁଖ୍ୟ ମନ୍ଦିର ଚତୁଃପାର୍ଶ୍ୱରେ କ୍ଷୁଦ୍ର କ୍ଷୁଦ୍ର ମନ୍ଦିର ନିର୍ମିତ ହୋଇଥାଏ । ଏହି ଶ୍ରେଣୀର ମନ୍ଦିର ପଞ୍ଚାୟତନ ମନ୍ଦିର ନାମରେ କଥିତ । ବ୍ରାହ୍ମଣ ମାନଙ୍କ ମନ୍ଦିରର ବିଶେଷତ୍ୱ ହେଲା ଗର୍ଭଗୃହ ଏବଂ ପୀଠ ଦେବତାଙ୍କ ସମ୍ମୁଖସ୍ଥ ମଣ୍ଡପ । କେତେକ ଜୈନ ମନ୍ଦିରରେ ଦୁଇଟି ମଣ୍ଡପ ଓ ଏକ ପ୍ରଶସ୍ତ ବେଦିକା ପରିଲକ୍ଷିତ ହୁଏ । (୨୮) । ଏହି ଦୁଇଟି ଶୈଳୀର ଗର୍ଭଗୃହ ଉପରେ ଶିଖର ଓ ତାହାର ସର୍ବୋଚ୍ଚ ଭାଗରେ ଆମଳକ ନାମକ ଏକ ବଡ଼ ଚକ୍ର ରହିଥାଏ । ଆମଳକ ଉପରେ କଳସ ଓ ଧ୍ୱଜ ଦଣ୍ଡ ମଧ୍ୟ ରହେ । (୨୯) ।

'ମତ୍ସ୍ୟଶାସ୍ତ୍ର', 'କାଶ୍ୟପ ଶିଳ୍ପ' ଆଦି ପ୍ରାଚୀନ ହିନ୍ଦୁ ଶିଳ୍ପ-ଗ୍ରନ୍ଥ ଗୁଡ଼ିକରେ ଜୈନ ଏବଂ ବୌଦ୍ଧ ମନ୍ଦିର ତଥା ମୂର୍ତ୍ତିମାନଙ୍କ ବିଷୟରେ କୌଣସି ଉଲ୍ଲେଖ ମିଳେ । 'ମାନସାର' ଆଦି କେତେକ ଗ୍ରନ୍ଥରେ ଜୈନ,ବୌଦ୍ଧ ତଥା କେତେକ ହିନ୍ଦୁ ମନ୍ଦିର ନଗର ତଥା ଗ୍ରାମର ବହିର୍ଭାଗରେ ନିର୍ମିତ ହେବା ଆବଶ୍ୟକ ବୋଲି ଲିଖିତ ହୋଇଛି —

"ଦୁର୍ଗାଂ ଗଣପତିଂ ଚୈବ, ବୌଦ୍ଧଂ ଜୈନଂ ଗଣାଳୟମ୍
ଅନ୍ୟେଷାଂ ଷଣ୍ମୁଖାଦୀନାଂ ସ୍ଥାପୟେନ୍ନଗରାଦ ବହିଃ ॥"

(ମାନସାର, ୭, ୪୦୧-୭)

ପରନ୍ତୁ 'ମାନସାର'ରେ ବର୍ଣ୍ଣିତ ଏହି ଉକ୍ତିର ସାର୍ଥକତା ଇତିହାସ ଦ୍ୱାରା ବିଶେଷ ସମର୍ଥିତ ହୁଏନାହିଁ । 'ମାନସାର' ବୈଷ୍ଣବ ପକ୍ଷପାତି ଥିବା ନିଶ୍ଚିତ । ତେଣୁ କେବଳ ନଗର ମଧ୍ୟରେ ବିଷ୍ଣୁ ମନ୍ଦିର ସ୍ଥାପନାକୁ ଉକ୍ତ ଗ୍ରନ୍ଥରେ ସମର୍ଥନ କରାଯାଇଛି ଓ ବିଷ୍ଣୁ ମନ୍ଦିର ଥିବା ନଗର ହିଁ ରାଜଧାନୀ ହେବା ଉଚିତ ବୋଲି ଉକ୍ତ ଗ୍ରନ୍ଥରେ ଦର୍ଶାଯାଇଛି ।

"ନଗାଗତେ ନଗର୍ଯ୍ୟନ୍ତ' ଯଦି ବିଷ୍ଣ୍ୱାଳୟ' ଭବେତ୍
ରାଜଧାନୀ ତି ତନ୍ନାମ ବିଦ୍ୱଦ୍ଭିର୍ଷତେ ସଦା ॥"
(ମାନସାର, ୧୦, ୪୭)

ଜୈନ ମୂର୍ତ୍ତିଗୁଡ଼ିକ ସମ୍ବନ୍ଧରେ କେତେକ ବିଷୟ ପ୍ରସଙ୍ଗ କ୍ରମେ ଏଠାରେ ଉଲ୍ଲେଖଯୋଗ୍ୟ । ପାଟନାରୁ ପ୍ରାପ୍ତ ମୌର୍ଯ୍ୟକାଳୀନ ଜୈନମୂର୍ତ୍ତି ଗୁଡ଼ିକରେ ଖୋଦିତ ଲିପିରୁ ସିନ୍ଧୁ ସଭ୍ୟତା ସହିତ ଜୈନଧର୍ମର ସମ୍ପର୍କ ରହିଛି ବୋଲି କେତେକ ଐତିହାସିକ ମତବ୍ୟକ୍ତ କରନ୍ତି । (୩୦) । ଏଥିରୁ ଅନୁମିତ ହୁଏ ଯେ, ଆଜିଠାରୁ ପାଞ୍ଚହଜାର ବର୍ଷ ପୂର୍ବେ ମଧ୍ୟ ଜୈନ ସ୍ତୂପର ସତ୍ତା ଥିଲା ଏବଂ ମଥୁରା (୩୧), ଉଦୟଗିରି ଓ ଖଣ୍ଡଗିରି (୩୨)ର ଜୈନ କୀର୍ତ୍ତି ମଧ୍ୟ ଉକ୍ତ ସ୍ତୂପର ପ୍ରାଚୀନତାର ଦ୍ୟୋତକ । ମଥୁରାସ୍ଥ ସ୍ତୂପ ପାର୍ଶ୍ୱନାଥଙ୍କ ସମୟ ଅର୍ଥାତ୍ ଖ୍ରୀ.ପୂ.ଅଷ୍ଟମ ଶତାବ୍ଦୀର ବୋଲି Dr.Buhler and Dr Smith ମତବ୍ୟକ୍ତ କରନ୍ତି । (୩୩) । ଜୈନସ୍ତୂପ ଉପରେ ମୂର୍ତ୍ତି ପ୍ରତିଷ୍ଠିତ ହେବା ବିଷୟ ଜୈନଶାସ୍ତ୍ର ତଥା ମଥୁରାର ସ୍ତୂପ ଗୁଡ଼ିକରୁ ପ୍ରମାଣିତ ହୁଏ । (୩୪) । ଭକ୍ତିକ ନାମକ ଋଷିଙ୍କ କାଷ୍ଠ ନିର୍ମିତ ପ୍ରତିମୂର୍ତ୍ତିକୁ ତାଙ୍କ ପୁତ୍ର ପୂଜା କରୁଥିଲେ ବୋଲି 'ବ୍ୟବହାରଭାଷ୍ୟ'ରୁ ବିଦିତ ହୁଏ । (୩୫)। ମହାବୀରଙ୍କ ସମୟରେ କାଷ୍ଠ, ମୃତ୍ତିକା ଓ ପ୍ରସ୍ତରରେ ନିର୍ମିତ ଯକ୍ଷମୂର୍ତ୍ତିମାନ ପୂଜିତ ହେଉଥିଲେ । (୩୬) । ଜୈନ ପରମ୍ପରାନୁସାରେ ଉଜ୍ଜୟିନୀର ରାଜା ପ୍ରଦ୍ୟୋତ ଉଜ୍ଜୟିନୀ, ଦଶପୁର ଓ ବିଦିଶା ଠାରେ ମହାବୀରଙ୍କ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ସ୍ଥାପନ କରିଥିଲେ । (୩୭) । ଅଦ୍ୟାବଧି ଉପଲବ୍ଧ ଜୈନ ମୂର୍ତ୍ତି ଗୁଡ଼ିକୁ ତିନି ଭାଗରେ ବିଭକ୍ତ କରାଯାଇପାରେ,ଯଥା— ଉତ୍ତର ଭାରତୀୟ,ଦକ୍ଷିଣ ଭାରତୀୟ ଓ ପୂର୍ବ ଭାରତୀୟ । ଜୈନ ସମ୍ରାଟ ଖାରବେଳଙ୍କ ସମୟ (ଖ୍ରୀ.ପୂ. ପ୍ରଥମ ଶତାବ୍ଦୀ) ଅଥବା ତାଙ୍କ ପୂର୍ବରୁ ଜୈନ ଧର୍ମର ପ୍ରଧାନ କେନ୍ଦ୍ର ଗୁଡିକ ଏହି ତିନୋଟି ଅଞ୍ଚଳରେ ଅବସ୍ଥିତ ଥିଲା । ସେହି ସମୟରେ ଭୁବନେଶ୍ୱର, ପାଟଳିପୁତ୍ର, ମଥୁରା, ଉଜ୍ଜୟିନୀ ଓ କାଞ୍ଚିପୁର ଜୈନଧର୍ମର ପ୍ରଧାନ ପୀଠ ରୂପେ ଖ୍ୟାତି ଲାଭ କରିଥିଲା । ଏହି କେନ୍ଦ୍ର ସ୍ଥାନ ଗୁଡ଼ିକର ସମୀପବର୍ତ୍ତୀ ଅଞ୍ଚଳ ଏବଂ ସେଠାର ଅଧିବାସୀମାନଙ୍କ ଉପରେ ମଧ୍ୟ ଉକ୍ତ ସ୍ତୂପର ପ୍ରଭାବ ପଡ଼ିଥିବା ସ୍ୱାଭାବିକ । ବୁଲନ୍ଦର ଠାରୁ ଉତ୍ତର ପଞ୍ଜାବ ପର୍ଯ୍ୟନ୍ତ ଏହି ବିସ୍ତୃତ ଅଞ୍ଚଳରେ ବହୁ ଜୈନ ପ୍ରତିମା ଦୃଷ୍ଟ ହୁଏ । ଏହି ପ୍ରତିମା ଗୁଡ଼ିକ ମଧ୍ୟରେ ବିଶେଷତଃ ମୁଖାକୃତି, ଶରୀରଗଠନ ଆଦିରେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ନାହିଁ । ତକ୍ଷଶିଳା ଆଦିରୁ ପ୍ରାପ୍ତ ଜୈନ ପ୍ରତିମା ଗୁଡ଼ିକର ନିର୍ମାଣ ଶୈଳୀରେ ଗାନ୍ଧାର ଶିଳ୍ପକଳାର ଅପ୍ରତିହତ ପ୍ରଭାବ ଥିବା ଅନେକ ଐତିହାସିକ ଅନୁମାନ କରନ୍ତି । କିନ୍ତୁ ଉତ୍ତର

ଭାରତର ପ୍ରାଚୀନ ମୂର୍ତ୍ତିଗୁଡ଼ିକ ମଥୁରାରେ ନିର୍ମିତ ହୋଇଥିବା ନିଃସନ୍ଦେହ । ଦକ୍ଷିଣ ଓ ଉତ୍ତର ଭାରତର ଜୈନ ମୂର୍ତ୍ତିଗଠନ ଶୈଳୀରେ ଶିଳ୍ପବୈଚିତ୍ର୍ୟର ପାର୍ଥକ୍ୟ ପରିଦୃଷ୍ଟ ହୁଏ । ଦକ୍ଷିଣ ଭାରତୀୟ ଜୈନ ମୂର୍ତ୍ତିର ଗଠନ ପ୍ରଣାଳୀରେ ଦ୍ରାବିଡ଼ ସ୍ଥାପତ୍ୟର ବିଶେଷ ପ୍ରଭାବ ରହିଛି । ପୂର୍ବ ଭାରତ ଅର୍ଥାତ୍ ବଙ୍ଗ, ବିହାର ଓ ଓଡ଼ିଶାରୁ ପ୍ରାପ୍ତ ଜୈନମୂର୍ତ୍ତି ଗୁଡ଼ିକ (୩-) ସ୍ୱସ୍ୱ ସ୍ଥାନର ବିଶେଷତ୍ୱ ପ୍ରକାଶ କରନ୍ତି । ଏ ସମ୍ପର୍କରେ ଅଧିକ ଗବେଷଣା କଲେ ଉକ୍ତ ବିଶେଷତ୍ୱ ସମ୍ବନ୍ଧରେ ଆହୁରି ଅଧିକ ତଥ୍ୟ ଉଦ୍‌ଘାଟିତ ହୋଇପାରିବ ।

'ବସୁନନ୍ଦୀ', 'ଏକ ସନ୍ଧି', 'ଆଶାଧର', 'ବିବେକ ବିଳାସ' ଆଦି ଗ୍ରନ୍ଥ ଗୁଡ଼ିକରେ ମଧ୍ୟ ମନ୍ଦିର ତଥା ମୂର୍ତ୍ତି ସମ୍ବନ୍ଧୀୟ କେତେକ ବିଶେଷ ଜ୍ଞାତବ୍ୟ ବିଷୟର ଉଲ୍ଲେଖ ରହିଛି ।

ପ୍ରସ୍ତୁତ ପ୍ରବନ୍ଧରେ ମନ୍ଦିର ଓ ମୂର୍ତ୍ତିମାନଙ୍କ ସମ୍ପର୍କରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବିଦ୍ୱାନ୍‌ମାନଙ୍କ ମତ ବିଚାର କଲେ ଜଣାଯାଏ ଯେ ପ୍ରୋକ୍ତ ବିଷୟରେ ଅଦ୍ୟାପି ଆମର କୌଣସି ନିର୍ଦ୍ଦିଷ୍ଟ ଧାରଣା ହୋଇପାରିନାହିଁ । ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଉପରେ କୌଣସି ପ୍ରାମାଣିକ ମନ୍ତବ୍ୟ କରିବା ମଧ୍ୟ ସହଜ ନୁହେଁ । ଅତଏବ ଅନୁମାନ ହିଁ ଏପ୍ରକାର ଆଲୋଚନାର ମୂଳ ଆଧାର ବୋଲି କହିଲେ ଅଯୁକ୍ତ ହେବ ନାହିଁ ।

ପାଦଟୀକା :

୧. P.K. Acharya, Manasara—Hindu Architecture in India and abroad, vol V, pp 201-10

୨. J.N. Banerjee, Development of Hindu Iconography, pp 576-578.

୩. Journal of the Bombay Branch of Royal Asiatic Society,' vol XXIII, p 104; Epigraphia Indica, vol XVI, pp 27 ff,

୪. R.G. Bhandarkar, Vaishnavism, Saivism and Minor Religious Systems, Strassburg, 1913, pp 20 ff; H.C. Raychaudhury, political History of Ancient India, pp 394-395.

୫. Sir Mortimore wheeler, Civilization of Indus valley and beyond, pp 40-44; Sir John Marshall, Mohenjodaro and Indus Civilization, plate XII, figures, 13, 14, 15, 19 and 22; G.C. Pandey, Studies in origin of Buddhism, p 317.

୬. ଡେଭିଲ୍ସ୍ ସନ୍ଧ୍ୟା, ୪. ୧୧ ।

୭. P.K. Acharya, Manasara-Hindu Architecture in India and abroad, vol VI 1946) p 263; S.K. Saraswati, History and Culture of Indian People, vol V, pp 530-574.

୮. P.K. Acharya, Manasara-Hindu Architecture in India and Abroad, vol III, p 258

୯. Paramananda Acharya (Padmasree studies in Orissan History, Archaeology and Archives, pp 380-386; Orissa Historical Research Journal, vol XII, No I, 1964.

୧୦. R. D.Banerjee, History of Orissa, vol II, p 335.

୧୧. Journal of Bihar and Orissa, research Society, vol XVIII, pp 119 f ( 1931).

୧୨. Epigraphia Indica, vol XIII, (1915-16) pp 150-155, verse 16, Journal of Bihar and Orissa Research Society, vol XV (1929) p 282; Orissa Historical Research Journal, vol I, No 4, p 274.

୧୩. B.A. Sabtore, Medieval Jainism, p 169, Bombay, 1938.

୧୪. Epigraphia Cornatica, vol 7, pp 87-170; A.H. Longhurst, pallava Architecture (Memoir of the Archaeological Survey of India, No 17).

୧୫. I bid, vol 7, sk 120, 124, 136.

୧୬. Epigraphia Indica, vol 6, p 1; P.B Desai,Jainism is South India and some Jaina Epigraphs, p 104.

୧୭. P.B, Desai, Jainism in South India and some Jaina Epigraphs, p 19.

୧୮. E.I, vol 24, No 38, p 268 ff.

୧୯. B.A. Sabtore, Medieval Jainism, p 169.

୨୦. R N.Nandi, Religious cults and Institutions in the Deccan, p 10.

୨୧. P.B.Desai, Jainism in South India and some Jaina Epigraphs, p 259.

୨୨. Epigraphia Indica, vol 27, No 5, p 177 f.

୨୩. Indian Antiquary, vol 3, p 31 and p 154.

୨୪. Dr.K.C.Panigrahi, Chronology of the Bhaumakaras and Somavansis of Orissa, p 53 and p 55; Inscriptions of Orissa, vol IV, pp 242-243.

୨୫. South Indian Inscriptions, vol X, No 710.

୨୬. S.B. Deo. History of Jaina Monachnism, p 397 (Poona, 1956

୨୭. ଜଟାସିଂହ ନନ୍ଦୀଙ୍କ ବରାଙ୍ଗ ଚରିତ, ୨୨ ଅଧ୍ୟାୟ, ଶ୍ଳୋକ ୪୭, ୫୧ ଏବଂ ୫୭.

୨୮. Moti chandra, Architectural Date in Jaina canonical literature, Journal of U P. •Historical Research Society, vol XXII, 1949.

୨୯. ବସ୍ତୁତ ବିବରଣୀ ନିମନ୍ତେ Percy Brown ଙ୍କ Indian Architecture (Buddhist and Hindu), Bombay, 1959, 4th Edition, U.P.Shah ଙ୍କ Studies in Jaina Art, A. K. Coomaraswamy ଙ୍କ History of Indian and Indonesian Art, London, 1927 ପ୍ରଭୃତି ଗ୍ରନ୍ଥ ଦ୍ରଷ୍ଟବ୍ୟ ।

୩୦. K.N. Dikshit, Pre-historic Civilization of the Indus valley, pp 25-83.

୩୧. V.S Agrawal, Jaina Art of Mathura', Babu chotalal Jaina Smriti Grantha, Calcutta (1967), pp 87-92.

୩୨. Debala Mitra, Udayagiri and Khandagiri, Kanpur 1960 (Archaeological Survey of India); R.P. Mahapatra, Udayagiri and Khandagiri caves, D.K.Publications, Delhi, 1981.

୩୩. V. A. Smith, Jaina Stupas and other Antiquities of Mathura, p 13.

୩୪. K P. Jaina, 'Digambara Jaina Stupa at Mathura', Indian Historical Quarters, vol VI, No 2, pp 376-377.

୩୫. ବ୍ୟବହାର ଭାଷ୍ୟ, ୨. ୧୧.

୩୬. ବୃହତ୍ ଭାଷ୍ୟ, ୧, ୧୪୬୯

୩୭. ଜୈନ ଧର୍ମ ସଂଗ୍ରହ, ପୃ ୩୧୧

୩୮. A. K. Rath, 'Jainism in Early Medieval Orissa', The Journal of Orissan History, vol V, No I, pp 9-17 (1983).



# ଦ୍ୱାଦଶ ଅଧ୍ୟାୟ

## ଜୈନଧର୍ମ ଓ ଚିତ୍ରକଳା

ସାଧାରଣତଃ ଉନ୍ନତ ସାହିତ୍ୟ ଏବଂ ଉତ୍କୃଷ୍ଟ କଳା ମାଧ୍ୟମରେ ଯେ କୌଣସି ଧର୍ମ ପ୍ରତିଷ୍ଠା ଲାଭ କରିଥାଏ । ଏହି ଦୃଷ୍ଟିକୋଣରୁ ଜୈନଧର୍ମ ବିଦ୍ୱାନ ଓ ବିବେଚକଙ୍କ ଦ୍ୱାରା ସମାଦୃତ ଏବଂ ଲୋକ କଲ୍ୟାଣ କିମ୍ବା ଦାର୍ଶନିକ ଗରିମାରେ ଯେ କୌଣସି ଧର୍ମର ସମକକ୍ଷ । ଭାରତୀୟ ସଂସ୍କୃତିର ଇତିହାସ ସହିତ ଜୈନକଳା ଓ ସଂସ୍କୃତି ଓତପ୍ରୋତ ଭାବେ ଜଡ଼ିତ । ଜୈନ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟକୁ ବିଶ୍ଳେଷଣ କଲେ ଜୈନଧର୍ମ ସମ୍ବନ୍ଧୀୟ ବହୁ ତଥ୍ୟ ଉଦ୍‌ଘାଟିତ ହୋଇପାରିବ । କଳାର ମାଧ୍ୟମରେ ଯେ କୌଣସି ଧର୍ମର ତତ୍ତ୍ୱ ଉପଲବ୍‌ଧ ହୋଇଥାଏ । ଏଣୁ ସମାଜରେ ଧର୍ମକୁ ଜନପ୍ରିୟ ଓ ଚିରସ୍ଥାୟୀ କରିବାରେ ଶିଳ୍ପୀ ତଥା ଶିଳ୍ପ କଳାର ଭୂମିକା ବାସ୍ତବିକ୍ ମହତ୍ତ୍ୱପୂର୍ଣ୍ଣ । ଇତିହାସ ସଙ୍କଳନର କେତେକ ମୌଳିକ ଉପାଦାନ କଳାର ମାଧ୍ୟମରେ ପ୍ରାପ୍ତ ହୋଇଥାଏ । ହରପ୍‌ପା ଓ ମୋହେଞ୍ଜୋଦାରୋରୁ ଆବିଷ୍କୃତ ନଗ୍ନ ପୁରୁଷ ମୂର୍ତ୍ତିକୁ (୧) ଯଦି ଜୈନ ତୀର୍ଥଙ୍କର ବୋଲି ବୁଝାଯାଏ ତେବେ ଏହା ନିଶ୍ଚିତ ଯେ କଳାର ବିକାଶ ଅତି ପ୍ରାଚୀନ କାଳରୁ ଦେଶର ବିଭିନ୍ନ ଅବସ୍ଥା ଓ ସମସାମୟିକ ସାମାଜିକ ପରିବେଶ ମଧ୍ୟରେ ନବନବ ରୂପରେ ପରିସ୍ଫୁଟ ହୋଇଛି । ଏହି ରୂପାୟନ ମଧ୍ୟରେ ବିଭିନ୍ନ ଧର୍ମ, ତାହାର ପ୍ରତୀକ ଏବଂ ପୂଜିତ ପ୍ରତିମାର ବିଭିନ୍ନ ପରିଧାନ ଆୟୁଧ ଓ ବାହନ ପ୍ରଭୃତିର ଯେଉଁ ସୂଚନା ମିଳେ ତାହା ଏକ ନିରବଚ୍ଛିନ୍ନ ଐକ୍ୟର ପ୍ରମାଣ ଦିଏ ।

କେତେକ ବିଦ୍ୱାନ୍ ଭାରତୀୟ କଳା ଅଧ୍ୟୟନର ପ୍ରାରମ୍ଭିକ କାଳରେ ଜୈନ, ବୌଦ୍ଧ ଅଥବା ହିନ୍ଦୁ (ବ୍ରାହ୍ମଣ୍ୟ) ଶୈଳୀର କଳା ମଧ୍ୟରେ ବର୍ଗୀକରଣ କରିବାକୁ ଉଦ୍ୟମ କରିଥିଲେ । କିନ୍ତୁ **Buhler** ଙ୍କ (୨) ପରି ଐତିହାସିକମାନେ ଏହି ତ୍ରୁଟିପୂର୍ଣ୍ଣ ବର୍ଗୀକରଣ ମାର୍ଜିତ କରି ଭାରତୀୟ କଳା ଏକ ଅବିଚ୍ଛିନ୍ନ ପ୍ରବାହ ରୂପେ ଜୀବିତ ରହିଛି ବୋଲି ମତ ବ୍ୟକ୍ତ କରିଛନ୍ତି । ଜୈନ, ବୌଦ୍ଧ ଓ ହିନ୍ଦୁ ଧର୍ମୀ ଦେଶ, କାଳ ଓ ପାତ୍ରର ଆବଶ୍ୟକତାନୁସାରେ କଳାର ଚର୍ଚ୍ଚା କରାଇଛନ୍ତି । ସ୍ତୂପ, ଚୈତ୍ୟ ପବିତ୍ର ବୃକ୍ଷ, କିମ୍ବା ଚକ୍ର ଏହି ସବୁ ଧର୍ମରେ ଧର୍ମର ପ୍ରତୀକ ଓ କଳାର ବୈଶିଷ୍ଟ୍ୟ ଯେନ ଗୋଟିଏ ସ୍ରୋତରେ ପ୍ରବାହିତ । ବିଖ୍ୟାତ କଳାବିତ୍ ଆନନ୍ଦକୁମାର ସ୍ୱାମୀଙ୍କ ମତରେ (୩) ଭାରତୀୟ କଳା ଧର୍ମମୂଳକ ହେଲେ ମଧ୍ୟ ତାହାର ଶୈଳୀ ସାମ୍ପ୍ରଦାୟିକ ଦୋଷରେ ଦୁଷ୍ଟ ନୁହେଁ । ଏହି ସତ୍ୟ ପ୍ରତି ଧ୍ୟାନ ନଦେଇ କେତେକ ପଣ୍ଡିତ ଜୈନ କଳା ବିଷୟରେ ବହୁ ଭ୍ରମାତ୍ମକ ମତପୋଷଣ କରନ୍ତି । ଜୈନ ଏବଂ ବୌଦ୍ଧ ଗୁମ୍ଫା ଓ ମନ୍ଦିରମାନଙ୍କରେ ଖୋଦିତ ଅପ୍‌ସରା ଏବଂ ଯକ୍ଷ

ମୂର୍ତ୍ତିମାନଙ୍କ ସମ୍ପର୍କରେ ପଣ୍ଡିତ କାଶୀପ୍ରସାଦ ଜୟସ୍ୱାଲ କହନ୍ତି, ସେଗୁଡ଼ିକ ବୁଦ୍ଧ ତଥା ବ୍ରାହ୍ମଣ୍ୟ କଳାର ପ୍ରଭାବର ଫଳ । ମାତ୍ର କଳାର ଏହି ପ୍ରତୀକ ମାନଙ୍କ ଉପରେ ବ୍ରାହ୍ମଣ୍ୟ ସମ୍ପ୍ରଦାୟ ବା ବୁଦ୍ଧ ଧର୍ମର ଯେତିକି ଅଧିକାର ଥିଲା ଜୈନ ଏବଂ ବୌଦ୍ଧମାନଙ୍କର ତାହାଠାରୁ କମ୍ ନଥିଲା । ଭାରତୀୟ କଳାର ଏହି ତିନୋଟି ଶାଖା, ଯଥା ଜୈନ, ବୌଦ୍ଧ ଓ ବୁଦ୍ଧ କଳା ପରସ୍ପର ମଧ୍ୟରେ ନିର୍ଭରଶୀଳ ହେବା ସହିତ ସମନ୍ୱୟୀ ଥିଲେ । ସୁତରାଂ ଡ଼ । ଜୟସ୍ୱାଲଙ୍କ ଉକ୍ତି ଗ୍ରହଣୀୟ ନୁହେଁ ।

ମାନବ ଶିଶୁର ଚକ୍ଷୁ ଉନ୍ମୀଳିତ ହେବା ମାତ୍ରେ ବାହ୍ୟ ସୃଷ୍ଟିର ବିବିଧ ବସ୍ତୁଗୁଡ଼ିକ ଅଜ୍ଞାତସାରରେ ତା'ର କଳ୍ପନାଶୀଳ ମନରେ ପ୍ରତିଫଳିତ ହୋଇଥାଏ । ସଂସାରର ପ୍ରତ୍ୟେକ ପରମାଣୁ ଏହା ଉପରେ ପ୍ରଭାବ ପକାଇଥା'ନ୍ତି । ଯେଉଁମାନେ ଏ ସଂସ୍କାର ଗ୍ରହଣ କରିବାରେ ସମର୍ଥ ହୁଅନ୍ତି ସେମାନଙ୍କର ବୈଶିଷ୍ଟ୍ୟ ପରିସ୍ଫୁଟ ହୁଏ । ଏହି ଗୃହୀତ ସଂସ୍କାରକୁ ମନୁଷ୍ୟ କେବଳ ନିଜ ମଧ୍ୟରେ ଆବଦ୍ଧ କରିବାକୁ ଚାହେଁ ନାହିଁ । ବରଂ ଅନ୍ୟ ନିକଟରେ ପ୍ରକାଶ କରିବା ପାଇଁ ବ୍ୟଗ୍ର ହୁଏ । ମାନବ ହୃଦୟ ଓ ମସ୍ତିଷ୍କର ରଚନା ହିଁ ଏପରି ହୋଇଛି ଯେ ଚତୁର୍ଦ୍ଦିଗ ସଂସାରର ବାତାବରଣ ତାହାକୁ ପ୍ରଭାବିତ କରେ । ପ୍ରଖର ପବନ ଜଳରାଶି ଉପରେ ନିଜର ପ୍ରଭାବ ଅଙ୍କିତ କଲାଭଳି ମାନବ ମସ୍ତିଷ୍କରେ ମଧ୍ୟ ଜଡ଼ ଚେତନ ପଦାର୍ଥର ଚିତ୍ରଗୁଡ଼ିକ ଅଙ୍କିତ ହୋଇଥାଏ । ମନୁଷ୍ୟର ଆତ୍ମାରୁ ଏକ ନୈସର୍ଗିକ ପ୍ରେରଣା ଉତ୍ପନ୍ନ ହୁଏ । ସେହି ଚିତ୍ରଗୁଡ଼ିକୁ ଅଭିବ୍ୟକ୍ତ କରିବା ନିମନ୍ତେ ଅଭିବ୍ୟଞ୍ଜନାର ଏହି ପ୍ରଣାଳୀ ହିଁ କଳା । କଳାତ୍ମକ ଅଭିବ୍ୟକ୍ତି ଦ୍ୱାରା ମନୁଷ୍ୟକୁ ପଶୁପକ୍ଷୀମାନଙ୍କ ଠାରୁ ପୃଥକ୍ କରାଯାଇପାରୁଛି । ଯେକୌଣସି ଦେଶର ସଭ୍ୟତା ତଥା ସାଂସ୍କୃତିକ ପରମ୍ପରା ଉକ୍ତ ଦେଶର କଳାତ୍ମକ କୀର୍ତ୍ତି ଦ୍ୱାରା ପରିପୁଷ୍ଟ । ଯେପରି ଆତ୍ମା ବିହୀନ ଶରୀର ହେଉଛି ଜଡ଼; ସେପରି କଳା-କୃତି ବିହୀନ ସଂସ୍କୃତି ନୀରସ । କଳାତ୍ମକ କୀର୍ତ୍ତି ବିନା ସଂସ୍କୃତିର ସ୍ୱରୂପ ଅସ୍ପଷ୍ଟ ହୋଇଥାଏ ।

ଭାରତୀୟ କଳାର କ୍ରମ ବିକାଶରେ ଜୈନାଚାର୍ଯ୍ୟଙ୍କ ସ୍ଥାନ ଅତୀବ ମହତ୍ତ୍ୱପୂର୍ଣ୍ଣ । କାରଣ ଉଚ୍ଚକୋଟୀର କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଦ୍ୱାରା ହିଁ ଯେ କୌଣସି ଧର୍ମ ନିଜର ଅସ୍ତିତ୍ୱ ସିଦ୍ଧ କରିପାରେ । ସାଂସ୍କୃତିକ ମହତ୍ତ୍ୱ ଓ ଗୌରବ ଗରିମା ହିଁ ଧର୍ମର ପ୍ରାଣ । କଳାର ସୁଖ୍ୟାତ ଗବେଷକ ଆନନ୍ଦ କୁମାର ସ୍ୱାମୀଙ୍କ ମତରେ ଶୁଦ୍ଧ ଶୈଳୀ ଦୃଷ୍ଟିରୁ ବିଚାର କଲେ କଳାରେ ପ୍ରାନ୍ତୀୟ ବା ସାମ୍ପ୍ରଦାୟିକ ଭେଦଭାବ ରଖିବା ଉଚିତ ନୁହେଁ । ପରିସ୍ଥିତି ଓ ପରିବେଷ୍ଟନୀ ଅନୁସାରେ କଳାର ବର୍ଗୀକରଣ ହିଁ ସମ୍ଭବ । ଭାରତର ପ୍ରଧାନ ତିନୋଟି ଧର୍ମ— ଜୈନ, ବୌଦ୍ଧ ଓ ବ୍ରାହ୍ମଣ୍ୟ ଧର୍ମରେ କଳାର ଭାବନା ଆନ୍ତରିକ ସୌନ୍ଦର୍ଯ୍ୟାଭିବ୍ୟକ୍ତିରେ ହିଁ ନିହିତ । ଅତଏବ କଳାରେ ଶୈଳୀଗତ ଭେଦ ଭାବର ଅବକାଶ ନାହିଁ । ଜୈନ କଳାକାରମାନେ ପ୍ରସ୍ତର ଅଥବା କାଗଜ ମାଧ୍ୟମରେ ଆଧ୍ୟାତ୍ମିକ ରହସ୍ୟ ଉଦ୍‌ଘାଟନ କରିବାକୁ ଯାଇ ଆଶାତୀତ ସଫଳତା ଲାଭ କରିଛନ୍ତି ।

ବସ୍ତୁତଃ ଲଳିତ କଳାମାନଙ୍କ ମଧ୍ୟରେ ଚିତ୍ରକଳାର ସ୍ଥାନ ଅଦ୍ୱିତୀୟ । କଥିତ ଅଛି --"ଯଥା ସୁମେରୁଃ ପ୍ରବରୋ ନଗାଣାଂ ଯଥାଣ୍ଡଜାନାଂ ଗରୁଡ଼ଃ ପ୍ରଧାନଃ ଯଥା ନରାଣାଂ ପ୍ରବରଃ କ୍ଷିତୀଶ ସ୍ତଥା କଳାନାମିହ ଚିତ୍ରକଳ୍ପଃ" ।। ଅର୍ଥାତ୍ ଯେଉଁପରି ଅଣ୍ଡଜ ପ୍ରାଣୀମାନଙ୍କ ମଧ୍ୟରେ ଗରୁଡ଼, ପର୍ବତମାନଙ୍କ ମଧ୍ୟରେ ସୁମେରୁ, ଲୋକମାନଙ୍କ ମଧ୍ୟରେ ରାଜା ପ୍ରଧାନ, ସେହିପରି କଳା ମଧ୍ୟରେ ଚିତ୍ରକଳା ପ୍ରଧାନ । (୪) । ଚିତ୍ରକଳା ମାଧ୍ୟମରେ ମାନବ ଜାତିର ବ୍ୟାପକ ଓ ଗମ୍ଭୀର ଭାବ ଗୁଡ଼ିକୁ ସର୍ବସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରାଯାଇପାରେ । ଜୈନ ଶିଳ୍ପୀମାନେ ମୂକ ଭାଷାରେ ନିଜର ମସ୍ତିଷ୍କର ବିଚାର ଓ ହୃଦୟର ଗୂଢ଼ତମ ଭାବନାଗୁଡ଼ିକର ପ୍ରବାହକୁ ତୂଳୀ ଓ ରଙ୍ଗ ସାହାଯ୍ୟରେ କାଗଜରେ ରୂପାୟିତ କରିଛନ୍ତି । କାଗଜ ଉପରେ ଚିତ୍ରାଙ୍କନ କରିବା କ୍ଷେତ୍ରରେ ଜୈନ ଶିଳ୍ପୀମାନେ ହିଁ ଅଗ୍ରଣୀ ଥିଲେ । କଳା ସମାଲୋଚକମାନେ ଜୈନ ଚିତ୍ର କଳାକୁ ପୃଥକ୍ ସ୍ଥାନ ଦେଇନଥିଲେ ମଧ୍ୟ ବିଶେଷ ଭୌଗୋଳିକ ପରିସ୍ଥିତିରେ ତାହାକୁ ଭାରତୀୟ କଳାର ଅନ୍ତର୍ଭୁକ୍ତ କରାଇଛନ୍ତି । ତଥାପି ଏକଥା ସମସ୍ତେ ସ୍ୱୀକାର କରିଛନ୍ତି ଯେ ଜୈନ ଚିତ୍ରଗୁଡ଼ିକରେ ଅଭିବ୍ୟଞ୍ଜନାର ସମ୍ବନ୍ଧ ଧର୍ମ ସହ ସ୍ଥାପନ କଲେ ମଧ୍ୟ ଜୈନ ଚିତ୍ର ହୃଦୟର ତନ୍ତ୍ରୀକୁ ଝଙ୍କୃତ କରିବାରେ ସମର୍ଥ ହୁଏ ।

ଜୈନ ଚିତ୍ରଗୁଡ଼ିକରେ ଏକ ପ୍ରକାର ନିର୍ମଳତା, ସ୍ଫୂର୍ତ୍ତି ଓ ଗତିବେଗ ଅବଶ୍ୟ ପରିଲକ୍ଷିତ ହୁଏ । ଏହି ଚିତ୍ରଗୁଡ଼ିକର ପରମ୍ପରା ଅଜନ୍ତା, ଏଲୋରା, ବାଘ, ସିତ୍ତନ୍ନବାସଲ, ବଦସା, କନ୍ହେରି ଏବଂ ବାଦାମିର ଭିତ୍ତି ଚିତ୍ରରେ ପରିସ୍ଫୁଟ ହୋଇଛି । (୫) । ଏହି ଚିତ୍ର ଗୁଡ଼ିକରୁ ବହୁ ତଥ୍ୟ ଏବଂ ଉପାଦାନ ମିଳିଥାଏ ଯଦ୍ୱାରା କି ସମକାଳୀନ ସଭ୍ୟତା ଜାଣିହୁଏ । ଏହି ଚିତ୍ରଗୁଡ଼ିକ ସାମାଜିକ ପଦ୍ଧତିର ଗୋଟିଏ ଗୋଟିଏ ଦର୍ପଣ କହିଲେ ଅତ୍ୟୁକ୍ତି ହେବନାହିଁ । ବିଶେଷତଃ ତତ୍କାଳୀନ ଜନସାଧାରଣଙ୍କର ଚାଲିଚଳଣ, ଖାଦ୍ୟ, ପୋଷାକ, ଅଳଙ୍କାର, ସାମାଜିକ ଅନୁଷ୍ଠାନ, ରୀତି-ନୀତି, ହାବ-ଭାବ, ପର୍ବ-ପର୍ବାଣି ଓ ସାମାନ୍ୟ ଉପଯୋଗୀ କେତେକ ବସ୍ତୁ ଆଦିର ଯଥେଷ୍ଟ ଆଭାସ ମିଳେ ଏହି ଚିତ୍ରଗୁଡ଼ିକରୁ । ଜୈନ ଚିତ୍ରଗୁଡ଼ିକରେ ଏକ ନୈସର୍ଗିକ ଅନ୍ତ ପ୍ରବାହ, ଗତି ଓ ଭାବ ନିଦର୍ଶନ ବିଦ୍ୟମାନ । (୬) ।

ଜୈନ ଚିତ୍ରକଳା ନିରୀକ୍ଷଣ କଲେ ତାହା ଉଚ୍ଚସ୍ତରୀୟ ମନେହୁଏ । ଜୈନାବଲମ୍ବୀମାନେ ଜୈନ ଧର୍ମର ସିଦ୍ଧାନ୍ତ ଓ କଥା ଗୁଡ଼ିକ ସ୍ପଷ୍ଟ କରିବା ନିମନ୍ତେ ସ୍ୱହସ୍ତରେ ଚିତ୍ରାଙ୍କନ କରିଥିଲେ । ଜୈନ ରାଜା ମାନେ ମଧ୍ୟ ନିଜେ ନିଜର କଳାପ୍ରିୟତାର ପରିଚୟ ଦେବା ପାଇଁ ତାହାର ପୃଷ୍ଠପୋଷକତା କରିଥିଲେ ଏବଂ ମନ୍ଦିର, ଗୁମ୍ଫା ଓ ଗ୍ରନ୍ଥ ଗୁଡ଼ିକରେ କୁଶଳ ଚିତ୍ରକରଙ୍କ ଦ୍ୱାରା ଚିତ୍ର ଅଙ୍କନ କରାଇଥିଲେ । ଏହିପରି ଧର୍ମର ଆଶ୍ରୟ ପାଇ ଜୈନ ଚିତ୍ରକଳାରେ ଆଧ୍ୟାତ୍ମିକ, ନୈତିକ, ସାମାଜିକ ଓ ପ୍ରାକୃତିକ ରହସ୍ୟଗୁଡ଼ିକର ଅଭିବ୍ୟଞ୍ଜନା କରାଗଲା ।

ବାତ୍ସାୟନଙ୍କ କାମସୂତ୍ରରେ ଚିତ୍ରକଳାକୁ ଚଉଷଠି କଳା ମଧ୍ୟରେ ଅନ୍ୟତମ ବୋଲି ବିବେଚନା କରାଯାଇଛି । କାମସୂତ୍ରର ଟୀକାକାର ଯଶୋଧରଙ୍କ ମତରେ ଚିତ୍ରକଳାର ଛଅ ଅଂଗ ହେଲା — ରୂପଭେଦ, ପ୍ରମାଣ, ଭାବ, ଲାବଣ୍ୟ, ଯୋଜନା ଓ ବର୍ଣ୍ଣିକା ଭଙ୍ଗୀ । ଗୁପ୍ତ ଯୁଗରେ ରଚିତ ବିଷ୍ଣୁଧର୍ମୋତ୍ତର ପୁରାଣରେ ଚିତ୍ରବିଦ୍ୟା, ଚିତ୍ରକଳାର ଶ୍ରେଣୀକରଣ ଓ ଭିତ୍ତିଚିତ୍ରର ଶୈଳୀ ସମ୍ପର୍କରେ ଏକ ସମ୍ପୂର୍ଣ୍ଣ ଅଧ୍ୟାୟ ରହିଛି । ସେଥିରେ ଧର୍ମାନୁଷ୍ଠାନ, ରାଜପ୍ରାସାଦ ଏବଂ ସାଧାରଣ ବାସଗୃହ ନିମନ୍ତେ ଉଦ୍ଦିଷ୍ଟ ବିଭିନ୍ନ ପ୍ରକାର ଚିତ୍ର ବର୍ଣ୍ଣିତ ହୋଇଛି । ଜୈନ ମତରେ ସମ୍ୟକ୍ ଦର୍ଶନରୁ ଚିତ୍ରକଳାର ଉତ୍ପତ୍ତି । (୭) ।

ଗୁପ୍ତ ଯୁଗରେ ଚିତ୍ରକଳାର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ବିଶାଖଦତ୍ତଙ୍କ ରଚିତ ମୁଦ୍ରାରାକ୍ଷସର 'ଯମପଟ୍ଟ' ଓ ବୃଦ୍ଧଘୋଷଙ୍କର 'ଚରଣ ଚିତ୍ର' ବର୍ତ୍ତମାନର ପଟ୍ଟଚିତ୍ର ସଦୃଶ ଥିଲା । ମନୁଷ୍ୟ ସ୍ୱକୃତ କର୍ମର ଫଳ ପରଜନ୍ମରେ କିପରି ଭୋଗକରେ ସେ ସମ୍ପର୍କରେ ବସ୍ତ୍ର ଉପରେ ଅଙ୍କିତ ବିଭିନ୍ନ ଚିତ୍ରକୁ 'ଯମପଟ୍ଟ' କୁହାଯାଉଥିଲା । ଚିତ୍ରାଙ୍କନ ମାଧ୍ୟମରେ ମନୁଷ୍ୟର ସୁଖ-ଦୁଃଖର ଯେଉଁ ଭାବକୁ ବ୍ୟକ୍ତ କରାଯାଉଥିଲା ତାହା 'ଚରଣ ଚିତ୍ର' ନାମରେ ଅଭିହିତ । ବୋଧହୁଏ ସର୍ବସାଧାରଣଙ୍କୁ ସଚେତନ କରାଇବା ଉଦ୍ଦେଶ୍ୟରେ ଏହି 'ଯମପଟ୍ଟ' ଓ ଚରଣ 'ଚିତ୍ର' ଗୁଡ଼ିକ ଭ୍ରାମ୍ୟମାଣ ଚିତ୍ରଶାଳା ଓ କଳାକୁଞ୍ଜ ଗୁଡ଼ିକରେ ପ୍ରଦର୍ଶିତ ହେଉଥିଲା ।

ଗୁପ୍ତ ଯୁଗରେ ଚିତ୍ରାଙ୍କନ କରିବା ନିମନ୍ତେ ଏକ ନିର୍ଦ୍ଦିଷ୍ଟ ପ୍ରଣାଳୀ ଅନୁସୃତ ହେଉ-ଥିଲା । ଚିତ୍ରାଙ୍କନ କରିବା ନିମନ୍ତେ ଚିତ୍ରକର ପ୍ରଥମେ ପ୍ରସ୍ତର ଚୂର୍ଣ୍ଣ, ମୃତ୍ତିକା ଓ ଗୋମୟ ପ୍ରଭୃତିର ସମ୍ମିଶ୍ରଣକୁ ମାଟିରେ ଚକଟି ପ୍ରସ୍ତର ପ୍ରାଚୀର ବା କାଷ୍ଠ ଦେହରେ ପ୍ରଲେପ କରୁଥିଲେ । ତାପରେ ପ୍ରାଚୀରରେ ଚୂର୍ଣ୍ଣ ଲେପନ କରାଯାଉଥିଲା । ଏହାଦ୍ୱାରା ପ୍ରାଚୀରଟି ସମତଳ ଓ ମସୃଣ ହୋଇଥିଲା । ଏହାପରେ ଚିତ୍ରକର ଲୋହିତ ବର୍ଣ୍ଣର ଧାତୁରାଗ (Red Ochre) ଅଥବା ଗେରୁଆ ମାଟି ସାହାଯ୍ୟରେ ରେଖାଚିତ୍ର ଅଙ୍କନ କରୁଥିଲେ । ବିଭିନ୍ନ ପ୍ରକାର ରଙ୍ଗ ସାହାଯ୍ୟରେ ମଧ୍ୟ ଚିତ୍ରାଙ୍କନ କରାଯାଉଥିଲା । ଲୋହିତ ବର୍ଣ୍ଣ ପାଇଁ ଧାତୁରାଗ (Red Ocbre), କୁଙ୍କୁମ ଓ ହିଙ୍ଗୁଳ (Vivid Red), ପୀତ ବର୍ଣ୍ଣ ପାଇଁ ହରିତାଳ (Yellow Ochre), ଶୁଭ୍ର ବର୍ଣ୍ଣ ପାଇଁ ଖଡ଼ିମାଟି (Chalk White), କୃଷ୍ଣ ବର୍ଣ୍ଣ ନିମନ୍ତେ କଜ୍ଜଳ (Lamp Black) ବ୍ୟବହୃତ ହେଉଥିଲା । ଚିତ୍ରର ବିଷୟବସ୍ତୁ ଓ ପାରିପାର୍ଶ୍ୱିକ ଅବସ୍ଥାକୁ କେନ୍ଦ୍ର କରି ରଙ୍ଗ ବ୍ୟବହୃତ ହେଉଥିଲା ।

ନ୍ୟାୟାଧମ୍ମକଥା (୮) ଆଦି ଜୈନଗ୍ରନ୍ଥରୁ ଜ୍ଞାତ ହୁଏ ଯେ ରଙ୍ଗ, ତୂଳୀ ଓ ଚିତ୍ରପଟ୍ଟ ଜଣେ ସାଧାରଣ ଚିତ୍ରକରର ଅତ୍ୟାବଶ୍ୟକୀୟ ପଦାର୍ଥ ମଧ୍ୟରେ ପରିଗଣିତ ହେଉଥିଲା । ଜୈନ ଚିତ୍ରକର ଓ ଶିଳ୍ପୀ ମାନେ ସମସାମୟିକ ଆଧ୍ୟାତ୍ମିକ ଓ ବୌଦ୍ଧିକ ଚିନ୍ତାଧାରାକୁ

ଚିତ୍ର ମାଧ୍ୟମରେ ଉପସ୍ଥିତ କରିବାରେ ଅଦ୍ଭୁତ ପୂର୍ବ ସଫଳତା ଲାଭ କରିଥିଲେ । ଅନ୍ତର୍ନିହିତ ସୌନ୍ଦର୍ଯ୍ୟକୁ ଅଭିବ୍ୟକ୍ତ କରି ଦର୍ଶକଙ୍କ ମନରେ ବିଭିନ୍ନ ଭାବ ଓ ଜ୍ଞାନ ଉଦ୍ରେକ କରିବା ଥିଲା ଜୈନ ଚିତ୍ରକର-ମାନଙ୍କ ଚରମ ଲକ୍ଷ୍ୟ । କେତେକ ଚିତ୍ରକର ଏତେ ଉତ୍କର୍ଷ ଲାଭ କରିଥିଲେ ଯେ ସେମାନେ ଦ୍ୱିପଦ, ଚତୁଷ୍ପଦ ପ୍ରାଣୀର ଯେ କୌଣସି ଅଂଶ ଦେଖି ସେଗୁଡ଼ିକର ପୂର୍ଣ୍ଣାବୟବ ଚିତ୍ର ନିଖୁଣ ଭାବରେ ଆଙ୍କି ପାରୁଥିଲେ । ସେମାନେ ପ୍ରତିକୃତି ଚିତ୍ରାଙ୍କନ, ଭିତ୍ତିଚିତ୍ର, ଆବଦ୍ଧ ଚିତ୍ର, ରସଚିତ୍ର ଲେପ୍ୟଚିତ୍ର, ଧୂଳିଚିତ୍ର ଆଦି ଅଙ୍କନ କରିବାରେ ନିପୁଣ ଥିଲେ । ଭିତ୍ତି (ପାଚେରି, କାନ୍ଥ ଆଦି) ଉପରେ ଅଙ୍କିତ ଚିତ୍ରକୁ ଭିତ୍ତିଚିତ୍ର କୁହାଯାଏ । ଯାହାର ବିଧାନ ଆକସ୍ମିକ କଳ୍ପନାରୁ ହୋଇଥାଏ ତାହା ହେଉଛି ଅବଦ୍ଧ ଚିତ୍ର । ଅବଦ୍ଧ ଚିତ୍ର ଗୁଡ଼ିକର ସୌନ୍ଦର୍ଯ୍ୟ ତାହାର ଆକାରରୁ ହିଁ ଜଣାପଡ଼େ । ତାହା କାଗଜରେ ନିଖୁଣ ଭାବରେ ଚିତ୍ରିତ ହୋଇପାରେ । ପ୍ରାଚୀର, କାନ୍ଥ ଅଥବା ସ୍ତମ୍ଭ ଉପରେ ତାହାର ଯଥାର୍ଥ ଅଙ୍କନ ହୋଇପାରେ ନାହିଁ । ଯାହାର ଦର୍ଶନ ମାତ୍ରକେ ଶୃଙ୍ଗାର ରସ ଅନୁଭୂତ ହୁଏ ବା ଯେଉଁ ଚିତ୍ରରେ ଶୃଙ୍ଗାର ରସ ପରିସ୍ଫୁଟ ହୋଇଥାଏ, ତାହା ରସଚିତ୍ର' ନାମରେ ଅଭିହିତ ।

"ଶୃଙ୍ଗାରାଦି ରସୋ ଯତ୍ର ଦର୍ଶନାଦେବ ଗମ୍ୟତେ'

(ଶିଳ୍ପରତ୍ନ) ।

'ରସ ଚିତ୍ର'ର ଉଦାହରଣ ମିଳେ 'ଜ୍ଞାତାଧର୍ମକଥା' ଗ୍ରନ୍ଥର ଏକ ମନୋରଞ୍ଜନ ଆଖ୍ୟାୟିକାରୁ । ମିଥିଳା ନରେଶ କୁମ୍ଭରାଜଙ୍କ ପୁତ୍ର ମଲ୍ଲଦିନ କଳାପ୍ରେମୀ ଥିଲେ । ତାଙ୍କ ପ୍ରତିଷ୍ଠିତ ଏକ ସୁନ୍ଦର ଚିତ୍ରଶାଳାର ଅଭ୍ୟନ୍ତରୀଣ ଭାଗରେ ଜଣେ କୁଶଳ ଚିତ୍ରକର ରାଜକୁମାରୀ ମଲ୍ଲିଙ୍କର କେବଳ ଅଙ୍ଗୁଷ୍ଠିଟି ଦେଖି ତାଙ୍କର ଏକ ପୂର୍ଣ୍ଣାବୟବ ଚିତ୍ର ଅଙ୍କନ କରିଥିଲେ । ରାଜକୁମାର ତାଙ୍କ ଜ୍ୟେଷ୍ଠ ଭଗିନୀ (ମଲ୍ଲିକା) ଙ୍କ ଚିତ୍ର ଦେଖିବାରୁ ତାଙ୍କ ମନରେ ଚିତ୍ରକର ଓ ରାଜକୁମାରୀ ମଲ୍ଲିକାଙ୍କ ମଧ୍ୟରେ ପ୍ରଣୟ ସମ୍ପର୍କ ଥିବାର ସନ୍ଦେହ ଜାତ ହୋଇଥିଲା । ତେଣୁ ସେ ଚିତ୍ରକରକୁ ପ୍ରାଣଦଣ୍ଡ ଆଜ୍ଞା ଦେଲେ । କିନ୍ତୁ ଯେତେବେଳେ ସେ ଜାଣିପାରିଲେ ଯେ ତାହା କେବଳ ଚିତ୍ରକରର ଅନୁପମ କଳାକୁଶଳତାର ପରିଣାମ ସେତେବେଳେ ସେ ଚିତ୍ରକରର ତୂଳୀ ଓ ରଙ୍ଗ ପାତ୍ର ଆଦିକୁ ଭଗ୍ନ କରି ଦୂରକୁ ନିକ୍ଷେପ କଲେ । (୯) । 'ଲେପ୍ୟ ଚିତ୍ର' ଅଧୁନାତନ 'ପଟ୍ଟଚିତ୍ର'ର ପ୍ରାୟ ଅନୁରୂପ ଥିଲା । ସ୍ଥୂଳ ଚୂନା, ଖଡ଼ି ଗୁଣ୍ଡ ଏବଂ ଆବଶ୍ୟକତାନୁଯାୟୀ ବିଭିନ୍ନ ରଙ୍ଗରେ ଯେଉଁ ଚିତ୍ର ଅଙ୍କିତ ହେଉଥିଲା ତାହା ଧୂଳିଚିତ୍ର ନାମରେ କଥିତ ।

ରାଜନ୍ୟ ଓ ସମ୍ଭ୍ରାନ୍ତ ବର୍ଗଙ୍କ ପ୍ରାସାଦରେ ଚିତ୍ରଶାଳା ଓ ଚିତ୍ର ସଦ୍ମ ବିଦ୍ୟମାନ ଥିବାର ଉଲ୍ଲେଖ କେତେକ ଜୈନ ଗ୍ରନ୍ଥରୁ ମିଳେ । ତନ୍ମଧ୍ୟରେ ରାଜା ଜୟସେନ ଓ ଦୁର୍ମୁଖଙ୍କ ଚିତ୍ରଶାଳା ଉଲ୍ଲେଖଯୋଗ୍ୟ (୧୦) । ଜୟସେନଙ୍କର ଚିତ୍ରଶାଳାର ମସୃଣ ଚଟାଣରେ ଜଣେ ଚିତ୍ରକର କନ୍ୟା ମୟୂର ପୁଚ୍ଛର ସୁନ୍ଦର ଚିତ୍ରଟି ଅଙ୍କନ କରିଥିଲେ । ରାଜା ଜୟସେନ ତାହାକୁ ପ୍ରକୃତ ମୟୂର ପୁଚ୍ଛ ମନେକରି ଗୋଟାଇଲା ବେଳେ ତାଙ୍କ ଆଙ୍ଗୁଠିର ନଖ ଚଟାଣରେ ଘର୍ଷିତ ହୋଇଗଲା ।

ଫଳରେ ସେ ବ୍ୟଥା ଅନୁଭବ କଲେ । ରାଜଗୃହର ଜଣେ ପୁଞ୍ଜିପତିଙ୍କର ନଗର ଉପକଣ୍ଠରେ ଚିତ୍ରଶାଳାଟିଏ ଥିଲା । ସେଥିରେ କେତେକ ପ୍ରାକୃତିକ ଚିତ୍ର, ରସଚିତ୍ର ଓ ଧୂଳିଚିତ୍ର ପ୍ରଦର୍ଶିତ ହୋଇଥିଲା । (୧୧) ।

ଐତିହାସିକ ଦୃଷ୍ଟିକୋଣରୁ ଜୈନ ଚିତ୍ରକଳା ସମ୍ବନ୍ଧରେ ବିଚାର କଲେ ଜଣା ହୁଏ ଯେ, ଆଜକୁ ପ୍ରାୟ ୨୦୦୦ ବର୍ଷ ପୂର୍ବେ ଗୁମ୍ଫା, ମନ୍ଦିର, ମଠ ବା ବିହାରମାନଙ୍କର ଭିତ୍ତି ଉପରେ ଚିତ୍ରାଙ୍କନ କରିବାର ପ୍ରଥା ଜୈନମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ଏହି ପ୍ରାଚୀନ ସ୍ଥାପତ୍ୟର ଧ୍ୱଂସାବଶେଷ ଆଜି ସୁଦ୍ଧା ଜୈନ ଚିତ୍ରକଳାର ମହତ୍ତ୍ୱ ଓ ଭବ୍ୟତାର ରହସ୍ୟକୁ ସୁରକ୍ଷିତ କରିଛନ୍ତି । ମଧ୍ୟପ୍ରଦେଶ ଅନ୍ତର୍ଗତ ସରଗୁଂଜା ଜିଲ୍ଲାରେ ରାମଗିରି ନାମକ ଏକ ପାହାଡ଼ ଅବସ୍ଥିତ । ସେଠାରେ ଯୋଗୀମାର ନାମକ ଗୁମ୍ଫା ଚର୍ଚ୍ଚିତ ହୋଇଛି । ଏହି ପ୍ରାଗ୍ ଐତିହାସିକ ଚିତ୍ରକଳା ତତ୍କାଳୀନ ସ୍ପେନ ,ମେକ୍ସିକୋ, କ୍ରୀଟ ଆଦି ଦେଶର ଚିତ୍ରକଳା ସଦୃଶ । ଯୋଗୀମାର ଗୁମ୍ଫାର ପ୍ରଧାନ ଦ୍ୱାରରେ ଏକ ସୁନ୍ଦର ଭାବପୂର୍ଣ୍ଣ ଚିତ୍ର ଅଙ୍କିତ ହୋଇଛି । ପ୍ରାଚୀନ ଭାରତୀୟ ଚିତ୍ରକଳାର ରଙ୍ଗ ଓ ରେଖାଗୁଡ଼ିକ ଦୃଷ୍ଟିରୁ ଏହା ଅପୂର୍ବ । ଏହି ଚିତ୍ରର କେତେକ ଆକର୍ଷଣୀୟ ଅଂଶ ନିମ୍ନରେ ପ୍ରଦତ୍ତ ହେଲା —

୧. ଏକ ବୃକ୍ଷର ପାଦ ଦେଶରେ ଜଣେ ପୁରୁଷ ଏବଂ ବାମ ପାର୍ଶ୍ୱରେ ଅପ୍ସରା ଏବଂ ଗନ୍ଧର୍ବଙ୍କ ଚିତ୍ର ଅଙ୍କିତ ।

୨. କେତେକ ପୁରୁଷ, ଚିତ୍ର ତଥା ବିବିଧ ପ୍ରକାରର ଅଳଙ୍କାର ଚର୍ଚ୍ଚିତ ।
୩. ବୃକ୍ଷ ଉପରେ ପକ୍ଷୀ, ପୁରୁଷ ଓ ଶିଶୁର ଚିତ୍ର । ଚତୁର୍ଦ୍ଦିଗରେ ମାନବ ସମୂହ ଉପସ୍ଥିତ ।
୪. ପଦ୍ମାସନସ୍ଥ ପୁରୁଷ, ମନ୍ଦିରର ଝରକା ତଥା ତିନୋଟି ଅଶ୍ୱଯୁକ୍ତ ଏକ ରଥର ଦୃଶ୍ୟ ।

ଅତଏବ ଏହି ଚିତ୍ରରେ ଜୈନମୁନିଙ୍କ ଦୀକ୍ଷା ଦେବାର ବର୍ଣ୍ଣନା ଅଙ୍କିତ ହୋଇଥିବା ଅନୁମିତ ହୁଏ । (୧୨) ।

ଭୁବନେଶ୍ୱରର ଉଦୟଗିରି ଓ ଖଣ୍ଡଗିରି ଗୁମ୍ଫା ଗୁଡ଼ିକରେ ମଧ୍ୟ ଜୈନ ଚିତ୍ର ଅଙ୍କିତ ଏବଂ ସେଗୁଡ଼ିକର ସୌନ୍ଦର୍ଯ୍ୟ ଓ ଭାବ ବ୍ୟଞ୍ଜନା ଅଦ୍ଭୁତ । କାଳର କରାଳ ଗତିରେ ସେଗୁଡ଼ିକ ଲୁପ୍ତ ପ୍ରାୟ । ଉଦୟଗିରିର ରାଣୀ ଗୁମ୍ଫା, ଜଗନ୍ନାଥ ଗୁମ୍ଫା, ଏବଂ ଖଣ୍ଡଗିରିର ଅନନ୍ତଗୁମ୍ଫା, ତାତୋଉ ଗୁମ୍ଫା ଆଦିରେ ଜୈନ ଚିତ୍ରକଳାର କେତେକ ନିଦର୍ଶନ ମିଳେ । ସେଗୁଡ଼ିକର ବର୍ଣ୍ଣନା ପୂର୍ବବର୍ତ୍ତୀ ଅଧ୍ୟାୟ ଗୁଡ଼ିକରେ କରାଯାଇଛି । ଭିତ୍ତିଚିତ୍ର ଗୁଡ଼ିକର ପରମ୍ପରା ଜୈନମାନଙ୍କ ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ମୁଡ଼ବଦ୍ରୀର ଚନ୍ଦ୍ରନାଥ ଚୈତ୍ୟାଳୟର ଖମ୍ବ ଉତ୍କୀର୍ଣ୍ଣ ପ୍ରାକୃତିକ ଚିତ୍ର ନଜର ଆସିବାରେ ସଂସାରକୁ ଆଶ୍ଚର୍ଯ୍ୟାନ୍ୱିତ କରିପକାଏ । ଏହି ଚିତ୍ର ଗୁଡ଼ିକରେ ବାହ୍ୟ ଆକର୍ଷଣ, ରମଣୀୟତା, କମ୍ପନ ଓ ନୈସର୍ଗିକ ପ୍ରବାହ ଅଦ୍ୟାପି ବିଦ୍ୟମାନ । ଭାରତ ବାହାରେ ଜୈନ ଚିତ୍ରକଳାର ଉତ୍କୃଷ୍ଟ ନିଦର୍ଶନ ତୁର୍କିସ୍ତାନର ଗୁହା ଗାତରେ ମଧ୍ୟ ପରିଦୃଷ୍ଟ ହୁଏ । (୧୩) ।

୬୦୦ ରୁ ୬୨୫ ଖ୍ରୀ ଅ. ମଧ୍ୟରେ ପଲ୍ଲବ ବଂଶୀୟ ରାଜା ପ୍ରଥମ ମହେନ୍ଦ୍ର ବର୍ମନଙ୍କ ଦ୍ୱାରା ନିର୍ମିତ ପଦୁକୋଟାସ୍ଥିତ (ତାମିଲ୍‌ନାଡୁର ପୁଦୁକୋଟାଇ ଜିଲା ଅନ୍ତର୍ଗତ) ସିତ୍ତନ୍ନବାସଲସ୍ଥ ଗୁହା ଚିତ୍ର ଜୈନକଳାର ଅପୂର୍ବ ନିଦର୍ଶନ । ଏହି ଚିତ୍ର ଗୁହାର ଛାତ ଆଶ୍ଚର୍ଯ୍ୟ ଢଙ୍ଗରେ ସ୍ଥୂଳ ଓ ଆକୃତ ସଜୀବ ମନୋହର । ସମସ୍ତ ଗୁମ୍ଫା କମଳରେ ଅଳଙ୍କୃତ । ସମ୍ମୁଖସ୍ଥ ସ୍ତମ୍ଭଗୁଡ଼ିକ କର୍ଣ୍ଣଫୁଲମାଳାରେ ସୁସଜ୍ଜିତ । ଅଭ୍ୟନ୍ତରର ଛାତ ଦେହରେ ପଦ୍ମବନ ଓ ପୁଷ୍କରିଣୀର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ପୁଷ୍କରିଣୀରେ ହସ୍ତୀ, ଜଳ ବିହଙ୍ଗମ, ମତ୍ସ୍ୟ, କୁମ୍ଭୀର ଓ ପଦ୍ମପୁଷ୍ପର ଶୋଭା ବିଦ୍ୟମାନ । ଗୋଟିଏ ସ୍ତମ୍ଭରେ ଅପ୍ସରା ଓ ନର୍ତ୍ତକୀଙ୍କର କମନୀୟ ଅଙ୍ଗସୌଷ୍ଠବ ଅତି ଚମତ୍କାର ଭାବରେ ଚିତ୍ରିତ ହୋଇଛି । ଏହା ଏକ ମନୋହର ଚିତ୍ର । ଏତଦ୍‌ ବ୍ୟତୀତ ରାଣୀଙ୍କ ସହିତ ରାଜା ପ୍ରଥମ ମହେନ୍ଦ୍ରବର୍ମନଙ୍କ ଏକ ସୁନ୍ଦର ଚିତ୍ର ଅଙ୍କିତ ହୋଇଛି । (୧୪) ।

ତିରୁମଲାଇ ପୁରମ୍‌ର ଦକ୍ଷିଣମୁଖ ଜୈନମନ୍ଦିର (ଖ୍ରୀ.ଅ ୭୦୦) ମଧ୍ୟ ଚିତ୍ରକଳାରେ ବିମଣ୍ଡିତ । (୧୫) । ତିରୁମଲାଇ ପାହାଡ଼ରେ ଥିବା କୁଣ୍ଡାବାଇ ଜିନାଳୟରେ ଜୈନଧର୍ମର ସଙ୍କେତ ଜୈନସ୍ୱତନ୍ତ୍ରର ଚିତ୍ର ଅଙ୍କିତ ହୋଇଛି । (୧୬) । ମଧ୍ୟପ୍ରଦେଶର ମନ୍ଦାସର୍ ଜିଲା ଅନ୍ତର୍ଗତ ମୋରି, ପଞ୍ଚମାଈ ସମୀପସ୍ଥ ମହାଦେବ ପାହାଡ଼, ଭୋପାଳ ନିକଟବର୍ତ୍ତୀ ସିଂଘନପୁର, ରାମ ବୈଠକ, କବ୍ରାପାହାଡ଼ ଏବଂ ଉତ୍ତର ପ୍ରଦେଶର ବାନ୍ଦା ଜିଲ୍ଲାର ମଣିକ ପୁର ଓ ମିର୍ଜାପୁର ଜିଲ୍ଲାର ଲିଖୁନିଆ, କୋହବର, ଭଲ୍ଦରିଆ, ବିଜୟଗଡ଼ର ଗୁହା ଓ ପ୍ରସ୍ତର ଭିତ୍ତିଚିତ୍ର ଜୈନ ଚିତ୍ରକଳାର ଉତ୍କୃଷ୍ଟ ନିଦର୍ଶନ । ଏହି ସବୁ ଚିତ୍ରଗୁଡ଼ିକ ମଧ୍ୟରେ ବୃକ୍ଷ, ପର୍ବତ, ନଦୀ, ସମୁଦ୍ର, ସଦନ, ପଶୁପକ୍ଷୀ, ନୃତ୍ୟରତ ନରନାରୀ, ବିଭିନ୍ନ ଗୁଳ୍ମଲତା, ଫଳ, ପୁଷ୍ପ ଏବଂ ପୂର୍ଣ୍ଣକୁମ୍ଭାଦିର ଚିତ୍ର ଅନ୍ତର୍ଭୁକ୍ତ । (୧୭) । ସୂର୍ଯ୍ୟାଭଦେବଙ୍କ ବିମାନ ବିଭିନ୍ନ ପ୍ରକାର ରମଣୀୟ ଭିତ୍ତିଚିତ୍ରରେ ଅଙ୍କିତ ହୋଇଥିବା ରାୟପସେଣିୟ ସୂତ୍ର । (୧୮) ରୁ ଜଣାଯାଏ । ସେଗୁଡ଼ିକ ମଧ୍ୟରେ ଇହାମିଗ (Fabulous animals,) ବୃଷଭ (Bull), ତୁରଗ (Horse), ନର, ମଗର (Crocodile), ବିହଙ୍ଗମ (Bird), ବାଲଗ (Serpents or dragons), ରୁରୁ (Deer), ଶରଭ (Lion-like figures), କୁଞ୍ଜର (Blephants), କନ୍ନର (Centaur), ଚମର (Yak), ବନଲତା (Wild creepers), ଶତଦଳ (Lotus creepers). ପ୍ରଭୃତିର ଚିତ୍ର ଉଲ୍ଲେଖଯୋଗ୍ୟ ।

ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀରେ ଗୁଜରାଟ ଓ ଦାକ୍ଷିଣାତ୍ୟରେ ଜୈନ ଚିତ୍ରକଳାର ପର୍ଯ୍ୟାପ୍ତ ବିକାଶ ହୋଇଥିଲା । 'ନଶିଥ ଚୂର୍ଣ୍ଣୀ', 'ଅଙ୍ଗସୂତ୍ର', 'ତ୍ରିଶଷ୍ଟି ଶଲାକା ପୁରୁଷ ଚରିତ୍ର,' 'ଉତ୍ତରାଧ୍ୟୟନସୂତ୍ର,' 'କଳ୍ପସୂତ୍ର,' 'ଜୈନରାମାୟଣ,' 'ତ୍ରୈଲୋକସାର,'

‘ତ୍ରିଲୋକ ପ୍ରଜ୍ଞପ୍ତି’, ‘ଭକ୍ତାମର’, ‘ଧବଳ ଟୀକା’; ଇତ୍ୟାଦି ଜୈନଗ୍ରନ୍ଥ ସଚିତ୍ର ମିଳେ । ଏହି ଚିତ୍ରିତ ଜୈନ ଗ୍ରନ୍ଥ ଶୈଳୀର ପରମ୍ପରା ଅବଲମ୍ବନରେ ପରବର୍ତ୍ତୀ କାଳରେ ବହୁ ଗ୍ରନ୍ଥ ସଚିତ୍ର ରଚିତ ହୋଇଛି ।

ସଚିତ୍ର ଜୈନ ଗ୍ରନ୍ଥ ଦୁଇ ପ୍ରକାର । ପ୍ରଥମ ପ୍ରକାର ସଚିତ୍ର ଜୈନ ଗ୍ରନ୍ଥରେ ବିଷୟ-ବସ୍ତୁକୁ ଚିତ୍ରଦ୍ୱାରା ବ୍ୟାଖ୍ୟାତ ହୋଇଛି । ସମସ୍ତ ଧର୍ମ କଥାକୁ ଚିତ୍ରଦ୍ୱାରା ହିଁ ଅଭିବ୍ୟକ୍ତ କରାଯାଇଛି । ଏହି ଶୈଳୀରେ ‘ଜୈନ ରାମାୟଣ’ ଓ ‘ଭକ୍ତାମର’ ପ୍ରଭୃତି ଅନ୍ତର୍ଭୁକ୍ତ । ‘ଭକ୍ତାମର’ର ପ୍ରତ୍ୟେକ ଶ୍ଳୋକରେ ସ୍ତବକୁ ଗୋଟିଏ ଗୋଟିଏ ଚିତ୍ର ଦ୍ୱାରା ବ୍ୟକ୍ତ କରାଯାଇଛି । ଦ୍ୱିତୀୟ ପ୍ରକାର ସଚିତ୍ର ଜୈନ ଗ୍ରନ୍ଥରେ ବିଷୟବସ୍ତୁକୁ କେନ୍ଦ୍ରକରି ବାହ୍ୟଚିତ୍ର ଅଙ୍କିତ ହୋଇଥାଏ । ଏଥିରେ ବିଷୟ ସହିତ ଚିତ୍ରର ସମ୍ବନ୍ଧ ରହେନାହିଁ । ବରଂ ତାହାର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମନ୍ତେ ଚିତ୍ର ଗୁଡ଼ିକ ଅଙ୍କିତ ହୋଇଥାଏ । ମୁଖ୍ୟତଃ ଦୁଇଟି କାରଣ ଯୋଗୁଁ ମଧ୍ୟଯୁଗୀୟ ଜୈନ ଚିତ୍ରକଳା ବିକାଶ ଲାଭ କରିପାରିଥିଲା । ପ୍ରଥମତଃ ଏହି ସମୟରେ ପ୍ରାୟ ଏକ ହଜାର ବର୍ଷପର୍ଯ୍ୟନ୍ତ ଜୈନଧର୍ମର ପ୍ରଭାବ ଭାରତ ବର୍ଷରେ ସୁବିସ୍ତୃତ ଥିଲା । ଦ୍ୱିତୀୟତଃ ତତ୍କାଳୀନ ଧନିକ ଓ ସମ୍ଭ୍ରାନ୍ତ ବର୍ଗଙ୍କ ପୃଷ୍ଠପୋଷକତାରେ ବହୁ ଜୈନ୍ୟ ଗ୍ରନ୍ଥ ତାଳପତ୍ରରେ ରଚିତ ଓ ଚିତ୍ରିତ ହୋଇଥିଲା । ବିଶେଷତଃ ସେମାନଙ୍କ ଆନୁକୂଲ୍ୟରେ ଏହି ଜୈନ ଚିତ୍ରକଳା ସୃଷ୍ଟି ହୋଇନଥିଲେ ଆଜି ଆମ୍ଭମାନଙ୍କ ନିକଟରେ ଜୈନଧର୍ମର କୌଣସି ପ୍ରମାଣ ମିଳୁନଥା'ନ୍ତା । ଅତଏବ ସଂକ୍ଷେପରେ କୁହାଯାଇପାରେ, ମାଧୁର୍ଯ୍ୟ, ଓଜ, ସଜୀବତା, ଅନନ୍ୟ ସାଧାରଣ ନୈସର୍ଗିକ ଭାବ ଜୈନ ଚିତ୍ରକଳାରେ ପୂର୍ଣ୍ଣମାତ୍ରାରେ ପରିସ୍ଫୁଟ । ବସ୍ତୁତଃ ମଧ୍ୟ ଯୁଗୀୟ ଜୈନ ଚିତ୍ରକଳାର ଅନୁଶୀଳନ ଦ୍ୱାରା ଉକ୍ତ ଯୁଗରେ ଜୈନ ଧର୍ମର ମହନୀୟତା ସମ୍ୟକ୍ ଉପଲବ୍ଧ ହୋଇପାରିବ ।

ଜୈନ ଚିତ୍ରକଳାର ପରମ୍ପରା କେବଳ ଶ୍ୱେତାମ୍ବର ସମ୍ପ୍ରଦାୟ ମଧ୍ୟରେ ସୀମିତ ଥିଲା । କାରଣ ଶ୍ୱେତାମ୍ବର ସମ୍ପ୍ରଦାୟର ତତ୍ତ୍ୱାବଧାନରେ ଅର୍ହତ ଓ ତୀର୍ଥଙ୍କରଙ୍କ ଚିତ୍ର-ଗୁଡ଼ିକୁ ଅଳଙ୍କୃତ କରିବାର ଅବସର ଚିତ୍ରକର ମାନଙ୍କୁ ପର୍ଯ୍ୟାପ୍ତ ମାତ୍ରାରେ ମିଳୁଥିଲା ବେଳେ ଦିଗମ୍ବର ସମ୍ପ୍ରଦାୟରେ ତାହା ମିଳୁନଥିଲା ।

‘ନିଶିଥ ଚୂର୍ଣ୍ଣୀ’, ଅଙ୍ଗସୂତ୍ର’, ତ୍ରିଷଷ୍ଟୀଶଲାକା ପୁରୁଷ’, ଉତ୍ତରାଧ୍ୟୟନ ସୂତ୍ର’, କଳ୍ପସୂତ୍ର ‘ଶ୍ରାବକପ୍ରତିକ୍ରମଣ ସୂତ୍ରଚୂର୍ଣ୍ଣୀ’ ଇତ୍ୟାଦି ଚିତ୍ରିତ ଜୈନଗ୍ରନ୍ଥ ଆଜିସୁଦ୍ଧା ଉପଲବ୍ଧ ହୋଇଛି ।

ଦିଗମ୍ବର ସମ୍ପ୍ରଦାୟର କତିପୟ ସାହିତ୍ୟ—କୃତିରେ ଜୈନ ଚିତ୍ରକଳାର ସୁନ୍ଦର ନମୁନା ମିଳିଥାଏ । କରଣାନୁଯୋଗ ସମ୍ବନ୍ଧୀ ‘ତ୍ରିଲୋକ ପ୍ରଜ୍ଞପ୍ତି’,‘ତ୍ରିଲୋକ ସାର’,ପ୍ରଭୃତି ପ୍ରାଚୀନ ଗ୍ରନ୍ଥ ଗୁଡ଼ିକରେ ଚିତ୍ରକଳାର ଅନୁପମ ନିଦର୍ଶନ ଦୃଷ୍ଟ ହୁଏ । ଏହି ସମୟରେ ଚିତ୍ରକଳା ଶୈଳୀର ନାମକରଣ ‘ଜୈନ ଶୈଳୀ’ ରଖାଯାଇଛି । କାରଣ ବହୁ ଚିତ୍ର

ଅନେକ ଗ୍ରନ୍ଥ ପ୍ରାପ୍ତ ହୋଇଛି ଯାହାର ଚିତ୍ର ପ୍ରବନ୍ଧ ପୂର୍ବୋକ୍ତ ଚିତ୍ରିତ ଜୈନ ଗ୍ରନ୍ଥରେ ଉପଲବ୍ଧ ହୁଏ, ଯଥା :— 'ବସନ୍ତ ବିଳାସ', 'ବାଳ ଗୋପାଳ ସ୍ତୁତି', 'ଗୀତଗୋବିନ୍ଦ', 'ଦୁର୍ଗାସପ୍ତଶତୀ', 'ରତି ରହସ୍ୟ' ଇତ୍ୟାଦି । ଭାରତୀୟ କଳାର ମର୍ମଜ୍ଞ ବିଦ୍ୱାନ୍ N C. Meheta (୧୯) ଏହି କାଳର ଚିତ୍ରକଳା ଶୈଳୀକୁ 'ଗୁଜରାଟ ଶୈଳୀ' ନାମରେ ଅଭିହିତ କରିଛନ୍ତି । କିନ୍ତୁ କାଳାନ୍ତରରେ ଏହି ପ୍ରକାର ବହୁ ଗ୍ରନ୍ଥ ଗୁଜରାଟ ବ୍ୟତୀତ ରାଜପୁତାନା, ମାଳବ, ଜୌନପୁର, ପଞ୍ଜାବ ଇତ୍ୟାଦି ଅଞ୍ଚଳରୁ ମଧ୍ୟ ମିଳିଛି । ଅତଏବ କଳାତତ୍ତ୍ୱବିତ୍ ଆନନ୍ଦ କୁମାର ସ୍ୱାମୀ ଏହାକୁ 'ପଶ୍ଚିମ ଭାରତୀୟ ଶୈଳୀ' ଆଖ୍ୟା ଦେଇଛନ୍ତି । ଅବଶ୍ୟ ଏହିଭଳି ଗ୍ରନ୍ଥ ଦକ୍ଷିଣ ଭାରତରୁ ମଧ୍ୟ ମିଳିଛି ।

ଅଜନ୍ତା, ଏଲୋରା, ସିତ୍ତନ୍ନବାସଲ, ତିରୁମଲାଇ (ବେଙ୍ଗାଲୁରୁ ତିରୁମଲାଇ) (୨୦) ଏବଂ ଅନ୍ୟାନ୍ୟ ସ୍ଥାନର ଜୈନ ଚିତ୍ରକଳା ଯେକୌଣସି ସୁସଂସ୍କୃତ ମସ୍ତିଷ୍କକୁ ପ୍ରଭାବିତ କରିବ ଏଥିରେ ସନ୍ଦେହ ନାହିଁ । ଏହି ଚିତ୍ର ଗୁଡ଼ିକର ଅନ୍ତର୍ନିହିତ ଭାବ, ସରଳତା ସ୍ପନ୍ଦନଶୀଳତା ଉପଲବ୍ଧ କରି କେତେକ ଐତିହାସିକ ଓ କଳାତତ୍ତ୍ୱବିତ୍ ଏହି ଚିତ୍ର ଶୈଳୀକୁ ଭାରତ ବର୍ଷର ଲୋକଶୈଳୀ ବୋଲି ଅଭିହିତ କରିଛନ୍ତି ।

ପାଦଟୀକା .

୧. Sir John Marshall, Mohenjodaro and the Indus Civilization, Plate XII figures, 13, 14, 15, 19 and 22.

୨. J. B. Buhler, on Indian Sect of Jainism, London (1903).

୩. A. K. Coomaraswami, History of Indian and Indonesian Art, pp. 243 ff London, 1927.

୪. ଅର୍ଜୁନ ଯୋଶୀ, ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି, ପୃ.୧୧.

୫. ଅଜନ୍ତା, ଏଲୋରା ବାଘ, ସିତ୍ତନ୍ନବାସଲର ଚିତ୍ରକଳା ସମ୍ପର୍କରେ ଅଧିକ ଆଲୋଚନା ନିମନ୍ତେ ନିମ୍ନଲିଖିତ ଗ୍ରନ୍ଥ ଗୁଡ଼ିକ ଦ୍ରଷ୍ଟବ୍ୟ :

J. Griffiths, The Paintings of the Buddhist Cave temples at Ajanta, pp.7. ff;R C.Masumdar (Edited), The History and Culture of Indian People (The classicals Age), vol-III, p.545; J. Fergusson and J. Burgess, Cave temples, of India, London, 1880, K. A. Nilakantha Sastri, The History of India,vol-I pp-164 ff, B.N. Luniya, Life and Culture in Medieval India, Chapter XVII.

୬. Smith,History of Fine Arts in India and Ceylon,p 1 3
Percy Brown, Indian painting pp 3351
୭. A K.Coomaraswamy, Eastern Art, vol III, pp 218-19.
୮. ନାୟାଧମ୍ମକହା, ୮ମ ଅଧ୍ୟାୟ, ପୃ ୧୦୬
୯. ନାୟାଧମ୍ମକହା, ଅଷ୍ଟମ ଅଧ୍ୟାୟ, ପୃ ୧୦୫
୧୦. ଉତ୍ତରାଧ୍ୟୟନ ଟୀକା, ନବମ ଅଧ୍ୟାୟ, ପୃ ୧୩୫ ଓ ୧୪୧
୧୧. ନାୟାଧମ୍ମକହା, ୧୩, ପୃ ୧୪
୧୨. R C Majumdar (Edited), The History and culture of Indian People. vol II (The Age of Imperial Unity), p 529, Bombay, 1951
୧୩. N.C.Mehta, studies in Indian Painting, p 2, Hemachandra, Parisista Parvan, Edited by Jalcobi, pp 69, 282.
୧୪. B.Sheshagiri Rao, Studies in South Indian Jainism, Madras, 1922
୧୫. A.K Longhurst, pallava Architecture, Memoirs of the Archaeological Survey of India, No 17.
୧୬. South Indian Inscriptions, vol I, p 67, SR.Balasubramanyam,'A Neminath Sculpture in Tirumalai', International Seminar on Buddhism and Jainism, (1976), p. 31
୧୭. K.C. Jain, Lord Mahavira and his times, p 333.
୧୮. ରାୟପସେଣିୟସୁତ୍ତ,ପୃ ୯୭; English translation by N.N.Vaidya, Ahmedabad, 1938.
୧୯. N C.Mehta, Studies in Indian painting, pp 26, ff.
୨୦. South Indian Inscriptions, vol I, p 66



'ଶୃଙ୍ଗାରାଦ ରସୋପାପତ୍ତି ଦର୍ଶ କାନ୍ତିଦାତ ଗମ୍ୟତେ''

(ଶିଳ୍ପରତ୍ନ)

# ତ୍ରୟୋଦଶ ଅଧ୍ୟାୟ

## ଓଡ଼ିଶାର ଜୈନ ମନ୍ଦିର

ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରାଚୀନ, ମଧ୍ୟଯୁଗୀୟ ଏବଂ ଆଧୁନିକ ଜୈନ ମନ୍ଦିରମାନ ପରିଦୃଷ୍ଟ ହୁଏ । ଏହି ଜୈନ ମନ୍ଦିର ଗୁଡ଼ିକ ଓଡ଼ିଶାର ଅନ୍ୟାନ୍ୟ ମନ୍ଦିର ପରି ସାଧାରଣତଃ ଦୁଇଟି ଅଂଶରେ ବିଭକ୍ତ । ମୁଖ୍ୟ ମନ୍ଦିରକୁ ବିମାନ କୁହାଯାଏ । ସେଥିରେ ଦେବ ପ୍ରତିମା ପୂଜିତ ହୁଅନ୍ତି । ତାହା ସମ୍ମୁଖସ୍ଥ ମନ୍ଦିରକୁ ମୁଖଶାଳା ବା ଜଗମୋହନ କୁହାଯାଏ । ମୁଖ୍ୟ ମନ୍ଦିର ରେଖା ଦେଉଳ ଓ ଜଗମୋହନ ପୀଢ଼ ଦେଉଳ ଭାବରେ ନିର୍ମିତ । ମନ୍ଦିରର ମଧ୍ୟ ଗୋଲାକାର ହେଲେ ତାହା ରେଖା ଦେଉଳ ଏବଂ ତାହା ପିରାମିଡ୍ ଭଳି ଗୋଳିଆ ହେଲେ ତାହାକୁ ପୀଢ଼ ଦେଉଳ କୁହାଯାଇଥାଏ । ଅନ୍ୟ ଏକ ବିଶେଷତ୍ୱ ହେଲା ମନ୍ଦିରର ଅଭ୍ୟନ୍ତର । ଏହି ଅଭ୍ୟନ୍ତରରେ କୌଣସି କାରୁକାର୍ଯ୍ୟ ନଥାଏ । ତେବେ ମନ୍ଦିରର ବହିର୍ଭାଗ ନାନା ମନୋରମ ସ୍ଥାପତ୍ୟକଳାରେ ଅଳଙ୍କୃତ । ଓଡ଼ିଶାର ମନ୍ଦିର ଗୁଡ଼ିକ ଦାକ୍ଷିଣାତ୍ୟର ଦ୍ରାବିଡ଼ ଶୈଳୀରେ ଗୋପୁରମ ଯୁକ୍ତ ନହୋଇ ନାଗର ଶୈଳୀରେ ଶିଖର ଶ୍ରେଣୀ ଅନ୍ତର୍ଭୁକ୍ତ । ତେଣୁ ଆମର ଜୈନମନ୍ଦିର ଗୁଡ଼ିକର ନିର୍ମାଣ ଶୈଳୀରେ ଉତ୍ତର ଓ ମଧ୍ୟ ଭାରତ, ରାଜସ୍ଥାନ ତଥା ଗୁଜରାଟରେ ନିର୍ମିତ ମନ୍ଦିର ଶୈଳୀର ସାମଞ୍ଜସ୍ୟ ରହିଛି । ଓଡ଼ିଶାର ଶିଖର ଶ୍ରେଣୀଭୁକ୍ତ ଜୈନ ମନ୍ଦିରର ଆକୃତି ରଥାକାର । ଏହି ମନ୍ଦିର ଗୁଡ଼ିକ ଜୈନ ଧର୍ମର ଏକ ସମୃଦ୍ଧ ଓ ଗୌରବମୟ ପରମ୍ପରାର ସାକ୍ଷର ବହନ କରି ଯୁଗେ ଯୁଗେ ଓଡ଼ିଶା ତଥା ଭାରତ ଇତିହାସର ପୃଷ୍ଠାକୁ ମଣ୍ଡନ କରି ଆସିଛି । ପ୍ରସ୍ତୁତ ପ୍ରବନ୍ଧରେ ଓଡ଼ିଶାର ଜୈନ ମନ୍ଦିର ଗୁଡ଼ିକର ଏକ ସଂକ୍ଷିପ୍ତ ବିବରଣୀ ପ୍ରଦାନ କରାଯାଉଛି ।

କୋରାପୁଟ ଜିଲ୍ଲାରେ ବହୁ ପ୍ରାଚୀନ ଜୈନ ମନ୍ଦିର ଓ ଅନ୍ୟାନ୍ୟ ଜୈନ କୀର୍ତ୍ତିର ଭଗ୍ନାବଶେଷ ରହିଛି । ନନ୍ଦପୁର ଠାରୁ ଆଠ କି:ମି: ଦୂର ପାର୍ଶ୍ୱବର୍ତ୍ତୀ ପାହାଡ଼ ନିକଟବର୍ତ୍ତୀ ସୁଆଇ (ସୁବେଇ) ଗ୍ରାମ ଠାରେ ଏକ ସବୁଜ ମନୋରମ ପରିବେଶ ମଧ୍ୟରେ ତେରଟି ପ୍ରାଚୀନ ଜୈନ ମନ୍ଦିରର ଭଗ୍ନାବଶେଷ ବିଦ୍ୟମାନ । ଏକ ଅନୁଚ୍ଚ ପ୍ରାଚୀର ଦ୍ୱାରା ପରିବେଷ୍ଟିତ ଚତୁର୍ଭୁଜ ବେଢ଼ା ମଧ୍ୟରେ ବର୍ତ୍ତମାନ ମଧ୍ୟ କେତୋଟି କ୍ଷୁଦ୍ର କ୍ଷୁଦ୍ର ମନ୍ଦିର ମଧ୍ୟରୁ କେବଳ ଦୁଇଟି ଅକ୍ଷୁର୍ଣ୍ଣ ଅବସ୍ଥାରେ ରହିଛି । ତ୍ରିରଥ ଶୈଳୀରେ ନିର୍ମିତ ପ୍ରତ୍ୟେକ ମନ୍ଦିରର ଶୀର୍ଷ ଚୂଡ଼ାରେ ଆମଳକ ଅଛି । ମନ୍ଦିରର ପ୍ରସ୍ତର ଖଣ୍ଡମାନଙ୍କରେ ଋଷଭନାଥଙ୍କ

ପଣଟି ଏବଂ ଶାସନ ଦେବୀ ଚକ୍ରେଶ୍ୱରୀ ଏବଂ ରୋହିଣୀଙ୍କ ଗୋଟିଏ ଗୋଟିଏ ମୂର୍ତ୍ତି ଖୋଦିତ ହୋଇଛି । ମନ୍ଦିରର ମୁଖଶାଳା ବା ଜଗମୋହନ ନିର୍ମିତ ହୋଇଥିବାର କୌଣସି ପ୍ରମାଣ ମିଳୁନାହିଁ । ଏହି ଜୈନ ମନ୍ଦିର ଗୁଡ଼ିକ ୭୫୦ ଖ୍ରୀ:ଅ: ପୂର୍ବରୁ ନିର୍ମିତ ହୋଇଥିବାର ଅନୁମାନ କରାଯାଏ । (୧)

ଭୋଗପୁର ଠାରୁ ୧୫ କି:ମି ଏବଂ ବାଘା ଜଳ ପ୍ରପାତ ଠାରୁ ୧୧ କି:ମି:ଦୂରରେ ପଟ୍ଟାଙ୍ଗି ତାଲୁକ ଅନ୍ତର୍ଗତ ଦେଓ ଡ଼ୋଙ୍ଗର ପାହାଡ଼ର ପାଦ ଦେଶରେ କୋଲାବ ନଦୀ କୂଳରେ ଅବସ୍ଥିତ କଟେଲ ଗ୍ରାମ ଠାରେ ପ୍ରସ୍ତର ନିର୍ମିତ ଅଷ୍ଟମ ଖ୍ରୀଷ୍ଟାବ୍ଦର ଏକ ଜୈନ ମନ୍ଦିରର ଭଗ୍ନାବଶେଷ ପରିଦୃଷ୍ଟ ହୁଏ । ଅକ୍ଷତ ଅବସ୍ଥାରେ ଏହି ମନ୍ଦିରର ଉଚ୍ଚତା ଥିଲା ୩୦ ଫୁଟ । ଭଗ୍ନାବସ୍ଥାରେ ଅଧୁନା ତାହାର ଉଚ୍ଚତା ମାତ୍ର ୧୦ ଫୁଟରେ ରହିଛି । (୨) । ମନ୍ଦିର ସମ୍ମୁଖସ୍ଥ ଜଗମୋହନର କୌଣସି ଚିହ୍ନ ନାହିଁ । ଭଗ୍ନ ଗର୍ଭଗୃହଟି (Sanctum Sanctorum) ସ୍ଥାନୀୟଭାବେ ଆସ୍ଥାନ ମଣ୍ଡପ ନାମରେ ଅଭିହିତ । ଗର୍ଭଗୃହ ମଧ୍ୟସ୍ଥ ଏକ ପ୍ରସ୍ତରଖଣ୍ଡ ଉପରେ ଯକ୍ଷ ଗୋମେଧ ଏବଂ ଯକ୍ଷିଣୀ ଅମ୍ବିକାଙ୍କ ବିଗ୍ରହ ଦେଖିବାକୁ ମିଳେ । ମନ୍ଦିରର ବହିର୍ଭାଗରେ ଏକ ଉନ୍ମୁକ୍ତ ସ୍ଥାନରେ ଋଷଭନାଥ, ଶାନ୍ତିନାଥ, ଅଜିତନାଥ ଏବଂ ମହାବୀରଙ୍କ ମୂର୍ତ୍ତି ରହିଛି । ବିଭିନ୍ନ ଆକାର ଓ ନକ୍ସାର ଖୋଦିତ ପ୍ରସ୍ତର ଖଣ୍ଡ, କେତେକ ମୂର୍ତ୍ତିର ଭଗ୍ନାଂଶ ଏବଂ ଆମଳକ ଶିଳାର କେତେକାଂଶ ମନ୍ଦିରର ଚତୁର୍ଦ୍ଦିଗରେ ବିକ୍ଷିପ୍ତ ଭାବରେ ପଡ଼ିଥିବା ଦେଖାଯାଏ । ପରଜା ଜାତିର ଆଦିବାସୀମାନେ ବିଭିନ୍ନ ପର୍ବପର୍ବାଣୀରେ ଏହି ମନ୍ଦିରରେ ପୂଜାନୁଷ୍ଠାନ କରନ୍ତି ଏବଂ ପଶୁବଳି ମଧ୍ୟ ଅର୍ପଣ କରନ୍ତି । ସୁଆଇ ଏବଂ କଟେଲ ଜୈନ ମନ୍ଦିରର ମୂର୍ତ୍ତିମାନଙ୍କ ମଧ୍ୟରେ ସାଦୃଶ୍ୟ ପରିଲକ୍ଷିତ ହୁଏ । ଏଥିରୁ ଉଭୟ ମନ୍ଦିରର ନିର୍ମାଣ କାଳ ଏକ ସମୟର ବୋଲି ସୂଚିତ ହୁଏ ।

ଭୈରବସିଂହପୁର ଠାରେ ଏକ ଜୈନ ମନ୍ଦିରର ଭଗ୍ନାବଶେଷ ଉପରେ ଶୈବ ମନ୍ଦିରଟିଏ ନିର୍ମିତ ହୋଇଛି । (୩) । ଏତଦ୍‌ବ୍ୟତୀତ ବୋରିଗୁମ୍ମା ବ୍ଲକର ପାଙ୍କିକଗୁଡ଼ା ଏବଂ କାଠରଗୁଡ଼ାରେ ମଧ୍ୟ ପ୍ରାଚୀନ ଜୈନ ମନ୍ଦିରର ଭଗ୍ନାଂଶ ପରିଦୃଷ୍ଟ ହୁଏ ।

ମୟୂରଭଞ୍ଜ ଜିଲ୍ଲାର ବଡ଼ସାହି ନିକଟବର୍ତ୍ତୀ କେଶଲୀ ଏବଂ ବାଲେଶ୍ୱର ଜିଲ୍ଲାର ନୀଳଗିରି ଅନ୍ତର୍ଗତ ପୁଣ୍ଡଲ ଠାରେ ଜୈନ ମନ୍ଦିରର ଅବଶେଷ ଦୃଷ୍ଟ ହୁଏ । କେଶଲୀର ଜୈନ ମନ୍ଦିର ସମ୍ପର୍କରେ N.N. vasuଙ୍କ ବୃତ୍ତାନ୍ତ ହେଲା --''୧୯୦୨ ଖ୍ରୀ ଅ ଏପ୍ରିଲ୍‌ମାସରେ ଏଠାରେ ପ୍ରତ୍ନତାତ୍ତ୍ୱିକ ଉତ୍‌ଖନନ ଦ୍ୱାରା ପାଞ୍ଚଫୁଟ ପର୍ଯ୍ୟନ୍ତ ମାଟିରେ ପୋତି ହୋଇଥିବା ଏହି ପ୍ରାଚୀନ ଜୈନ ମନ୍ଦିରର ମୂଳଭିତ୍ତି, ତଳମହଲ ସମେତ ଅନ୍ୟାନ୍ୟ ଭଗ୍ନାବଶେଷ ଉଦ୍ଧାର କରାଯାଇଥିଲା । ଉତ୍ତରାଭିମୁଖୀ ଏହି ମନ୍ଦିରରେ ଏକ ଗର୍ଭଗୃହ ଏବଂ ଜଗମୋହନ ଥିବା ପ୍ରତୀତ ହୁଏ । ମାଟିତଳୁ ଦୁଇ ତିନ ଫୁଟ ଗଭୀରରେ ଭିତ୍ତିପ୍ରସ୍ତର

ଖଣ୍ଡମାନ ଆବିଷ୍କୃତ ହୋଇଛି । ଉକ୍ତ ଖନନ ସମୟରେ ଧ୍ୱଂସାବଶେଷ ମଧ୍ୟରୁ ଏକ ବୃହତ୍ ଆମଳକ ଓ ଅନେକ ଜୈନ ମୂର୍ତ୍ତି ଆବିଷ୍କୃତ ହୋଇଥିଲା । ମନ୍ଦିର ଗମ୍ଭୀର ଗୁହ୍ୟରର ଛାତ ତଳରେ ଲୁହାର ବ୍ୟବହାର କରାଯାଇଛି । ଏଥିରୁ ପ୍ରମାଣିତ ହୁଏ, ମୟୂରଭଞ୍ଜ ଜିଲ୍ଲାର ଲୋକମାନେ ବହୁ ପ୍ରାଚୀନ କାଳରୁ ମନ୍ଦିର ଗୃହାଦି ନିର୍ମାଣ କାର୍ଯ୍ୟରେ ଲୌହଧାତୁର ବ୍ୟବହାର ଜାଣିଥିଲେ ।" (୪) ।

ବାରିପଦା ଠାରୁ ୩୦ କି ମି ଦୂରରେ ଅବସ୍ଥିତ ବଡ଼ସାହି ଗ୍ରାମର ମଙ୍ଗଳା ମନ୍ଦିର ନିକଟରେ କ୍ଷୁଦ୍ର ପୀଢ଼ ଶୈଳୀରେ ନିର୍ମିତ ଏକ ଜୈନ ଚୌମୁଖ ମାଟିତଳେ ଆଂଶିକ ଭାବେ ପୋତିହୋଇ ରହିଛି । ଚୌମୁଖଟି ଓଡ଼ିଶାର ବିଭିନ୍ନ ମନ୍ଦିରରେ ଥିବା ଖାଖରା ମୁଣ୍ଡି ସଦୃଶ । ତାହାର ଅଧୋଭାଗ ଏବଂ ବାଡ଼ ସମଚତୁର୍ଭୁଜାକାର । ମନ୍ଦିରର ଛାତ ପିରାମିଡ୍ ସଦୃଶ ଏବଂ ତାହା ଆମଳକ ଶିଳା ଦ୍ୱାରା ମଣ୍ଡିତ । ଆମଳକ ଶିଳାର ଉଚ୍ଚତା ହେଉଛି ୦.୫୦ X ୦.୧୬ ମିଟର । ଚୌମୁଖଟିର ଚତୁଃପାର୍ଶ୍ୱ ଠଣାରେ କାୟୋତ୍ସର୍ଗ ମୁଦ୍ରାରେ ଦଣ୍ଡାୟମାନ ଚନ୍ଦ୍ରପ୍ରଭ, ଋଷଭନାଥ, ଅଜିତନାଥ ଏବଂ ପାର୍ଶ୍ୱନାଥଙ୍କ ମୂର୍ତ୍ତି ସ୍ୱସ୍ୱ ଲାଞ୍ଛନ ଏବଂ ଚୌରୀଧାରୀଙ୍କ ସହିତ ଖୋଦିତ ହୋଇଛନ୍ତି । ସ୍ଥାନୀୟ ଅଧିବାସୀମାନେ ବୈଶାଖ ପୂର୍ଣ୍ଣିମା ଦିନ ଏହି ଚୌମୁଖଟିକୁ 'ଚନ୍ଦ୍ରଶେଣ' ନାମରେ ପୂଜା କରନ୍ତି । ଏହି ପୂଜା ଉତ୍ସବଟି କଣ୍ଟା ଚଡ଼କ ପୂଜା (Hook-swinging festival) ନାମରେ ପ୍ରସିଦ୍ଧ । ଏହି ପର୍ବ ଦିନ ଚନ୍ଦ୍ରଶେଣଙ୍କ ଆରାଧନା ନିମନ୍ତେ ପ୍ରାୟ ପନ୍ଦର ହଜାର ଭକ୍ତ ସେଠାରେ ସମବେତ ହୁଅନ୍ତି । ସେମାନଙ୍କ ମଧ୍ୟରେ ଅଧିକାଂଶ ହେଉଛନ୍ତି ସରାକ । ଚନ୍ଦ୍ରଶେଣଙ୍କ ପୂଜା କରିବା ପାଇଁ ବ୍ରାହ୍ମଣ ମାନେ ହକଦାର ନୁହଁନ୍ତି । ତେଣୁ ସ୍ଥାନୀୟ ଗ୍ରାମର ଶୂଦ୍ର ଜାତିର ଦେହୁରୀମାନେ ପୂଜାବିଧିର ଦାୟିତ୍ୱ ବହନ କରନ୍ତି । N.N. Vasu ଏହି ଚୌମୁଖଟି ଭୁଲବଶତଃ ଏକ କ୍ଷୁଦ୍ର ବୌଦ୍ଧ ସ୍ତୂପ ସହ ଚର୍ଚ୍ଚିତ କରିଛନ୍ତି । (୫) ।

ବାଲେଶ୍ୱର ଜିଲ୍ଲାର ନୀଳଗିରି ଠାରୁ ' ' କି ମି ଦୂର ଅଯୋଧ୍ୟା ଠାରେ କେତେକ ଜୈନ ମନ୍ଦିରର ଧ୍ୱଂସାବଶେଷ ରହିଛି । ସେଠାରୁ ୪୮ କି ମି ଉତ୍ତର ପୂର୍ବରେ ଅବସ୍ଥିତ ପୁଣ୍ଡଲ୍ ଠାରେ ସୋନ ନଦୀଶଯ୍ୟାରୁ ଏକଦା ଅନେକ ଜୈନ ତୀର୍ଥଙ୍କର ମୂର୍ତ୍ତି ପୁନରୁଦ୍ଧାର କରାଯାଇଥିଲା । ବର୍ତ୍ତମାନର ଏହି ନଦୀ ଶଯ୍ୟାରେ ପୂର୍ବେ ଅର୍ଥାତ୍ ମଧ୍ୟ ଯୁଗରେ ଏକ ଜୈନ ମନ୍ଦିର ଥିଲା । ନଦୀରେ ବନ୍ୟା ପ୍ରକୋପରୁ କାଳକ୍ରମେ ଏହି ମନ୍ଦିରଟି କ୍ଷୟପ୍ରାପ୍ତ ହେଲା । ଏବେ ମଧ୍ୟ ଏହି ଧ୍ୱଂସ ପ୍ରାପ୍ତ ମନ୍ଦିରର ପ୍ରସ୍ତର ଖଣ୍ଡମାନ ନଦୀ ତଳରେ ଦେଖିବାକୁ ମିଳେ ।

ଜଳେଶ୍ୱର ନିକଟରେ ସୁବର୍ଣ୍ଣରେଖା ନଦୀ କୂଳବର୍ତ୍ତୀ ମାଣିକଚୌକ ଠାରୁ ପ୍ରାପ୍ତ ଏକ ଜୈନ ଚୌମୁଖ ଅଧୁନା ଭୁବନେଶ୍ୱରସ୍ଥ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଅଛି । ଚୌମୁଖର ମାପ ହେଲା ୪୦ ସେ ମି X ୧୦ ସେ ମି X ୧୦ ସେ ମି । ତାହାର

କମ ପଶ୍ଚାତ୍‌ଗାମୀ ପାଞ୍ଚଟି ସ୍ତର ରହିଛି ଏବଂ ତାହା ପ୍ରତ୍ୟେକ କୋଣରେ ଥିବା ସିଂହ ମୂର୍ତ୍ତି ଗୁଡ଼ିକ ଉପରେ ଆଶ୍ରିତ । ଆମଳକ, ଖପୁରି, ଗୁମ୍ଫଜ ଶିଖର ଏବଂ ପଦ୍ମକଳି ଦ୍ୱାରା ତାହାର ଚୂଡ଼ା ସୁଶୋଭିତ । ଚୌମୁଖର କାରୁକାର୍ଯ୍ୟପୂର୍ଣ୍ଣ ଚତୁଃପାର୍ଶ୍ୱ କାନ୍ଥକୁଲ୍‌ରେ ଦଣ୍ଡାୟମାନ ଋଷଭ, ମହାବୀର, ଶାନ୍ତିନାଥ ଏବଂ ଚନ୍ଦ୍ରପ୍ରଭଙ୍କ କାୟୋତ୍ସର୍ଗ ମୁଦ୍ରାର ମୂର୍ତ୍ତି ରହିଛି ।

କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ଠାରୁ ୧୭ କି ମି ଦୂରରେ ଅବସ୍ଥିତ ବୈଦାଖିଆ ଠାରେ ଏକ ଜୈନମନ୍ଦିରର ଭଗ୍ନାବଶେଷ ସମେତ କଙ୍କର ପଥର, ମୁଗୁନି ପଥର, କୁଣ୍ଡା ପଥର ଆଦି ବିଭିନ୍ନ ପ୍ରସ୍ତରରେ ନିର୍ମିତ କେତେକ ଜୈନ ତୀର୍ଥଙ୍କର ମୂର୍ତ୍ତି ଦେଖିବାକୁ ମିଳେ । କେତେକ ମୂର୍ତ୍ତି ଦୁଇ ତିନି ମିଟର ଉଚ୍ଚତା ବିଶିଷ୍ଟ । (୬) । ପୋଡ଼ାସିଙ୍ଗିଡ଼ି ନିକଟବର୍ତ୍ତୀ ତଉଲା ପର୍ବତମାଳାର ପାଦ ଦେଶ ସ୍ଥିତ ଗ୍ରାମରଣ୍ଡୀ ଠାରେ ଏକ ଜୈନ ମନ୍ଦିର ଏବଂ ତତ୍ସ୍ଥ ଗାତରେ ଅନେକ ଜୈନ ତୀର୍ଥଙ୍କର ଓ ଶାସନ ଦେବୀଙ୍କ ମୂର୍ତ୍ତି ରହିଛି । ପାହାଡ଼ର ଏହି ଅଂଶଟି ଯୋଗୀଛଟା ଜୈନ ମନ୍ଦିର ନାମରେ କଥିତ । ମନ୍ଦିର ମଧ୍ୟସ୍ଥ ଏକ ପ୍ରସ୍ତର ପୀଠ ଉପରେ କେତେକ ଜୈନ ତୀର୍ଥଙ୍କର ଓ ଶାସନ ଦେବୀଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛି । ମନ୍ଦିରର ବହିର୍ଭାଗ କାନ୍ଥରେ ପାର୍ଶ୍ୱନାଥଙ୍କ ଦୁଇଟି ଏବଂ ପଦ୍ମପ୍ରଭଙ୍କ ଗୋଟିଏ—ଏପରି ପାଞ୍ଚଟି ତୀର୍ଥଙ୍କର ମୂର୍ତ୍ତି ସ୍ଥାପିତ ହୋଇଛି । ମନ୍ଦିର ବେଢ଼ା ବାହାରେ ମଧ୍ୟ ଜୈନ ମୂର୍ତ୍ତି ଦେଖିବାକୁ ମିଳେ । ମନ୍ଦିର ବେଢ଼ାରୁ ପାହାଡ଼ର ଶିଖର ପର୍ଯ୍ୟନ୍ତ ଇଟା ଓ ପଥର ତିଆରି ପାହାଚ ଗୁଡ଼ିକ ବର୍ତ୍ତମାନ ଭଗ୍ନପ୍ରାୟ । ପାହାଡ଼ର ଶୀର୍ଷ ଦେଶରେ ମହାବୀରଙ୍କ ଏକ ପ୍ରକାଣ୍ଡ ମୂର୍ତ୍ତି ଦେଖିବାକୁ ମିଳେ । ମୂର୍ତ୍ତି ନିକଟକୁ ଏହି ସୋପାନ ଶ୍ରେଣୀ ଅତିକ୍ରମ କରି ଯିବାକୁ ପଡ଼େ । (୭) ।

ଭୁବନେଶ୍ୱରସ୍ଥ ବିଶ୍ୱ ପ୍ରସିଦ୍ଧ ଜୈନକ୍ଷେତ୍ର ଖଣ୍ଡଗିରିର ଶୀର୍ଷରେ ଛବିଳ ପାରିପାର୍ଶ୍ୱ ମଧ୍ୟରେ ଏକ ଜୈନ ମନ୍ଦିର ଅବସ୍ଥିତ । ଏହି ମନ୍ଦିରଟି କଟକ ଚୌଧୁରୀ ବଜାରର ପରଓ୍ୱାର ବଂଶର ବ୍ୟବସାୟୀ ମଞ୍ଜୁ ଚୌଧୁରୀ ଏବଂ ତାଙ୍କ ପୁତୁରା ଭବାନୀ ଦାଦୁଙ୍କ ଦ୍ୱାରା ୧୮୦୦ ଖ୍ରୀ ଅ ଶେଷ ସୁଦ୍ଧା ନିର୍ମିତ ହୋଇଥିଲା । ସେ ଦୁହେଁ ଦିଗମ୍ବର ଜୈନ ସମ୍ପ୍ରଦାୟର । ଏହି ମନ୍ଦିରଟି ଏକ ପ୍ରାଚୀନ ଦେବାୟତନର ଭିତ୍ତିଭୂମି ତଥା ଭଗ୍ନାବଶେଷ ଉପରେ ନିର୍ମିତ ହୋଇଥିବା ଅନୁମାନ କରାଯାଏ । ୧୮୩୭ ଖ୍ରୀ.ଅ.ରେ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ M. Kittoe ଯେତେବେଳେ ଖଣ୍ଡଗିରି ପରିଦର୍ଶନ କରିଥିଲେ ସେତିକି-ବେଳେ ସେ ଏହି ପ୍ରାଚୀନ ମନ୍ଦିରର କେତେକ ନିଦର୍ଶନ ଦେଖିବାକୁ ପାଇଥିଲେ । (୮) ।

ଖଣ୍ଡଗିରିର ନିକଟ ପ୍ରାନ୍ତ ସ୍ଥାସ୍ତୁମାନ ଏହି ମନ୍ଦିରକୁ ଯିବାପାଇଁ ଚାରୋଟି ପଥ ରହିଛି—(କ) ଅନନ୍ତ ଗୁମ୍ଫାରୁ ଏକ ପଥ, (ଖ) ଖଣ୍ଡଗିରି ଗୁମ୍ଫାର ଡାହାଣ ପାଖରେ ଥିବା ପାହାଡ଼ରୁ କଟା ହୋଇଥିବା ସୋପାନ ଶ୍ରେଣୀ, (ଗ) ବାରଭୁଜୀ ଗୁମ୍ଫା ନିକଟରୁ ଆଉ ଉର୍ଦ୍ଧ୍ୱଗାମୀ ପାହାଚ ଏବଂ (ଘ) ଶ୍ୟାମକୁଣ୍ଡ ଠାରୁ ଏକ ଉଠାଣିଆ ରାସ୍ତା । ମନ୍ଦିର ନିକଟ-ବର୍ତ୍ତୀ ସମତଳଭୂମିରେ ଶତାଧିକ ଏକ ପ୍ରସ୍ତର ବିଶିଷ୍ଟ ଏବଂ ଏକ ପାର୍ଶ୍ୱରେ ତୀର୍ଥଙ୍କର ମୂର୍ତ୍ତି

ଶୋଭିତ କ୍ଷୁଦ୍ରାକୃତି ମନ୍ଦିର ବିକ୍ଷିପ୍ତ ଭାବରେ ଅଦ୍ୟାପି ପଡ଼ିଅଛି । ବୌଦ୍ଧଧର୍ମର ମାନସିକ ସ୍ତୂପ ପ୍ରଦାନ ସଦୃଶ ସେଗୁଡ଼ିକ ତତ୍କାଳୀନ ଧର୍ମପ୍ରାଣ ଉପାସକମାନେ ପ୍ରଧାନ ତୀର୍ଥସ୍ଥଳରେ ଦାନ କରିଥିଲେ । ସେଗୁଡ଼ିକ ସୁନ୍ଦର ନହେଲେ ମଧ୍ୟ ସେଗୁଡ଼ିକର ପ୍ରାଧାନ୍ୟ କମ୍ ନୁହେଁ । କାରଣ ସେଗୁଡ଼ିକ ଏକ ରେଖ ଦେଉଳର କଳ୍ପନା ପାଇଁ ଉପାଦାନ ଯୋଗାଇ ଥାଏ । ତୀର୍ଥଙ୍କର ମୂର୍ତ୍ତିଯୁକ୍ତ ଏହି ପ୍ରସ୍ତର ଖଣ୍ଡମାନ ପରିପୂର୍ଣ୍ଣ ସମତଳ ଭୂମିର ନାମ 'ଦେବ ସଭା' । ତାହା ମନ୍ଦିରର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ ।

ପୀଢ଼ ଶୈଳୀରେ ନିର୍ମିତ ଏହି ମନ୍ଦିରର ବିମାନ ଓ ଜଗମୋହନର ଉଚ୍ଚତା ଯଥାକ୍ରମେ ଆଠ ଓ ଛଅ ମିଟର । ଉନବିଂଶ ଶତାବ୍ଦୀରେ କାଷ୍ଠାସନରେ ଦଣ୍ଡାୟମାନ ମହାବୀରଙ୍କ କଳା ମୁଗୁନି ପଥରରେ ନିର୍ମିତ ମୂର୍ତ୍ତି ଗର୍ଭଗୃହରେ ପ୍ରଥମେ ଅଧିଷ୍ଠିତ ଓ ପୂଜିତ ହେଉଥିଲେ । ଚଳିତ ଶତାବ୍ଦୀର ପ୍ରାରମ୍ଭରେ ପାଞ୍ଚଟି ଜୈନ ତୀର୍ଥଙ୍କର ମୂର୍ତ୍ତି ଏହି ମନ୍ଦିରରେ ପ୍ରତିଷ୍ଠିତ ହେଲେ । (୯) । ତେବେ ଅଧୁନା ଶଙ୍ଖମର୍ମର ପ୍ରସ୍ତରରେ ନିର୍ମିତ ଋଷଭନାଥଙ୍କ ଯୋଗାସନ ମୂର୍ତ୍ତି ପୂଜିତ ହେଉଛନ୍ତି ୧୯୫୦ ମସିହାରେ ମନ୍ଦିରର ଡାହାଣ ପାର୍ଶ୍ୱରେ ନିର୍ମିତ ଏକ କ୍ଷୁଦ୍ର ମାର୍ବଲ ମନ୍ଦିରରେ ପାର୍ଶ୍ୱନାଥଙ୍କ ଏକ ପ୍ରକାଣ୍ଡ କୃଷ୍ଣ ମର୍ମର ମୂର୍ତ୍ତି ସଂସ୍ଥାପିତ ହୋଇଛି । ବାମ ପାର୍ଶ୍ୱସ୍ଥ କ୍ଷୁଦ୍ର ମନ୍ଦିରର ବସ୍ତହ କଳିଙ୍ଗ ଜିନ ନାମରେ ପୂଜିତ ହେଉଛି । (୧୦) । Andrew Stirling ୧[illegible]୨୦ ଖ୍ରୀ.ଅ.ରେ ଖଣ୍ଡଗିରି ପରିଦର୍ଶନ କରିଥିବା ବେଳେ ଏହି ମନ୍ଦିର ଚତୁର୍ଦ୍ଦିଗରେ ମୁଗୁନି ପଥରରେ ନିର୍ମିତ ଅନେକ ଉଲଗ୍ନ ଜୈନ ମୂର୍ତ୍ତି ଇତସ୍ତତଃ ଭାବେ ପଡ଼ିଥିବାର ଲକ୍ଷ୍ୟ କରିଥିଲେ । (୧୧) । ବର୍ତ୍ତମାନ ସେ ସବୁ ମୂର୍ତ୍ତି ଆଉ ଦେଖିବାକୁ ମିଳୁନାହିଁ । ସମ୍ଭବତଃ ବିଭିନ୍ନ ସମୟରେ ଏହି ମୂର୍ତ୍ତିଗୁଡ଼ିକ ସଂଗୃହୀତ ହୋଇ ଅନ୍ୟତ୍ର ପୂଜିତ ଅଥବା ସଂରକ୍ଷିତ ହୋଇଅଛି । (୧୨) । ମନ୍ଦିର ସମ୍ମୁଖରେ ପାହାଡ଼ କଟା ହୋଇ ପଚାଶ ଫୁଟ ବର୍ଗାକାର ଏକ ସୁନ୍ଦର ଉଚ୍ଚ ସମତଳ ସ୍ଥାନ ଦେଖିବାକୁ ମିଳେ ।

ପୂର୍ବାଭିମୁଖୀ ପୀଢ଼ ଏବଂ ପୀରାମିଡ଼୍ ସ୍ଥଳଯୁକ୍ତ ଦେଉଳ ଓ ଜଗମୋହନ ସମ୍ବଳିତ ଏହି ମନ୍ଦିରଟି ଏକ ଉଚ୍ଚ ପୀଠ ଉପରେ ନିର୍ମିତ । ମନ୍ଦିରର ବାଡ଼ ବର୍ଗାକାର ଏବଂ ବାହ୍ୟ ସୌଧ ପିରାମିଡ଼୍ ତୁଲ୍ୟ । ତାହା ଗୋଟିକ ପରେ ଗୋଟିଏ ପାହାଚ ପାହାଚ ହୋଇ ସାତଟି ପୀଢରେ ନିମ୍ନରୁ ଉର୍ଦ୍ଧ୍ୱକୁ କ୍ରମେ କ୍ରମେ ହ୍ରାସ ହୋଇଛି । ତୃତୀୟ ଓ ପଞ୍ଚମ ପୀଢ଼ର ସମ୍ମୁଖ ଭାଗ ପ୍ରାନ୍ତର ଉଭୟ ପାର୍ଶ୍ୱରେ ଉଦ୍ୟତ ସିଂହ ମୂର୍ତ୍ତିମାନ ସମ୍ମୁଖକୁ ଉଦ୍‌ଗତ ହୋଇଛନ୍ତି । ରାହାପାଗ ଗୁଡ଼ିକର ଠଣାରେ ହିନ୍ଦୁ ମନ୍ଦିର ସମ କୌଣସି ପାର୍ଶ୍ୱଦେବତା ସ୍ଥାପିତ ହୋଇନାହାନ୍ତି । ସେଗୁଡ଼ିକ ଶୂନ୍ୟ ରହିଛି । ବାଡ଼ର ପାଞ୍ଚଟି ପାଗ ଖାଖରା ମୁଣ୍ଡି ସହିତ ଖଚିତ ହୋଇଥିବା ଦେଖାଯାଏ । ଉତ୍ତର ପାର୍ଶ୍ୱ କାନ୍ଥର ନିମ୍ନରେ ପାଦୁକା ନାଳର ଉର୍ଦ୍ଧ୍ୱଗତ ମକର ମସ୍ତକା କୃତିର । ମନ୍ଦିର ମସ୍ତକ ଘଣ୍ଟା, ଆମଳକ, ଖପୁରି ଏବଂ କଳସ ଦ୍ୱାରା ମଣ୍ଡିତ । ଗର୍ଭଗୃହ ମଧ୍ୟସ୍ଥ ସିଂହାସନୋପରି ପ୍ରଧାନ ମୂର୍ତ୍ତି ହେଉଛନ୍ତି ଋଷଭନାଥଙ୍କ ଶଙ୍ଖ

ମର୍ମର ମୂର୍ତ୍ତି । ତାଙ୍କର ଦୁଇ ପାର୍ଶ୍ୱରେ ମୁଗୁନି ପଥରରେ ଗଢ଼ା ଖୋଦିତ କ୍ଷୁଦ୍ରାକୃତି ମୂର୍ତ୍ତି ସହ ଋଷଭନାଥଙ୍କର କୁଣ୍ଡାପଥରରେ ନିର୍ମିତ ଦଣ୍ଡାୟମାନ ମୂର୍ତ୍ତି ଏବଂ ଏକ ଭଗ୍ନ ଚୌମୁଖ ଦେଖିବାକୁ ମିଳେ । ଏହି ସବୁ ମୂର୍ତ୍ତି ଓ ଚୌମୁଖ ମନ୍ଦିର ଠାରୁ ଅଧିକ ପ୍ରାଚୀନତର । ମୁଗୁନି ପଥରରେ ନିର୍ମିତ ମୂର୍ତ୍ତିଗୁଡ଼ିକ ମଧ୍ୟରୁ ତିନୋଟି ଋଷଭନାଥ ମୂର୍ତ୍ତି, ଦୁଇଟି ଶାନ୍ତିନାଥ ମୂର୍ତ୍ତି, ଗୋଟିଏ ସୁମତିନାଥ ମୂର୍ତ୍ତି, ଗୋଟିଏ ଆମ୍ବା ମୂର୍ତ୍ତି ଓ ତିନୋଟି କୁଣ୍ଡା ପଥର ଉପରେ ଅଙ୍କିତ ଭିଲଗ୍ନ ତୀର୍ଥଙ୍କର ମୂର୍ତ୍ତିଗୁଡ଼ିକର ସମାବେଶ ଏଠାରେ ଦେଖାଯାଏ । ଅଧିକାଂଶ ଭାସ୍କର୍ଯ୍ୟ ସୂକ୍ଷ୍ମ କାରୁକାର୍ଯ୍ୟରେ ପରିପୂର୍ଣ୍ଣ ।

ମନ୍ଦିର ଡ଼ାହାଣ କାନ୍ଥକୁଥିରେ ମୁଗୁନି ପଥରରେ ଖୋଦିତ ଋଷଭନାଥଙ୍କ ଦଣ୍ଡାୟମାନ ବିଶାଳ ମୂର୍ତ୍ତି ଅଛି । ଏହି ମୂର୍ତ୍ତିଟି ଆକୃତିରେ ଅପେକ୍ଷାକୃତ ଉଚ୍ଚ । ଏହାର ସ୍ୱଷ୍ଟ ଫଳକରେ ଚତୁର୍ବିଂଶତି ତୀର୍ଥଙ୍କର ମୂର୍ତ୍ତି ଖୋଦିତ ହୋଇଛି । ମନ୍ଦିରର ବାମ ଠଣାରେ ଆମ୍ର ବୃକ୍ଷର ନିମ୍ନରେ ଆସୀନ ଯକ୍ଷ ଯୁଗଳ, ଅମ୍ବିକା ଓ ଗୋମେଧଙ୍କ ମୂର୍ତ୍ତି ସ୍ଥାପିତ ହୋଇଛି । ଯୁଗଳ ମୂର୍ତ୍ତିଙ୍କ ଉର୍ଦ୍ଧ୍ୱରେ ସେମାନଙ୍କର ଜିନ ମୂର୍ତ୍ତି ଚକ୍ର ଓ ଚକ୍ର ଅଙ୍କିତ ହୋଇଛି । ଜଗମୋହନ (୧୯୩) ମଧ୍ୟରେ ଥିବା କେତେଟି ପ୍ରାଚୀନ ତୀର୍ଥଙ୍କର ମୂର୍ତ୍ତି ମଧ୍ୟରୁ ଦୁଇଟି ପାର୍ଶ୍ୱନାଥ ମୂର୍ତ୍ତି ଓ ଗୋଟିଏ ଋଷଭନାଥ ମୂର୍ତ୍ତି । ବର୍ତ୍ତମାନ ଏସବୁ ମୂର୍ତ୍ତି ସେଠାରେ ଦେଖିବାକୁ ମିଳୁନାହିଁ । ପ୍ରଧାନ ମନ୍ଦିରର ପଶ୍ଚାତରେ ଥିବା ଏକ କ୍ଷୁଦ୍ର ମନ୍ଦିରରେ ପାଞ୍ଚଟି କ୍ଷୁଦ୍ରାକାର ଦଣ୍ଡାୟମାନ ତୀର୍ଥଙ୍କର ମୂର୍ତ୍ତି ପରିଦୃଷ୍ଟ ହୁଏ ।

ଏକ ଉଚ୍ଚ ମେଞ୍ଚଆ ଉପରେ ନିର୍ମିତ ଜଗମୋହନଟିର ବାଡ଼ ଆୟତାକାର ଏବଂ ଉର୍ଦ୍ଧ୍ୱସ୍ତର ପିରାମିଡ୍ ସଦୃଶ । ଘଣ୍ଟା, ଆମଳକ, ଖପୁରି ଏବଂ କଳସ ଦ୍ୱାରା ଜଗମୋହନର ଚୂଡ଼ା ସୁଶୋଭିତ । ପୂର୍ବପଟରୁ ଜଗମୋହନକୁ ମୁଖ୍ୟ ପ୍ରବେଶ ଦ୍ୱାର ରହିଛି ।

ଖଣ୍ଡଗିରିର ଏହି ଜୈନ ମନ୍ଦିରରେ ମାଘ ସପ୍ତମୀ ଦିନ ଖଣ୍ଡକ୍ଷୀର ଭୋଗ ଲାଗେ । ଏହି ଦିନ ଯେକୌଣସି ବ୍ୟକ୍ତି କୋଣାର୍କରେ ଚନ୍ଦ୍ରଭାଗା ସ୍ନାନ ପରେ ପୁରୀରେ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରି ଖଣ୍ଡଗିରିରେ ଖଣ୍ଡକ୍ଷୀର ପ୍ରସାଦ ସେବନ କଲେ ସ୍ୱଦେହରେ ସ୍ୱର୍ଗ ପ୍ରାପ୍ତି ହେବ ବୋଲି ଜନଶ୍ରୁତି ରହିଛି । ମାଘ ମାସରେ ଅନୁଷ୍ଠିତ ଖଣ୍ଡଗିରି ମେଳାରେ ଭାରତର ବିଭିନ୍ନ ପ୍ରାନ୍ତରୁ ଆଗତ ତୀର୍ଥଯାତ୍ରୀମାନେ ଯୋଗଦାନ କରି ଏହି ଜୈନ ମନ୍ଦିରରେ ନୈବେଦ୍ୟ ଅର୍ପଣ କରନ୍ତି । କଟକର ଜୈନ ବା ପାରୱାର ବଣିକ-ମାନେ ବହୁ ସଂଖ୍ୟାରେ ଏହି ମାଘ ମେଳା ଉତ୍ସବରେ ଏକତ୍ରିତ ହେଉଥିଲେ ବୋଲି ଖ୍ରୀ: ୧୮୨୫ରେ ମୁଦ୍ରିତ ପୁସ୍ତକରେ ଷ୍ଟାର୍ଲିଂ ସାହେବ ଉଲ୍ଲେଖ କରିଛନ୍ତି ।

ଓଡ଼ିଶାର ସାଂସ୍କୃତିକ ଏବଂ ବାଣିଜ୍ୟିକ ପ୍ରାଣକେନ୍ଦ୍ର ରୂପେ ସୁବିଦିତ କଟକ ସହରରେ କେତେଟି ଜୈନ ମନ୍ଦିର ଦେଖିବାକୁ ମିଳେ । ମନ୍ଦିରଗୁଡ଼ିକ ଚୌଧୁରୀ ବଜାର,

ଜାଉଲିଆ ପଟି, ଆଲମଚାନ୍ଦ ବଜାର ଏବଂ କାଜି ବଜାରରେ ଅବସ୍ଥିତ । ଏହି ମନ୍ଦିର-
ମାନଙ୍କରେ ତୀର୍ଥଙ୍କରମାନଙ୍କ ପ୍ରତିମା ପ୍ରତିଷ୍ଠିତ ହୋଇ ପୂଜିତ ହେଉଛି । ଶ୍ୱେତାମ୍ବରୀମାନେ
ପ୍ରତିମାର ସ୍ନାନ, ବସ୍ତ୍ର ଧାରଣ କରି ଧୂପଦୀପ ପ୍ରଦାନ କରନ୍ତି; କୌଣସି ଖାଦ୍ୟ ପଦାର୍ଥ
ନୈବେଦ୍ୟ ସ୍ୱରୂପ ଦେବା ନିଷିଦ୍ଧ । ଦିଗମ୍ବରୀମାନେ ପ୍ରତିମାର ବସ୍ତ୍ର ଭିନ୍ନ ଅନ୍ୟ ସକଳ
ପୂଜା କରନ୍ତି । ଖାଦ୍ୟ ପଦାର୍ଥ ନୈବେଦ୍ୟ ଦେବା ଉଭୟଙ୍କ ପକ୍ଷେ ନିଷିଦ୍ଧ । ଏହି ମନ୍ଦିର-
ମାନଙ୍କରେ ପୂଜକ ସ୍ୱରୂପ ବ୍ରାହ୍ମଣମାନେ ନିଯୁକ୍ତ ହୁଅନ୍ତି । କଟକର ଜୈନ ବଣିକମାନେ
ଏହି ମନ୍ଦିରଗୁଡ଼ିକରେ ମହାବୀରଙ୍କ ଜନ୍ମଦିନ ପାଳନ କରି ପର୍ଯ୍ୟୁଷଣ ବା ଉପବାସ ପାଳନ
କରନ୍ତି । ଏହି କର୍ମ ଦ୍ୱାରା ହିଁ କର୍ମକ୍ଷୟ ହୋଇ ଜୀବ ମୁକ୍ତିମାର୍ଗର ପଥିକ ହୁଏ— ଏହା
ସେମାନଙ୍କର ବିଶ୍ୱାସ ।

ସ୍ଥାପତ୍ୟ କଳାଦୃଷ୍ଟିରୁ ଚୌଧୁରୀ ବଜାରର ଜୁବୁଲି ମାର୍କେଟ ସନ୍ନିକଟ ଦିଗମ୍ବର
ଜୈନ ମନ୍ଦିରଟି ବିଶେଷ ଉଲ୍ଲେଖଯୋଗ୍ୟ । ଉତ୍ତର ପ୍ରଦେଶର ଲଳିତପୁର-ଝାନ୍‌ସୀରୁ
ଆସି କଟକରେ ଅବସ୍ଥାନ କରିଥିବା ପାରଓ୍ୱାର ଜୈନ ବଂଶଧରମାନଙ୍କ ଦ୍ୱାରା ଏହି
ମନ୍ଦିରଟି ନିର୍ମିତ । ଏହି ବଂଶର ମଞ୍ଜୁ ଚୌଧୁରୀଙ୍କ ନାମରୁ କଟକର ଚୌଧୁରୀ ବଜାର ନାମିତ
ହୋଇଥିବା ଶୁଣାଯାଏ । ଉନବିଂଶ ଶତାବ୍ଦୀରେ ଓଡ଼ିଶାରେ ଜୈନଧର୍ମର
ପୁନର୍ଜାଗରଣରେ ଏହି ପାରଓ୍ୱାର ପରିବାରର ଭୂମିକା ଉଲ୍ଲେଖଯୋଗ୍ୟ । ଏହି
ମନ୍ଦିରଟିରେ ଓଡ଼ିଶାର ମନ୍ଦିର କଳାର ସମସ୍ତ ମୁଖ୍ୟ ବିଶେଷତ୍ୱ ପରିଲକ୍ଷିତ ହୁଏ । ପ୍ରାୟ
୪୦ ବର୍ଷ ପୂର୍ବେ ମୁନି ମହାରାଜ ଶ୍ରୀ ମହାବୀର ସ୍ୱାମୀଙ୍କ ପ୍ରେରଣାରୁ ଏହି ମନ୍ଦିରର
ଜୀର୍ଣ୍ଣୋଦ୍ଧାର ୨୦ଟି ମାରଓ୍ୱାଡ଼ି ଦିଗମ୍ବର ଜୈନ ପରିବାରର ସହଯୋଗରେ ହୋଇଥିଲା ।
(୧୪) ।

ଏକ ପ୍ରଶସ୍ତ ବେଢ଼ା ମଧ୍ୟରେ ଅବସ୍ଥିତ ଏହି ମନ୍ଦିରରେ 'ଦେଉଳ' ବା 'ବିମାନ'
ଏବଂ 'ଜଗମୋହନ' ବା ମୁଖଶାଳା ରହିଛି । ଦେଉଳଟି 'ରେଖା' ବା 'ଶିଖର' ଏବଂ
ଜଗମୋହନଟି 'ପୀଢ଼' ବା 'ଭଦ୍ର' ଶୈଳୀରେ ନିର୍ମିତ । ଜଗମୋହନ ଏବଂ ଦେଉଳ
ସଂଲଗ୍ନ ପ୍ରକୋଷ୍ଠଟି ଅନ୍ତରାଳର କାର୍ଯ୍ୟ କରେ । ଏହି କ୍ଷୁଦ୍ର ପ୍ରକୋଷ୍ଠରେ ସମବେତ ହୋଇ
ଭକ୍ତମାନେ ସୁବିଧାରେ ଦର୍ଶନ କରିଥାନ୍ତି । ମୁଖ୍ୟ ଦେଉଳର ଉଚ୍ଚତା ଅନୁନ୍ୟ ୧୮
ମିଟର । ତାହା ପୂର୍ବାଭିମୁଖୀ ଏବଂ ରେଖାଶୈଳୀରେ ନିର୍ମିତ । ମନ୍ଦିରଟିର ପୀଠ ଉଚ୍ଚ,
ବାଡ଼ ଚତୁଃକୋଣ ବିଶିଷ୍ଟ, ଶିଖର କର୍ତ୍ତିତ ବକ୍ରାକାର ଏବଂ ଘଣ୍ଟା, ଆମଳକ, ଖପୁରି ଏବଂ
କଳସ ଦ୍ୱାରା ମସ୍ତକ ବିମଣ୍ଡିତ । ବହିର୍ଭାଗ କାନ୍ଥରେ ପାଞ୍ଚଟି ପାଗ ରହିଛି । ପ୍ରତ୍ୟେକ ପାଗ
ବାଡ଼ର ଅନ୍ତ ପର୍ଯ୍ୟନ୍ତ ଅଙ୍ଗ ଶିଖର ନକ୍ସାମାନଙ୍କ ଦ୍ୱାରା ସୁଶୋଭିତ । ପାଗର ମଧ୍ୟବର୍ତ୍ତୀ
ଗହ୍ୱରଗୁଡ଼ିକରେ ନାରୀ ମୂର୍ତ୍ତି, ସଙ୍ଗୀତଜ୍ଞ, ଦମ୍ପତି, ସିଂହ, ମୟୂର ପ୍ରଭୃତିର ମୂର୍ତ୍ତି ଖୋଦିତ
ହୋଇଛି । ପାଗଗୁଡ଼ିକରେ ସିଂହ ମୂର୍ତ୍ତିମାନ ସମ୍ମୁଖରୁ ଉଦ୍‌ଗତ ହୋଇଛି । ବେକର ନିମ୍ନ
ଭାଗରେ ପାଞ୍ଚଟି ବରଣ୍ଡ ରହିଛି । ବିସମ ଉପରେ ପ୍ରତ୍ୟେକ କୋଣରେ ବେକି, ଘଣ୍ଟ,

ଆମଳକ, ଖପୁରି ଏବଂ କଳସ ବିଦ୍ୟମାନ । ଗଣ୍ଡି ଓ ମସ୍ତକ ମଧ୍ୟରେ ବେକ ସଂଯୋଗ ରକ୍ଷା କରୁଛି । କଳସ ପାର୍ଶ୍ୱରେ ଦଣ୍ଡସହ ଧ୍ୱଜ ସ୍ଥାପିତ ହୋଇଛି । ସର୍ବୋଚ୍ଚ କଳସଟିର ଆକୃତ ଶଙ୍କୁପ୍ରାୟ । ପାର୍ଶ୍ୱଦେବତାଙ୍କ ପାଇଁ ମନ୍ଦିରରେ ସ୍ୱତନ୍ତ୍ର ପ୍ରକୋଷ୍ଠ ନାହିଁ । ବହିର୍ଭାଗ କାନ୍ଥର ମଧ୍ୟବର୍ତ୍ତୀ ପାଗ ଗୁଡ଼ିକରେ ମଧ୍ୟ କୌଣସି ଗହ୍ୱର ବା ଖୋପ ନାହିଁ । ଉତ୍ତର ଓ ଦକ୍ଷିଣପଟ କାନ୍ଥର ପଂକ୍ତି ଭିତ୍ତି ଉପରେ ଏବଂ ବାଡ଼ର କେନ୍ଦ୍ର ସ୍ଥଳରେ ଦେଉଳର ଗର୍ଭଗୃହ ଭିତରକୁ ଆଲୋକ ପ୍ରବେଶ ଓ ବାୟୁ ଚଳାଚଳ ନିମନ୍ତେ ଛିଦ୍ରିତ ଝରକା ନିର୍ମିତ ହୋଇଛି ।

ଦେଉଳ ସମ୍ମୁଖସ୍ଥ ଜଗମୋହନଟି ଭଦ୍ର ଦେଉଳର ଶୈଳୀ ସଦୃଶ । ଦେଉଳ ଓ ଜଗମୋହନ ଗୋଟିଏ ପିଣ୍ଡ ଉପରେ ନିର୍ମିତ ହୋଇଥିଲେହେଁ ଜଗମୋହନର ବାଡ଼ ସମଚତୁର୍ଭୁଜାକାର ଏବଂ ତାହାର ଊର୍ଦ୍ଧ୍ୱଭାଗ ପିରାମିଡ୍ ଅନୁରୂପ । ଜଗମୋହନର ବାହ୍ୟ ସୌଧରେ ସାତଟି ପିଢ଼ା କ୍ରମେ ଊର୍ଦ୍ଧ୍ୱକୁ ସଙ୍କୀର୍ଣ୍ଣ ଭାବରେ ପାହାଚ ପାହାଚ ହୋଇ ରହିଛି ଏବଂ ତହିଁରେ ସିଂହମୂର୍ତ୍ତି ଉଦ୍‌ଗତ ହୋଇଛି । ବାଡ଼ରେ ପାଞ୍ଚଟି ପାଗ ଅଛି । ବେକ ଉପରସ୍ଥ ମସ୍ତକରେ ଘଣ୍ଟା, ଆମଳକ, ଖପୁରି ଏବଂ କଳସ ବିଦ୍ୟମାନ । ଜଗମୋହନର ତିନୋଟି ପ୍ରବେଶ ଦ୍ୱାର ମଧ୍ୟରୁ ଦକ୍ଷିଣପଟଟି ବନ୍ଦ ଅଛି । ସେଠାରେ କେତେକ ଜୈନମୂର୍ତ୍ତି ସଂରକ୍ଷିତ ହୋଇଛି । ପଶ୍ଚିମ ଦ୍ୱାରଟି ଗର୍ଭଗୃହ ପର୍ଯ୍ୟନ୍ତ ଉନ୍ମୁକ୍ତ । ପୂର୍ବଦ୍ୱାର ବାଟେ ଭକ୍ତମାନେ ମନ୍ଦିର ମଧ୍ୟକୁ ପ୍ରବେଶ କରି ଉତ୍ତର ଦ୍ୱାର ବାଟେ ବାହାରକୁ ପ୍ରସ୍ଥାନ କରନ୍ତି । ଜଗମୋହନର ଆଭ୍ୟନ୍ତର ଛାତରେ ବିଭିନ୍ନ ପୁଷ୍ପ ଓ ରେଖା ବିଶିଷ୍ଟ ରଙ୍ଗିନ୍ ଚିତ୍ର ଅଙ୍କିତ ହୋଇଛି । ଭିତର ପଟ କାନ୍ଥର ଖୋପ ଗୁଡ଼ିକରେ ବିଭିନ୍ନ ସ୍ଥାନରୁ ଆନୀତ ବହୁ ପ୍ରାଚୀନ ଜୈନ ତୀର୍ଥଙ୍କର ମୂର୍ତ୍ତି ସ୍ଥାପିତ ହୋଇଛି । ସେ ସମସ୍ତ କଳା ମୁଗୁନି ପଥରରେ ନିର୍ମିତ ଏବଂ ଅକ୍ଷତ ଅବସ୍ଥାରେ ଅଛି । ଦ୍ୱାରବନ୍ଧ ଉପରେ ଆସ୍ଥିତ ପ୍ରସ୍ତର ଖଣ୍ଡରେ ଉଭୟ ପାର୍ଶ୍ୱରେ ଦୁଇଜଣ ଅନୁଚରଙ୍କ ମଧ୍ୟରେ ଉପବିଷ୍ଟ ପାର୍ଶ୍ୱନାଥଙ୍କ ମୂର୍ତ୍ତି ଖୋଦିତ ହୋଇଛି ।

ଗର୍ଭଗୃହର ମଧ୍ୟ ଭାଗରେ ଥିବା ମାର୍ବଲ ସିଂହାସନରେ ପ୍ରସ୍ତର, ଶଙ୍ଖ ମର୍ମର, ପିତ୍ତଳ, ବ୍ରୋଞ୍ଜ ଜୈନ ମୂର୍ତ୍ତିମାନ ପ୍ରଦର୍ଶିତ ହୋଇଛି । ସେଗୁଡ଼ିକ ମଧ୍ୟରେ ଋଷଭନାଥ, ପଦ୍ମପ୍ରଭ, ଶାନ୍ତିନାଥ, ଅଜିତନାଥ, ପାର୍ଶ୍ୱନାଥ ଓ ମହାବୀରଙ୍କ ମୂର୍ତ୍ତି ଉଲ୍ଲେଖଯୋଗ୍ୟ । ଗୋଟିଏ ପ୍ରସ୍ତରରେ ଋଷଭନାଥ ଓ ମହାବୀରଙ୍କ ଦଣ୍ଡାୟମାନ ମୂର୍ତ୍ତି ସୁନ୍ଦର ଭାବେ ଖୋଦିତ ହୋଇଛି । ଋଷଭଙ୍କ ଲାଞ୍ଛନ ବୃଷଭ ଏବଂ ମହାବୀରଙ୍କ ଲାଞ୍ଛନ ସିଂହ ଅତି ଜୀବନ୍ତ ରୂପରେ ପୀଠର ନିମ୍ନରେ ଉତ୍କୀର୍ଣ୍ଣ ହୋଇଛି । ଲାଞ୍ଛନ ଦ୍ୱୟର ଦୁଇପାର୍ଶ୍ୱରେ ଦୁଇଜଣ ଭକ୍ତ ଯୋଡ଼ହସ୍ତରେ ଆଣ୍ଠୁମାଡ଼ି ପୂଜା ଅର୍ପଣ କରୁଛନ୍ତି । ଉଭୟ ପାର୍ଶ୍ୱରେ କର୍ତ୍ତବ୍ୟରତ ଚାମରଧାରୀମାନେ ଦଣ୍ଡାୟମାନ ହୋଇଛନ୍ତି । ମୂର୍ତ୍ତି ଦୁଇଟି ସହିତ ତ୍ରିଛତ୍ର, କେବଳ ବୃକ୍ଷ, ପ୍ରଭାମଣ୍ଡଳ, କରତାଳ ବାଦନ କରୁଥିବା ହସ୍ତ ମଧ୍ୟ ଖୋଦିତ ହୋଇଛି ।

ପଦ୍ମପୀଠ ଉପରେ କାୟୋତ୍ସର୍ଗ ମୁଦ୍ରାରେ ଦଣ୍ଡାୟମାନ ପାର୍ଶ୍ୱନାଥଙ୍କ ମୂର୍ତ୍ତିଙ୍କ ମସ୍ତକରେ ସପ୍ତଫଣାଯୁକ୍ତ ସର୍ପ ଛତ୍ରାକାରରେ ଫଣା ବିସ୍ତାର କରିଛନ୍ତି । ପାର୍ଶ୍ୱନାଥଙ୍କ

ସମଗ୍ର ଶରୀର ଆପାଦ ମସ୍ତକ ସର୍ପଦ୍ୱାରା ପରିଶୋଭିତ । ପ୍ରତ୍ୟେକ ପାର୍ଶ୍ୱରେ ଚୌରୀଧାରୀ ଏବଂ ଚବିଶଟି ତୀର୍ଥଙ୍କର ମୂର୍ତ୍ତି ଉପବିଷ୍ଟ । ପାର୍ଶ୍ୱନାଥଙ୍କ ମୂର୍ତ୍ତିର ଉର୍ଦ୍ଧ୍ୱାଂଶର ଉଭୟ ପାର୍ଶ୍ୱ ହସ୍ତରେ ପୁଷ୍ପମାଲ୍ୟ ସହ ଉଡ୍ଡୀୟମାନ ବିଦ୍ୟାଧର, କରତାଳ ଓ ଦୁନ୍ଦୁଭିବାଦନ କରୁଥିବା କରତଳ, ପଦ୍ମ ଏବଂ ଚମ୍ପକ ଆଦି ଦ୍ୱାରା ବିମଣ୍ଡିତ । ଦୁଇଜଣ ନାଗକନ୍ୟା ପାର୍ଶ୍ୱନାଥଙ୍କ ପାଦପୀଠର ନିମ୍ନଭାଗରେ ନମସ୍କାର ପୂର୍ବକ ପୂଜାଅର୍ପଣ କରୁଛନ୍ତି । ଏହାଛଡ଼ା କାୟୋତ୍ସର୍ଗ ମୁଦ୍ରାରେ କଳା ମୁଗୁନିପଥରର ଶାନ୍ତିନାଥଙ୍କ ଏକ ସୁନ୍ଦର ମୂର୍ତ୍ତି ପଦ୍ମପୀଠ ଉପରେ ଦେଖିବାକୁ ମିଳେ । ପାଦ ପୀଠର ନିମ୍ନରେ ତାଙ୍କର ଲାଞ୍ଛନ ହରିଣ ଶୟନାବସ୍ଥାରେ ରହିଛି । ଅନେକ ଭକ୍ତ ନୈବେଦ୍ୟ ଅର୍ପଣ ପୂର୍ବକ ଶାନ୍ତିନାଥଙ୍କୁ ନତଜାନୁ ହୋଇ ପ୍ରଣାମ କରିବାର ଚିତ୍ର ପାଦପୀଠର ନିମ୍ନରେ ଖୋଦିତ ହୋଇଛି । ଶାନ୍ତିନାଥଙ୍କ ଉଭୟ ପାର୍ଶ୍ୱରେ ଚାମରଧାରୀ ଦ୍ୱୟ ହସ୍ତୀପୃଷ୍ଠରେ ଦଣ୍ଡାୟମାନ ହୋଇ ଚାମର ଚାଳନା କାର୍ଯ୍ୟରେ ନିଯୁକ୍ତ ହୋଇଛନ୍ତି । ତୀର୍ଥଙ୍କରଙ୍କ ପ୍ରଭାମଣ୍ଡଳ ନାନା କାରୁକାର୍ଯ୍ୟରେ ପରିପୂର୍ଣ୍ଣ । ତାଙ୍କ ମସ୍ତକର କେଶରାଶି କୁଞ୍ଚିତ ହୋଇ ମଣ୍ଡଳାକାରରେ ପଡ଼ିଛି । ମସ୍ତକର ପଶ୍ଚାଦ୍ଭାଗରେ ତ୍ରିଛତ୍ର ଅତିକ୍ରମ କରି କେବଳ ବୃକ୍ଷ ରହିଛି । ଉର୍ଦ୍ଧ୍ୱଭାଗର ଉଭୟ ପାର୍ଶ୍ୱରେ ଗନ୍ଧର୍ବଗଣ ହସ୍ତରେ ପୁଷ୍ପମାଲ୍ୟ ଧାରଣ ପୂର୍ବକ କରତାଳ ଓ ଢୋଲ୍‌ବାଦନ କରୁଛନ୍ତି । ଶାନ୍ତିନାଥଙ୍କ ମୂର୍ତ୍ତି ନାନା ଚିତ୍ରକଳା ଦ୍ୱାରା ବିମଣ୍ଡିତ । ପଦ୍ମପୀଠ ଉପରେ ଦଣ୍ଡାୟମାନ କଳା ମୁଗୁନି ପଥରର ଅନ୍ୟଏକ ମୂର୍ତ୍ତି ହେଲା ପଦ୍ମପ୍ରଭଙ୍କ ମୂର୍ତ୍ତି । ତାଙ୍କର ଉଭୟ ପାର୍ଶ୍ୱରେ ବିଭିନ୍ନ ବସ୍ତ୍ର ଓ ଅଳଙ୍କାରରେ ଭୂଷିତ ଚାମରଧାରୀମାନେ ପ୍ରତ୍ୟେକ ଗୋଟିଏ ହସ୍ତରେ ଚାମର ଧାରଣ କରି ଅନ୍ୟ ହସ୍ତଟି ନିଜ ନିଜର ଊରୁ ଉପରେ ସ୍ଥାପନ କରିଛନ୍ତି । ତୀର୍ଥଙ୍କରଙ୍କ ମସ୍ତକ ଉପରେ ପବିତ୍ର ଛତ୍ର ଅତିକ୍ରମ କରି କେବଳ ବୃକ୍ଷ ରହିଛି । ଉଭୟ ପାର୍ଶ୍ୱରେ କମଳ ଏବଂ ଉଡ଼ନ୍ତା ମୂର୍ତ୍ତି ପୁଷ୍ପମାଳା ସହ ଝାଞ୍ଜବାଦନ କରୁଥିବାର ଦୃଶ୍ୟ ଖୋଦିତ ହୋଇଛି ।

ଏହି ଜୈନ ମନ୍ଦିରରେ ଦୁଇଟି ଚୌମୁଖ ଏବଂ ଗୋଟିଏ ପ୍ରସ୍ତର ଫଳକ ଚୈତ୍ୟ ପରିଦୃଷ୍ଟ ହୁଏ । ଚୌମୁଖ ଦୁଇଟିରେ ଋଷଭ, ଶାନ୍ତିନାଥ, ମହାବୀର ଏବଂ ପାର୍ଶ୍ୱନାଥଙ୍କ ମୂର୍ତ୍ତି ସ୍ୱସ୍ୱ ଲାଞ୍ଛନ ସହିତ ଖୋଦିତ ହୋଇଛି । ଚୌମୁଖ ଦୁଇଟି କ୍ଷୁଦ୍ର ପୀଢ଼ ଦେଉଳର ଆକୃତି ସଦୃଶ । ଓଡ଼ିଶାର ବିଭିନ୍ନ ଦେଉଳର ଖାଖରା ମୁଣ୍ଡିପରି ଚଉମୁଖ ଦୁଇଟିର ଚୂଡ଼ାରେ ଆମଳକ ଶିଳା ଦେଖିବାକୁ ମିଳେ । ନିକଟସ୍ଥ ଏକ ପ୍ରସ୍ତର ଫଳକରେ ୧୪ଟି ଗଣଧର ଓ ପୂର୍ବଧରଙ୍କ ମୂର୍ତ୍ତି କାୟୋତ୍ସର୍ଗ ମୁଦ୍ରାରେ ଦଣ୍ଡାୟମାନ ହୋଇଛନ୍ତି । ଫଳକର ଶୀର୍ଷଭାଗରେ ଉପବିଷ୍ଟ ଋଷଭନାଥଙ୍କ ମୂର୍ତ୍ତିର ଉଭୟପାର୍ଶ୍ୱରେ ଚାମରଧାରୀ ରହିଛନ୍ତି । ଋଷଭଙ୍କ ଲାଞ୍ଛନ ବୃଷଭ ପାଦପୀଠର ନିମ୍ନରେ ଖୋଦିତ ହୋଇଛି । ଏହି ମନ୍ଦିରର ଅଧିକାଂଶ ମୂର୍ତ୍ତି ଉଦୟଗିରି, ଖଣ୍ଡଗିରି ସମେତ ଓଡ଼ିଶାର ଅନ୍ୟାନ୍ୟ ପ୍ରାଚୀନ ଜୈନ କ୍ଷେତ୍ରମାନଙ୍କରୁ ସଂଗୃହିତ ହୋଇଛି । ମନ୍ଦିରର ପ୍ରଧାନ ପର୍ବପର୍ବାଣୀ ହେଲା ଅନନ୍ତ ବ୍ରତ, ଦୀପାବଳୀ ଏବଂ କାର୍ତ୍ତିକ ପୂର୍ଣ୍ଣିମା ।

କଟକ ସହରର ଦ୍ୱିତୀୟ ମନ୍ଦିରଟି କାଉଁଳିଆ ପଟିରେ ଅବସ୍ଥିତ । ଏହି ଦିଗମ୍ବର ଜୈନ ମନ୍ଦିର ଏକ ବାସଗୃହର ଅଂଶ ବିଶେଷ । ମନ୍ଦିରର କେତେକ ତୀର୍ଥଙ୍କର ମୂର୍ତ୍ତି, ଯଥା—ଋଷଭନାଥ, ପାର୍ଶ୍ୱନାଥ ଓ ମହାବୀର ମୂର୍ତ୍ତି ମଧ୍ୟଯୁଗୀୟ । ଅନ୍ୟ କେତେକ ମୂର୍ତ୍ତିଙ୍କ ପାଦପୀଠରେ ଖୋଦିତ ଲିପିରୁ ସେଗୁଡ଼ିକ ସପ୍ତଦଶ ଓ ଅଷ୍ଟାଦଶ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିବା ଜଣାଯାଏ । ମୂର୍ତ୍ତିଗୁଡ଼ିକ ବ୍ରୋଞ୍ଜ ଏବଂ ଶଂଖମର୍ମର ପ୍ରସ୍ତରରେ ନିର୍ମିତ । ମନ୍ଦିରରେ ଚୈତ୍ୟାକାର ବିଶିଷ୍ଟ ମାର୍ବଲ ଫଳକରେ ଅଙ୍କିତ ଅଦୃଶ୍ୟ ଋଷଭନାଥ ମୂର୍ତ୍ତି ପୂଜିତ ହେଉଥିବା ଉଲ୍ଲେଖଯୋଗ୍ୟ । ପ୍ରକୃତରେ ଋଷଭନାଥଙ୍କ କୌଣସି ମୂର୍ତ୍ତି ଫଳକରେ ଦୃଷ୍ଟ ହୁଏନାହିଁ । କିନ୍ତୁ ତୀର୍ଥଙ୍କରଙ୍କ ସ୍ତୁପ ଫଳକଟିରେ ଅନ୍ତର୍ବର୍ତ୍ତୀ ଲ ଅଥବା ଅବତଳ ଢାଞ୍ଚାରେ ପ୍ରତିଭାତ ହୋଇଛି । ତୀର୍ଥଙ୍କର ଦଣ୍ଡାୟମାନ ହୋଇଥିବା ଅଂଶଟି ଖୋଲା ହୋଇଥିବା ଯୋଗୁଁ ତହିଁରେ ପ୍ରକୃତ ମୂର୍ତ୍ତି ପରିବର୍ତ୍ତେ ଅଦୃଶ୍ୟ ମୂର୍ତ୍ତିର ପରିକଳ୍ପନା କରାଯାଇଛି । ବେଙ୍ଗଲ-ବିହାର-ଓଡ଼ିଶା ଦିଗମ୍ବର ଜୈନ ତୀର୍ଥ କ୍ଷେତ୍ର କମିଟି କଲିକତାର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚୌଧୁରୀ ବଜାର ଓ କାଉଁଳିଆପଟିର ମନ୍ଦିର ଦୁଇଟିର ରକ୍ଷଣାବେକ୍ଷଣ ହେଉଛି ।

ଆଲମ୍ ଚାନ୍ଦ ବଜାରର ଜୈନ ମନ୍ଦିର ରାଜସ୍ଥାନର ଜୈନ ମନ୍ଦିର ଶୈଳୀରେ ନିର୍ମିତ । ଏକ ସଙ୍କୀର୍ଣ୍ଣ ପ୍ରାଙ୍ଗଣ ମଧ୍ୟରେ ଉଚ୍ଚପୀଠ ଉପରେ ଅବସ୍ଥିତ ଏହି ମନ୍ଦିରର ନିର୍ମାଣ-କାର୍ଯ୍ୟ ୧୯୭୪ ରେ ସମ୍ପୂର୍ଣ୍ଣ ହୋଇଥିଲା । ମୁଖ୍ୟ ଦେଉଳର ନିମ୍ନଭାଗଟି ଉଦଗ୍ର ଭାବରେ ପାଞ୍ଚଟି ଭାଗରେ ବିଭକ୍ତ ହୋଇଛି । କେନ୍ଦ୍ରୀୟ ପାଗର କାନ୍ଥକୁରା ଗୁଡ଼ିକରେ ତୀର୍ଥଙ୍କରମାନଙ୍କ ମୂର୍ତ୍ତି ସ୍ଥାପିତ ହୋଇଛି । ବାଡ଼ ଉପର ବାହ୍ୟ ସୌଧଟି କ୍ଷୁଦ୍ର ମିନାର ଆକାର ଧାରଣ କରିଛି । ବେଢ଼ ଉପର ଉଦ୍ଧ୍ୱଭାଗଟି ବିଷମ ଉପରେ ପ୍ରତ୍ୟେକ ଦିଗକୁ ଗୋଇଠିରେ ବସିଥିବା ମନୁଷ୍ୟ ମୂର୍ତ୍ତିକ ମସ୍ତକ ଦ୍ୱାରା ଅଙ୍କିତ । ମନ୍ଦିର ଚୂଡ଼ାରେ ଆମଳକ, ଖପୁରି, କଳସ ବିଦ୍ୟମାନ । ଧ୍ୱଜ ସ୍ତମ୍ଭଟି ତଡ଼ିତ୍ ପ୍ରବାହକ ରୂପେ ଉର୍ଦ୍ଧ୍ୱସ୍ଥ । ଦେଉଳ ସମ୍ମୁଖସ୍ଥ ଜଗମୋହନ ବା ମୁଖଶାଳାର ସ୍ଥିତ ଗମ୍ବୁଜାକାର । ପାଭାଗ, ଜଙ୍ଘ, ବନ୍ଧନା ଏବଂ ବରଣ୍ଡିକୁ ନେଇ ଗଠିତ ବାଡ଼ ବର୍ଗାକାର ବିଶିଷ୍ଟ । ଜଗମୋହନର ଚତୁର୍ଦ୍ଦିଗରେ ପ୍ରବେଶ ଦ୍ୱାର ରହିଛି । ପ୍ରାଙ୍ଗଣ ଚଟାଣଟି ଚକ୍ ଚକିଆ ଟାଇଲ୍ ଓ ମୋଜାଇକ୍ ଦ୍ୱାରା ଆବୃତ ହୋଇଛି । ଆଭ୍ୟନ୍ତରୀଣ ପ୍ରକୋଷ୍ଠରେ ଥିବା ଏକ ଉଚ୍ଚ ପୀଠ ଉପରେ ତୀର୍ଥଙ୍କର ନେମିନାଥ, ମହାବୀର ଏବଂ ମୁନି ସୁବ୍ରତଙ୍କ ଯୋଗାସନ ମୂର୍ତ୍ତିମାନ ସଂସ୍ଥାପିତ ହୋଇଛି ।

କାଜି ବଜାରସ୍ଥ ଜୈନ ମନ୍ଦିରର ଶିଳାନ୍ୟାସ ଶ୍ରୀ କଟକ ଶ୍ୱେତାମ୍ବର ଜୈନ ମୂର୍ତ୍ତି ପୂଜକ ସଂଘର କର୍ମକର୍ତ୍ତାମାନଙ୍କ ଉଦ୍ୟମରେ ୧୯୭୧ ରେ କରାଯାଇଥିଲା । ଗଣିବର୍ଯ୍ୟ ଶ୍ରୀ ଭୁବନ ବିଜୟଜୀ ମହାରାଜ ଏବଂ ତାଙ୍କର ଶିଷ୍ୟ ଶ୍ରୀ ଯଶୋବିଜୟଜୀ ମହାରାଜଙ୍କର ପ୍ରେରଣା ଓ ପ୍ରତ୍ୟକ୍ଷ ମାର୍ଗ ଦର୍ଶନରେ ଏହି ଶ୍ୱେତାମ୍ବର ଜୈନ ମନ୍ଦିର କାର୍ଯ୍ୟ ନିର୍ବାହିତ ହୋଇଥିଲା । ଏମାନଙ୍କ ଆଶୀର୍ବାଦ ଏବଂ "ଶ୍ରୀ ଇନ୍ଦୁଲାଲ ମେହେତା ଓ ଅନ୍ୟ ସହକର୍ମୀ-

ମାନଙ୍କର ଅକୁଣ୍ଠ ପରିଶ୍ରମ ଫଳରେ ଏହି ମନ୍ଦିରର 'ଅଞ୍ଜନଶଳାକା' ବିଧି,'ପ୍ରାଣ ପ୍ରତିଷ୍ଠା' ଓ 'ଗାଦିନସୀନ' ବିଧି ୧୯୭୪ ମସିହାର ମଧ୍ୟ ଭାଗରେ ଅତି ଆଡ଼ମ୍ବର ସହିତ ସମ୍ପନ୍ନ ହୋଇଥିଲା । ପୂଜା ଗଣିବର୍ଯ୍ୟଙ୍କ ପ୍ରେରଣାରେ ପ୍ରାୟ ୭୫ ଜଣ ଭାଇ ଭଉଣୀ ସେହି ବର୍ଷ ଉଷ୍ଠ, ଅଷ୍ଟମ, ଅଷ୍ଟାହ୍ନୀ, ଷୋଳଭତ୍ତା, ମାସକ୍ଷମଣର ଉପବାସ ବିଧିରେ ଭାଗ ନେଲେ । ସେହିପରି ଶ୍ରାବଣ ଭାଦ୍ରପଦ ମାସର ପରିବେଷଣ ପର୍ବ ଓ ଆଶ୍ୱିନ ମାସର ଆରାଧନା ବିଧି ଯଥୋଚିତ ଭାବରେ ପାଳନ କରିଥିଲେ ।" (୧୫) ।

ସ୍ୱର୍ଗତ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ମାତା ଆଜକୁ ପ୍ରାୟ ଷାଠିଏ ବର୍ଷ ପୂର୍ବେ କଟକ ନିକଟବର୍ତ୍ତୀ ଚୌଦ୍ୱାରଠାରେ ଏକ କ୍ଷୁଦ୍ର ଜୈନ ମନ୍ଦିର ନିର୍ମାଣ କରାଇଥିଲେ । ଉଭୟ ରେଖା ଓ ଭଦ୍ର ଶୈଳୀର ସମ୍ମିଶ୍ରଣରେ ନିର୍ମିତ ଏହି କ୍ଷୁଦ୍ର ମନ୍ଦିରରେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ସଂଗୃହିତ କେତେକ ଜୈନତୀର୍ଥଙ୍କର ମୂର୍ତ୍ତି ସଂରକ୍ଷିତ ହୋଇଛି । ତନ୍ମଧ୍ୟରେ ଋଷଭନାଥଙ୍କ ମୂର୍ତ୍ତି ହେଉଛନ୍ତି ଏହି ମନ୍ଦିରର ମୁଖ୍ୟ ଦେବତା । ତାଙ୍କ ପାଦ ପୀଠର ନିମ୍ନରେ ବୃଷଭ ଲାଞ୍ଛନ ପରିଦୃଷ୍ଟ ହୁଏ । ଉଭୟ ପାର୍ଶ୍ୱରେ ଚାମର ଧାରକ ଭରତ ଓ ବାହୁବଳୀ ଦଣ୍ଡାୟମାନ । ସ୍ୱର୍ଗତ ସାହୁଙ୍କ ମାତା ଶିବଙ୍କ ଉପାସିକା ଥିଲେ । ତେଣୁ ସେ ଋଷଭନାଥଙ୍କୁ ଜଟାଜୁଟ ଯୁକ୍ତ, ସର୍ପ ଫଣା ଦ୍ୱାରା ଆଚ୍ଛାଦିତ ଏବଂ ବ୍ୟାଘ୍ର ଚର୍ମ ପରିହିତ ପୂର୍ବକ ଶିବଙ୍କ ପ୍ରତିମୂର୍ତ୍ତି ସ୍ୱରୂପ ପୂଜା କରୁଥିଲେ । (୧୬) ।

ଭୁବନେଶ୍ୱର-କଟକ ଜାତୀୟ ରାଜପଥ ପାର୍ଶ୍ୱରେ ଅବସ୍ଥିତ ବାଣପୁର ଗ୍ରାମରେ ଡାଗାଲ ଭଟ୍ଟଙ୍କ ଦ୍ୱାରା ୧୯୭୦ ରେ ନିର୍ମିତ ଏକ କ୍ଷୁଦ୍ର ମନ୍ଦିରରେ ବ୍ରୋଞ୍ଜ ଜୈନ ମୂର୍ତ୍ତି ଅଧିଷ୍ଠିତ ହୋଇଛି । ସେଗୁଡ଼ିକ ହେଲା ଦୁଇଗୋଟି ମହାବୀର ଓ ଗୋଟିଏ ପାର୍ଶ୍ୱନାଥଙ୍କ ମୂର୍ତ୍ତି । ଏକ କେନାଲ ଖୋଳା ହେଲା ବେଳେ କୁଆଖାଇ ନଦୀ ନିକଟ ଏକ ସ୍ଥାନରୁ ଏହି ମୂର୍ତ୍ତିଗୁଡ଼ିକ ମିଳିଥିଲା । (୧୭) ।

ଏହି ସବୁ ଜୈନ ମନ୍ଦିର,ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଓଡ଼ିଶାରେ ଜୈନଧର୍ମ, କଳା ଓ ସଂସ୍କୃତିର ଶାଶ୍ୱତ ନିଦର୍ଶନ ରୂପେ ବିଦ୍ୟମାନ । ତାହା ଜୈନଧର୍ମର ଇତିବୃତ୍ତ ତଥା ଓଡ଼ିଆ ଜାତିର ଗରିମାମୟ ସଂସ୍କୃତିକୁ ଗୌରବ ମଣ୍ଡିତ କରିଛି ।

ପାଦଟୀକା :

୧. V Dahejia, Early Stone Temples of Orissa, p 103.
୨. G Ramdas, Journal of Andhra Historical Research Society, vol VI, pp 8-14
୩. R.C S Bell, p. 120, 1945
୪. N.N, Vasu, Archaeological Survey of Mayurbhanj, vol I, pp 46-47.
୫. ତତ୍ରୈବ, vol I, pp 41-42, plate 53

୬. B.Acharya, 'Jaina ruinsin Keonjhar State', Journal of Kalinga Historical Research Society, yol II, No 4 (1950) p 227.

୭. ତତ୍ରୈବ

୮. R·L Mitra, Antiquities of Orissa, vol II, p 64.

୯. Bengal District Gazetteers, Puri, p· 264.

୧୦. ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ, ପ୍ରଥମ ଭାଗ, ପୃ ୩୬୨, ସୁରେନ୍ଦ୍ର ମହାନ୍ତି ଏବଂ ଗୋପୀନାଥ ଦାସ ସମ୍ପାଦିତ ।

୧୧. Asiatic Researches, vol XV, p 312,

୧୨. D.Mitra, Udayagiri and Khandagiri,Kanpur,(1960), Archaeological Survey of India, p 64.

୧୩. I bid

୧୪. ଉତ୍କଳ ପ୍ରସଙ୍ଗ, ରଥଯାତ୍ରା ବିଶେଷାଙ୍କ, ଜୁନ୍ ୧୯୭୬, ପୃ ୮୪.

୧୫. ତତ୍ରୈବ, ପୃ ୮୭·

୧୬. ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ, ପ୍ରଥମ ଭାଗ, ପୃ ୩୬୨·

୧୭. R P. Mahapatra, Jaina Monuments of Orissa, p. 93


...o...

"ଯତଃ ଜିନ୍ ସ୍ତତୋ ଧର୍ମଃ, ଯତୋ ଧର୍ମ ସ୍ତତୋ ଜୟଃ" ।

# ସହାୟକ ଗ୍ରନ୍ଥ (ଇଂରାଜୀ)


1. Baham, J. Archie — The World's Living Religion, Delhi Publishing Company New York, 1964.
2 Banerjee, R.D. — History of Orissa, vol. I
3. Barodia, U.D. — History and Literature of Jainism Bombay, 1909.
4. Basham, A.L. — History and Doctrire of the Ajivikas, London, 1951.
5. Bhangura, D. — Jaina Ethics
6. Bhattacharya. B.C. — Jaina Iconography, Lahore, 1939.
7 Bhattacharya, N. N. — Jaina Phylosophy in Historical Out Line.
8. Brahmachari Seetal-prasadji. — Jainism and Buddhism.
9. Buhler, J G. — On the Indian Sects of the Jainas, 1903
10. Burgess, Jas. — Digambara Jaina Iconography, 1904.
11. Burgess, J and Fergusson, J — The Cave Temples of Indian (Reprint) Delhi, 1969.
12. Boolchand — Lord Mahavira, Barares, 1948.
13. Charpertier, J — The History of the Jainas.
14. Coomaraswamy, A.K. — History and of Indian and Indonesian Art, London, 1927.
15. Chetty Sri Sarmukham. — Lectures on Mahavira Jayanti at Madras.
16 Chakravarty, A — Jainism, its phylosophy and ethics Cultural heritage of India, vol. I Calcutta, 1958.
17. Das, G S — Exploration of Prachi Valley, Bhubaneswar.

18 Deo. S. B. — History of Jaina Monachism, Poona, 1956.

19 Desai, P.B. — Jainism in South India, and some Jaina Epigraphs.

20. Dhruva, A B.. — Mallalasena's Syadavada Marjari, Poona, 1933.

21. Das,Dhiren, — Ranigumpha (It is a Theatre) Bhubaneswar, 1976.

22. Ganguly, M. M, — Orissa and her remains (ancient and medieval), 1912.

23. Ghosh, A., (Edited) — Jaina Art and Architecture (Three volumes), Bharatiya Jnanapitha, New Delhi, 1974.

24. Gupta, R.S., — Iconography of the Hindus, Buddhists and Jainas, 1972.

25. Haribhadriya Suri., — Saddarsana Samuccaya, Bharatiya Jnanapeetha, Varanasi, 1970.

26. Jain, B C, — Lord Mahavira (A study in historical perspective) Banaras, 1948.

27 Jain C L., — Jaina Bibbiography, Calcutta, 1945.

28. Jain, C R., — Rishabhadeva, The Founder of Jainism, Allahabad, 1928.

29. Jain,K C, — Lord Mahavira and his times, First Edition, 1974.

30 Jain, H. L, — Jainism, the oldest living religion, Jaina Cultural Research Society, Banaras, 1951.

31 Jain, Banarsi Das, — Jaina Jatakas, Lahore, 1925.

32. Jain, Jyoti Prasad., — The Jaina Sources of history of Ancient India (100 B.C.to 900 B.C), Delhi, 1961.

33 Jain, J. C., — Life in Ancient India as depicted in Jaina Canons, Bombay, 1847.

34 Jain, P. L. (Edited) — Harivamsa Purana.

35 Jacobi H., — The Metaphysics and Ethics of the Jainas, 1908., Jaina Sutra, 2 Volumes, Oxford, 1884-85., Edited : Sthaviravali Charita Parisista Parvan of Hemachandra, Asiatic Society of Bengal, Calcutta, 1932., Uttaradhyayana Sutra and Sutrabritarga, S.B.E., Vol. XLV, 1895 Translation : Acharanga Sutra and Kalpasutra, S.B.E. XXII.

36. Jaini, J.L., — The Jaina Law, 1916; Outlines of Jainism.

37. Jaini, M.C. — Life of Mahavira, 1908.

38. Jhaveri, J.L., — First Principles of Jaina philosophy 1912.

39. Kalghatgi, T.G., — Jaina View of Life (Jivaraja Grant hamala.)

40. Kant, Sashi., — The Hathigumpha Inscription of Kharavela and the Bhabru Edict of Asoka A critical Study, Delhi, 1971.

41. Kapadia, H.R., — History of the Canonical Literature of The Jainas, Bombay, 1941. Jaina religion and literature, vol I, Part I. Lahore 1941.

42. Latha, A.B., — An Introduction to Jainism, 1905.

43. Law, B.C., — Mahavira, His life and teachings, London, 1937; India as depicted in early texts of Buddhism and Jainism London, 1941; Some Jaina Canonical Sutras, Bombay, 1949.

44. Maheta, M.L., — Jaina psychology, Amritsar, 1957.

45. Mahaptra, R.P., — Udayagiri and Khandagiri caves. Jaina Monuments of Orissa, D.K. Publications Delhi, 1984.

46. Majumdar, R.C., (edited) ... — The Age of Imperial Unity, Bharatiya Vidya Bhavan, Bombay.

47. Mitra, Debala.,... — Udayagiri and Khandagiri, Kanpur, 1960, Archaeological Survey of India.

48 R.L.Mitra., — Antiquities of Orissa, vol. II, Reprint 1963.

49. Mittal, A.C , — An Early History of Orissa (From earliest times upto Ist century B C.,) Benaras, 1962.

50. Mukherjee, R.K., — Hindu Civilization.

51. Marshall, Sir John., — Mohenjodaro and the Indus Civilization, 3 Volumes, London, 1931.

52. Nawab, S.M,, — Jaina Tirthas in India and other architecture, Ahmedabad, 1944.

53. Panigrahi, K.C., — Archaeological Remains at Bhubaneswar, Orient Longman, Calcutta. 1961; Chronology of the Bhaumakaras and the Somavamsis of Orissa, Bhopal, 1961.

54. Rath, A.K , — Studies on some aspects of the history and culture of Orissa, Punthi Pushtak, Calcutta, 1987.

55. Ray, P.K., — Prachi Valley Archaeological Survey Report, 1974-75.

56. Raychaudhury P.C. — Jainism in Bihar, Patna, .965.

57. Ramachandran, T.N., — Jaina Monuments of India, Calcutta.

58 Rajguru, S.N., — History of the Gangas, Part I., Inscriptions of Orissa, vol I, part II, vol. II, vol. III, Parts I & II.

59. Sahu, N.K., — History of Orissa, vol. I, Utkal University 1964. Kharavela, First Edition, 1984, Orissa State Museum, Bhubaneswar.

60. Saha, U.P., — Studies in Jaina Art.

61. Saletore, B.A., — Medieval Jainism Bombay,1938.

62 Shaah, C. J., — Jainism in Northern India, Bombay, 1932.

63. Sarashati, S.K., — A Survey of India Scuupture, Calcutta 1957.

64. Sankhalia, H.D. , — Jaina Iconography

65. Sen, A.C., — Schools and Sects in Jaina Literature, Calcutta, 1931.

66. Smith, V.A., — The Jaina Stupas and other Antiquities of Mathura, Allahabad,1901.

67. Schubring, Walther., — Doctrine of the Jainas, Motilal Banarsi Das, 1961.

68. Stevenson, Mrs. Sinclair., — The Heart of Jainism, Oxford, 1917, First Indian Edition, 1970.

69. Tulsi., — Pre-Vedic Existence of Sramana Tradition.

70. Vasu, N.N., — The Archaeological Survey of Mayurbhanj, vol.I, 1911.

71. Weber, Max., — Sacred Literature of the Jainas. The Religion of India Illunois (U.S.A) 1958.

72. Winterritz, M...., — An outline of Jaina Literature. Jainas in History of Indian Literatur Ahmedabad. 1946.

73. Zimmer, H., — Philosophy of India, Edt. by Joseph Campbell.



# ସହାୟକ ଗ୍ରନ୍ଥ (ଇଂରାଜୀ)


1. Achary, B.... — 'Jaina Ruins in Keonibar State', J. K. H. R. S. vol.II, No.3 (1950), pp. 225-227.

2. Aiyar, S., — Hathigumpha Cave Inscription of Kharavela', I.A., vol. XLIX (1920), pp, 43-52.

3, Banerjee, R,D.. — 'A Note on the Hathigumpha Inscription of Kharavela', J.B.O.R.S., vol.III.No.4, (1917), pp. 486-487.

4. Bajpai, K.D., — Evolution of Jaina Art in MadhyaPradesh',Bulletin of the Department of Ancient Indian History and Archaeology, No III, pp. 75-79, Vniversity of Sagar.

5. Barua; B m , — 'Old Brahmi Inscriptions in the Udayagiri and Khandagiri Caves', (Revised reading). I.H.Q., vol XIV, No I (1938), pp. 158-166. Hathigumpha, Inscription of Kharavela',I.H.Q. vol.XIV, No. 3 (1938) pp. 459-485' 'Kharavela as kind and builder', J.I.S.D. Art, vol. XV (1947) pp. 45-61

6. Bahem, J, Archaie.,... — 'An Appreciation of Syadvada Logic'' Philosophy East and West, vol. I, No.I Jan.Feb, 1951, pp.15-16.

7. Behera, K.S., — 'A Note on Jainism in Orissa', Chotelal Jain Smriti Grantha, pp. 165-173, Calcutta (1968),

8. Banerjee, p., 'History of Jainism', Indo-Asian Culture pp. 5-23, New Delhi, January, 1970

'A Note on the worship of the images in Jainism' (C 200 B.C.to A; D.200) J.B.O.R.S. ,vol,XXXVI, No.1/2 p 57 ff.

9. Bhattacharya, A.K., 'Iconography of some minor deities in Jainism', I.H.Q., vol. XXXIX, No 4, pp 332-39.

10. Bhattacharya, B.C., 'Hathigumpha Inscription and Ketu of Kalinga', J,B.O.R.S , vol XV, pt. 3/4, 1929, pp.623-34.

11. Bhattacharya, H , 'The Heores of Jaina Legend', J.A., vol XV, No.II, p 71

12. Buhler, J.G, .. 'Digambara Jainas',I.A , vol. VI (1877), p.28 'On the Indian sect of the Jainas', I. A , XXXIII (1904), p.194.

13. Caddy, A.E., 'On two unrecorded sculptures in the Ananta Cave, Khandagiri, J.A S.B. vol. LXV (1) (1891), pp 272-274.

14. Chakravorty, A., 'The contribution of Jainism to World Culture'. J. A., vol. X, 1944, No I, pp 5-15.

15. Chaterjee, A.K. 'Early Jainism and Yaksha, Worship', Journal of Ancient Indian History, vol VIII, parts 1 & 2, pp, 317-325 (1974-75).

16. Coomarasvamy, A.K., 'Notes on Jaina Art', Journal of Indian Art', vol. XVI, London, 1914.

17. Dash, M.P., Jaina Antiquities of Charampa, O. H. R. J., vol XI, No I, pp. 50-53.

18. De, S. C., 'Chaumukha, 'A symbol of Jaina Art' J J., vol VI,No I, pp 27-30. 'Kharavela in sculpture', O.H.R.J., vol, XI (1962), No I, pp 36-40.

19. Fleet, J.P., The Hathigumpha Inscription', J.R.A.S. 1923, pp 824 ff.

20. Fergusson, J., and Burgess, J., 'Cave temples of India, Ranigumpha and Ganesha Gumpha, J. I. S. O. A., pp 81-84 and 86-88.

21. Ganguly, K. K., 'Some Symbolic representation in early Jaina Art', J.J., vol. I pp 31-36.

22. Heinz, M., 'The study of Jaina Art', J. J., vol I, pp. 7-12.

23. Jain, H. L., 'Contribution of Jainism to Indian Culture', J. B. O. R. S., vol. XLIV, No.I/2 pp 1 ff.

24. Jain, J p., 'The contribution of Jainism to Indian Culture' J. J. vol. VI, No. 4, pp. 209-222. 'The Jaina Canons and their place in the study of ancient Indian culture', J. A., vol. XI, No. II, pp. 17-25 and vol. XII, No I, pp 7-16

25. Joshi, A., 'A Unique Rishava image from podasingidi' O H R.J, vol. X, No I, pp 71-76. 'Further light on the ruins of Podasingidi', O.H.R.J., vol. X, No 4, pp 30-32.

26. Jayswal, K.P., 'Hathigumpha inscription of Emperor Kharavela' (173 B C -160 B. C.), J. B. O.R.S., vol. III, No 4 (1917), pp 425-473. 'A note on the Hathigumpha inscription', J.B.O.R.S., vol. IV, No. I (1918), pp. 96-98. Hathigumpha notes', J.B. O, R. S., vol. XIV, No. I (1928), pp. 150-151.

27. Jayaswal, K. P., & Banerjee, R. D., 'The Hathigumpha inscription of Kharavela'. E. I., vol. XX, part V (1930), pp. 71-89)

28. Konow, S., 'Some Problems raised by Kharavela inscription' Acta Orientalia, vol.I(1923), pp. 12-42

29. Law, B.C., 'Parsvanatha, His Life and Doctrines', J.I.H., Vol. XXI, No I, pp. 56-62.

30. Mitra, D., 'Sasanadevis in Khandagiri Caves', J.A.S., vol.I, No. 2 (1959), pp 27-33

31. O. Malley, L. S.S...., 'Bengal District Gazetter, Puri, Calcutta, 1908.

32. Panda, R.C., 'Kharavela's Capital,' Mayurbhanj Gazetteer, Vol. IV, No. 4. (1904). pp 14-18.

33. Pandey, M.S., 'Some Fresh Lights on the Hathigumpha Inscription' J.B.O.R.S., Vol. XLIX, No.4 (1903), pp. 25-27.

34. Ramachandran T.N., 'The Manchapuri Cave', I.H.Q., Vol.XXVII,2 (1951),pp. 103-108.

35. Ramachandran, T.N., & Jain, Chotelal. 'Khandagiri and Udayagiri Caves', Calcutta, Bihar and Orissa Digambar Jain Tirtha Kshetra committee, pp, 20,1951.

36. Rath, A.K., Jainism in Kalinga in the Pre-Mauryan Period,' Orissa Historical Research Journal, Vol. XI, No. 2, pp 124-127., 'Kalinga and the Jaina literature', J.A.H. R.S.. Vol. XXXI, Parts I & IV, pp 137-142., 'Jainism in ancient Orissa', Proceedings of the International Seminar on Jainism and

Buddhism,pp. 166-170, Cuttack, 1976. 'A Note on the relation of Parsvanatha and Mahavira with Kalinga', Proceedings of the 39th session of the Indian History Congress,pp.137-148,Hyderabad, 1978. 'Jainism in early medieval Orissa', journal of Orissan History, Vol-V, No. I pp 9-17, 1983.

37. Rath,B.K., 'The unique image of Chakresvari', O. H. R. J., Vol. XXIII, No, I-IV, pp. 127-30.

38. Samuells, E. A., Khandagiri, A Visit to the Rock Cut Temples of Khandagiri', J.A.S.B., Vol.XXV (1856), pp. 222-223.

39. Shah, U. P., 'Yaksha worship in early Jaina literature', J.O.I., Vol. III, No. I, pp. 55 ff.

40. Sarma, N. V., 'Contemplation in Jaina sculpture', J. A. Vol. XII. No. I, pp. 30-32 (1947).

41. Seth, H. C. 'A critical examination of Svetambara and Digambara Chronological Tradition', J.A. Vol. X.No II, 1945, pp. 41 ff and 1946, No. II, p.4.

42. Sitaramaya, K., 'Hathigumpha Inscription', P.I H.C. Vol. VIII, pp. 52-55.

43. Sterling, A., 'An Account, Geographical, Statistical and Historical of Orissa proper or Cuttack', Asiatic Researches, Vol. XV (Scrampore) 1825, pp 311-315.

44. Subudhi, U.K., — 'Some Rishava Images in the District Museum, Jeypore, (Koraput), J.I.H., Vol. I, No. 1 pp. 20-21, January, 1980.

45 Tripathy, N., — 'A note on the Hathigumpha inscription of Kharavela, J.B.O.R.S., Vol. XVI, No.2 (1930), pp.189-205.


●

## ସହାୟକ ମୌଳିକ ଜୈନ ଗ୍ରନ୍ଥ


1. Acharanga Sutra — Translation, H. Jacobi, S.B.E. XXII (1864)
2. Antagadadasao — Comm. Abhayadeva, Edited by M. C. Modi, Ahmadabad English Translation, L. D. Barrett, London, 1907.
3. Aupapatika Sutra — 'Edited by N. G. Suru, Poona, 1936.
4. Aradhana Katha Kosha — Nemidatta.
5. Bhagavatisutra — Commentary, Abhayadeva, Agomodaya Samiti.
6. Brihat Kalpa, — Atmananda Jaina Sabha, Bhavanagar.
7. Brihat Kathakosha of Harisena, — Edited. A. N. Upadhyaya, Bombay, 1943.
8. Bhavadeva's Parsvanatha Charita — Edited. Pandit Hargovinda and Pandit Vecharadasa.
9. Harivamsa Purana — Jinasenasuri, Bombay, 1930.
10. Hemachandra's Abhidhana Chintamani.

11. Kalpasutra — Translation. H. Jacobi, S.B.E., XXII 2nd reprint, Delhi, 1968.

12. Mahaviracharita of Nemichandra Devendragani — Jaina Atmananda Sabha, 1933, Bhavnagar.

13. Nyayadhamma Kaha — Edited. N.N. Vaidya, Poona, 1940; Commentary Abhayadeva, Agamodaya, Bombay, 1919

14. Nisithachurni, — Jinadasagari, Edited, Vijaya Prema Surisvara Vikram Samvat, 1995.

15. Ogha Nijjutti, — Commentary, Dronacharya Bombay, 1919.

16. Parisista Parvan of Hemachandra, — Edt. H. Jacobi, Calcutta, 2nd edition, 1932.

17. Pauma-Chariu (Ramayana) of Vimalasuri. — Edt, H. Jacobi Bhabanagar, 1914.

18. Panchastikaya of Kundakunda. — Edt. A. C. Chakravarty, Sacred Books of the Jaina Series, Allahabad, 1920.

19. Padmapurana of Ravisena. — Bombay, 1928-29.

20. Rayapaseniya... — English Translation, N N. Vaidya, Ahmadabad, 1938.

21. Samavayanga : — English Translation, H Jacobi, S.B.E. XLV. Delhi, reprint, 1964.

22. Sudarsana Samuchhaya of Haribhadra, Calcutta, 1915.

23. Samaraicca-Kaha of Haribhadra... — Edt. H, Jacobi, Bibliothica Indica, Calcutta, 1926.

24. Satakhandagama (Dhavala) 10 Volumes. — Edt. H. V. Jain.

25. Suyagadanga, English Translation, H. Jacobi, Offord, 1985.

26. Tatwartha Sutra of Umasvamir, — Edt. Sukhalal, Benaras, 1952; Edt. K. C. Sastri, Mathura.

27. Thananga, Commentary Abhayadeva, Ahmadabad, 1937.

28. Trilokasara of Nemichandra, Bombay

29. Trisastisalarapurusha Charita, Translation H.M. Johnson, Baroda, 1930.

30. Triloyapannati of Yetivrishabhava, Edt. A. N. Upadhyaya and H. L. Jain, Sholapur, 1951.

31. Uttaradhyanasutra : English translation, H. Jacobi, XLV, Delhi reprint. 1964.

32. Uttarapurana of Gunabhadra. Benaras, 1952.

33. Uvasagadasao : English Translation, A.F.R. Hoernle. Calcutta, 1888;
Edt. P.L. Valaya, Poona. 1930.

34. Vardhamana Charita of Asaga; Sholapur, 1931

35. Vasudevahindi of Dharmadasa, Bhavanagar 1930.

36. Vividha Tirtha Kalpa of Jinaprabha, Edt. Jinavijaya, Bombay.

37. Vyavahara Bhasya Commentary, Malayagiri, Bhavanagar, 1936.

38. Yasastilaka Champu of Somadeva Edt. Sivadutta. Rad Parab, Bombay, 1901-03



## ସହାୟକ ଗ୍ରନ୍ଥ ଓ ପତ୍ରିକା ସୂଚୀ (ଓଡ଼ିଆ)

୧. ଲକ୍ଷ୍ମୀନାରାୟଣ ସାହୁ, ଓଡ଼ିଶାରେ ଜୈନଧର୍ମ, ୧୯୫୮ ଓଡ଼ିଶା ଓ ଜୈନଧର୍ମ, ବିକାଶ ପ୍ରତିଷ୍ଠାନ, କୋରାପୁଟ, ୧୯୬୦ "ଆଦିନାଥ ଋଷଭ ନା ଜଗନ୍ନାଥ ? ନବ ଭାରତ, ୧୧.୮ (୧୯୫୦), ପୃ.୨୪୫-୨୪୭ "ଓଡ଼ିଶାର ସଂସ୍କୃତିରେ ଜୈନଧର୍ମର ପ୍ରଭାବ" ନବ ଜୀବନ, ୧୧ ୧୦, (୧୯୫୭) ପୃ.୭୪୭-୭୫୨)

୨. ପଣ୍ଡିତ ନୀଳକଣ୍ଠ ଦାସ, — ଭାରତୀୟ ସଂସ୍କୃତିକୁ ଓଡ଼ିଶାର ଦାନ, ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ପ୍ରଥମ ଭାଗ 'ପ୍ରଭୁ ଶ୍ରୀ ଜଗନ୍ନାଥ ଦର୍ଶନ ତତ୍ତ୍ୱ, ସମାଜ, ତା ୧୨.୨.୮୮, ପୃ.୦୧୩

୩. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, — ଇତିହାସ ଓ କିମ୍ବଦନ୍ତୀ, ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରଣୀତ ୧୯୭୧

୪. ନବୀନକୁମାର ସାହୁ, — ଓଡ଼ିଆ ଜାତିର ଇତିହାସ, (ପ୍ରାଚୀନ କଳିଙ୍ଗ), ପ୍ରଥମ ଭାଗ ୧୯୭୪, ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର ଦ୍ୱାରା ପ୍ରକାଶିତ ।
'କଳିଙ୍ଗ ସମ୍ରାଟ ଖାରବେଳଙ୍କ ସମସ୍ୟା ନିରୂପଣ,' ନବଭାରତ, ୧.୧୦ (୧୯୫୦), ପୃ ୩୭୧-୩୭୪, 'ସଂସ୍କୃତ ସାହିତ୍ୟରେ ଖାରବେଳ,' କୋଣାର୍କ (ଓଡ଼ିଶା ସାହିତ୍ୟ ଏକାଡ଼େମୀ), ସଂଖ୍ୟା ୪୮, ପୃ ୧-୧୪.

୫. ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, — ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ, ଭୁବନେଶ୍ୱର, ୧୯୭୨

୬ ହରେକୃଷ୍ଣ ମହତାବ, — ଓଡ଼ିଶା ଇତିହାସ

୭. ପଣ୍ଡିତ ବିନାୟକ ମିଶ୍ର, — ଭାରତୀୟ ଦର୍ଶନ ପ୍ରବେଶିକା, ପ୍ରଥମ ସଂସ୍କରଣ, ୧୯୪୭

୮. କେଦାରନାଥ ମହାପାତ୍ର, — 'ଉତ୍କଳରେ ପ୍ରାଚୀନ ଜୈନକୀର୍ତ୍ତି' ସହକାର, ୧୮.୧, ପୃ ୨୯-୩୮, ୧୯୩୭ 'ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀର ଐତିହାସିକତା,' ଭକ୍ତପ୍ରଦୀପ, ଆଶ୍ୱିନ, ୧୩୪୨, ତା ୨୧.୧୨ ୩୬ ଶ୍ରୀ ଖାରବେଳ, ୧୯୭୧ ଧଉଳୀର ଇତିହାସ, ୧୯୭୫ ।

୯. ବିଶ୍ୱନାଥ ବାବା, — ସତ୍ୟ ମହିମାଧର୍ମ ତତ୍ତ୍ୱସାର

୧୦. ଜଗବନ୍ଧୁ ସିଂହ, — ପ୍ରାଚୀନ ଉତ୍କଳ, ଭୁବନେଶ୍ୱର ୯୧୭,

୧୧ ରାଜା ଗୋବିନ୍ଦଚନ୍ଦ୍ର ଭଞ୍ଜଦେଓ । — ଚଉଳା ଚରିତ ଓ ରାମଗାଥା, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ସମ୍ପାଦିତ, ୧୯୪୦

୧୨ କୃପାସିନ୍ଧୁ ମିଶ୍ର, — ଉତ୍କଳ ଇତିହାସ, କଟକ ୧୯୩୩

୧୩. ବାନାମ୍ବର ଆଚାର୍ଯ୍ୟ — 'ଭଞ୍ଜରାଜ ବିରୁଦ୍ଧ ଓ ଜୈନଧର୍ମ, ନବଭାରତ (୧୯୫୦), ୧୧, ୧୨, ପୃ. ୪୮୦-୪୮୭

୧୪. ଏନ୍. ବହୁଦାର, 'ଖାରବେଳ', ସହକାର ୧୩. ୭, ପୃ, ୨୨୯-୨୩୯, ୧୯୩୩

୧୫. ଡ଼ : ରାଧାଚରଣ ପଣ୍ଡା, ପ୍ରାଚୀ ନଦୀର ଐତିହାସିକ ବିଭବ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରକାଶିତ, ୧୯୬୯

୧୬. ଚନ୍ଦ୍ରଧର ମହାପାତ୍ର, ବାଣେଶ୍ୱର

୧୭. ଭରତଚନ୍ଦ୍ର ନାୟକ, ଭୁବନସ୍ୱାମୀ ଓ ତାହାଙ୍କ ଭାରତ ଭ୍ରମଣ

୧୮. ସତ୍ୟନାରାୟଣ ରାଜଗୁରୁ, ଓଡ଼ିଶାର ଇତିହାସ, ୧୯୮୪, ଗ୍ରନ୍ଥମନ୍ଦିର, ନାଗ ଇତିହାସ, 'କଳିଙ୍ଗରେ ଶୈବଙ୍କପୂର୍ବ ଓ ଜୈନଧର୍ମ', କୋଣାର୍କ, ତୃତୀୟ ସଂଖ୍ୟା, ପୃ. ୧୬-୧୯, ୧୯୫୯

୧୯. ବଂଶୀଧର ମହାନ୍ତି, ଓଡ଼ିଶାରେ ନାଥ ସମ୍ପ୍ରଦାୟ ଓ ନାଥ ସାହିତ୍ୟ, କଟକ ୧୯୬୮

୨୦. ସୂର୍ଯ୍ୟନାରାୟଣ ଦାସ, 'ଯୁଗେ ଯୁଗେ ଭାରତ' ପ୍ରଥମ ସଂସ୍କରଣ, ୧୯୬୨ ଶ୍ରୀ ଜଗନ୍ନାଥ ମନ୍ଦିର

୨୧. ଗୋବିନ୍ଦଚନ୍ଦ୍ର ମିଶ୍ର, ଭାରତୀୟ ଦର୍ଶନ, ଅନୁବାଦ

୨୨. ଦୋଳଗୋବିନ୍ଦ ଶାସ୍ତ୍ରୀ, ନାଥ ଧର୍ମର କ୍ରମ ବିକାଶ, ୧୯୭୧, ଖାରବେଳଙ୍କ ଶିଳାଲେଖ, ପ୍ରଥମ ସଂସ୍କରଣ, ୧୯୭୭

୨୩, ଚିତ୍ତରଞ୍ଜନ ଦାସ, ଓଡ଼ିଶାରେ ମହିମା ଧର୍ମ, ଶାନ୍ତିନିକେତନ, ୧୯୫୨

୨୪, ବେଣୀମାଧବ ପାଢ଼ୀ, ଦାରୁଦେବତା, କଟକ ୧୯୬୪

୨୫. କୁଞ୍ଜବିହାରୀ ତ୍ରିପାଠୀ, "ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖ", କୋଣାର୍କ, ୩. ୪ ପୃ. ୯-୧୫, ୧୯୬୮

୨୬, ସୁରେନ୍ଦ୍ର ମହାନ୍ତି ଓ ଗୋପୀନାଥ ଦାସ ସମ୍ପାଦିତ, ଲକ୍ଷ୍ମୀନାରାୟଣ ଗ୍ରନ୍ଥାବଳୀ, ପ୍ରଥମ ଭାଗ

୨୭. ଦୀନବନ୍ଧୁ ରଥ, ସାରଳା ମହାଭାରତରେ ସାମାଜିକ ଜୀବନ, ପ୍ରଥମ ମୁଦ୍ରଣ, ଗ୍ରନ୍ଥମନ୍ଦିର ୧୯୭୪

୨୮ ବିଜୟାନନ୍ଦ ଭର, ଧର୍ମ ଦର୍ଶନ ଓ ମାନବତାବାଦ, କଟକ, ୧୯୭୫

୨୯. ଡ଼. କୈଳାଶଚନ୍ଦ୍ର ସାହୁ, ଧର୍ମ, ସଂସ୍କୃତି, ଦର୍ଶନ, ଓ ବିଜ୍ଞାନ, ୧୯୭୭

୩୦. ଭଗବାନ ପଣ୍ଡା, ଓଡ଼ିଶାର ଧର୍ମ, ଗ୍ରନ୍ଥ ମନ୍ଦିର, ୧୯୭୮

୩ . ଫକୀରମୋହନ ଦାସ, ଓଡ଼ିଆ ସାହିତ୍ୟରେ ବିଭିନ୍ନ ଧର୍ମଧାରା (ଆଦିବାସୀ, ବୌଦ୍ଧ ଓ ଜୈନ ଧର୍ମ), ଉତ୍କଳ ଗୌରବାଣୀ ସଂସଦ, କଟକ-୧, ୧୯୮୨

୩୨. ଅଶୋକକୁମାର ରଥ, 'ଜନପଦର ଧର୍ମ ଓ ଆଧୁନିକ 'ଦୃଷ୍ଟିକୋଣ' ଡଗର, ୨୭ ବର୍ଷ, ୧୦ମ ସଂଖ୍ୟା, ଏପ୍ରିଲ ୧୯୭୫, ପୃ.୨୧-୨୨

୩୩ ପ୍ରଦୀପ୍ତକୁମାର ପଣ୍ଡା, ଓଡ଼ିଶାରେ ଧର୍ମଧାରା, କଟକ, ୧୯୮୨

୩୪. ନୃସିଂହଚରଣ ପଣ୍ଡା, 'ଜୈନଧର୍ମରେ ଈଶ୍ୱର ପ୍ରତୀତ ', ସମ୍ବାଦ, ତା. ୧୧. ୮. ୧୯୮୭

୩୫. କରୁଣାସାଗର ବେହେରା, 'ଶ୍ରୀ ଜଗନ୍ନାଥଙ୍କ ପୂଜାର ପ୍ରାଚୀନତ୍ୱ', ପୌରୁଷ, ୧୧.., ପୃ. ୩୬,

୩୬. ବାବୁଲାଲ୍ ଦୋଶୀ, 'ଓଡ଼ିଶାରେ ଜୈନ ଧର୍ମ' ଉତ୍କଳ ପ୍ରସଙ୍ଗ, ରଥଯାତ୍ରା ବିଶେଷାଙ୍କ, ଜୁନ୍ ୧୯୭୬, ପୃ ୮୩-୮୭

୩୭. ପ୍ରସନ୍ନକୁମାର ଛୋଟରାୟ ଓ କମଳାକାନ୍ତ ଝୁଣ୍ଟିଆ ଅସୁରଗଡ଼ର ଯକ୍ଷିଣୀ ଓ ଯକ୍ଷ ପୂଜାର ପରମ୍ପରା', ଝଙ୍କାର ୩୯ଶ ବର୍ଷ, ୧୦ମ ସଂଖ୍ୟା ପୃ.୯୧୩-୯୧୮ ଜାନୁଆରୀ, ୧୯୮୮.

●

## ସହାୟକ ଗ୍ରନ୍ଥ (ହିନ୍ଦୀ)

1. Hastimal, Jaina Dharmaka Manlika Itihasa, Jaypur, 1972.

2. H.L.Jain, Bharatiya Sanskritime Jaina Dharmaka yogadan, Jabalpur, 1962.
Jaina Tirtha Sarvasamgraha, Ahmadabad, 1953.

3. J.C Jain., Prachina Jaina Tirtha, Banaras, 1912.

4. J.K.Mukhtar., Bhagavan Mahavir Aur Unka Samay, Delhi, 1934, Jaina Sahitya Aur Itihas par Visad Prakash, Delhi. 1956.

5. Jaina Siddhanta Bhaskar., Arrah, Bihar

6. K.P.Jain., Bhagawan Mahavir, Delhi, 1951.

7. K.P.Jayswal., Kharavelaka Shilalekha ke Bibarana, Prayag, 19?8.

8. Kalayan Vijaya., Bhagawan Sraman Mahavira, Jalore.

9. Nagaraja., Agama Aur Tripitaka Ek Anusilan, 1969.

10. N.R.Premi., Jaina Sahitya Aur Itihasa, Bombay, 1942, Revised Edition, 1956.

11. K. C. Sastri., Jaina Sahitya Ka Itihasa, Varanasi.

12. Vijayachandra., Tirthankara Mahavira, Bombay.

13. S.B.Nawab, Jaina chitra kalpadruma. Ahmadabad, 1935.

14. Acharya Baladev Upadhyaya, Bharatiya Darshan, Varanasi, 1971.

15. Muni Ratna prabha Vijaya. Sramana Bhagawan Mahavira vol I and II.

16. Hazari Prasad Dwivedy. Natha Sampradaya




## ସାହାଯ୍ୟକ ଗ୍ରନ୍ଥ (ବଙ୍ଗଳା)


୧. ଗୁରୁଦାସ ସରକାର, ମନ୍ଦିରରେ କଥା

୨. ଉପେନ୍ଦ୍ରନାଥ ଦତ୍ତ, ଜୈନଧର୍ମ, କଲିକତା, ୧୯୨୩.


x—x

"ଯତ୍ ପାଦାନି ପବିତ୍ରାଣି ସମଲମ୍ବ୍ୟ ବର୍ଦ୍ଧ୍ୟତେ
ତତ୍ ପାଦସ୍ଥଂ ସମାଖ୍ୟାତଂ ଧ୍ୟାନଂ ସିଦ୍ଧାନ୍ତପାରଗୈଃ ।।"

ମୁଦ୍ରଣ : ମନମୋହନ ପ୍ରେସ୍, ବ୍ରହ୍ମପୁର ୨



ରାଣୀ ଗୁମ୍ଫା, ଉଦୟଗିରି



ମଞ୍ଚପୁରୀ ଓ ସ୍ୱର୍ଗପୁରୀ ଗୁମ୍ଫା, ଉଦୟଗିରି



ଋଷଭନାଥ, ପୋଡ଼ାସିଙ୍ଗିଡ଼ି (କେନ୍ଦୁଝର)



ପାର୍ଶ୍ବନାଥ, ଅଯୋଧ୍ୟା, ବାଲେଶ୍ବର



## ଲେଖକଙ୍କ ସଂକ୍ଷିପ୍ତ ପରିଚୟ :

ବ୍ରହ୍ମପୁର ଉପକଣ୍ଠସ୍ଥ ଆଙ୍କୁଶପୁର ଗ୍ରାମରେ ୧୯୪୦ ମସିହା ଜୁନ୍ ୨୮ ତାରିଖରେ ଜନ୍ମ । ପିତା ସ୍ୱନାମଧନ୍ୟ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ପ୍ରଧାନ ଶିକ୍ଷକ ୰ ଆନନ୍ଦ ରଥ ଓ ମାତା ୰ ପଦ୍ମାବତୀ ଦେବୀ । ଅନ୍‌ସ୍ଲୋ ଇନ୍‌ଷ୍ଟିଚ୍ୟୁସନ, ବ୍ରହ୍ମପୁର, ରେଭେନ୍‌ସା ମହାବିଦ୍ୟାଳୟ ଏବଂ ଆଲ୍‌ହାବାଦ ବିଶ୍ୱବିଦ୍ୟାଳୟରୁ ଶିକ୍ଷାଲାଭ କରିବା ପରେ ୧୯୬୦ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗଦାନ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ କ୍ୟୁରେଟର୍ ଏବଂ ରେଭେନସା କଲେଜ, ଶ୍ରୀକୃଷ୍ଣଚନ୍ଦ୍ର ଗଜପତି କଲେଜ, ଖଲ୍ଲିକୋଟ କଲେଜରେ ଅଧ୍ୟାପକ ଓ ପ୍ରାଧ୍ୟାପକ ତଥା ଖଲ୍ଲିକୋଟ ସାନ୍ଧ୍ୟ ମହାବିଦ୍ୟାଳୟରେ ଉପାଧ୍ୟକ୍ଷ ଏବଂ ବ୍ରହ୍ମପୁରସ୍ଥ ସରକାରୀ ବିଜ୍ଞାନ ମହାବିଦ୍ୟାଳୟରେ ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବା ପରେ ଅଧୁନା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳସଚିବ ଭାବେ ଅବସ୍ଥାପିତ । ଐତିହାସିକ, ପ୍ରତ୍ନତାତ୍ତ୍ୱିକ ଓ ଗବେଷଣାମୂଳକ ପ୍ରବନ୍ଧ ରଚନା କ୍ଷେତ୍ରରେ ନିଜର ମୌଳିକ ସାଧନାର ପରିଚୟ ଦେଇଥିବାରୁ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ୧୯୬୪ ମସିହାରେ ଷୋଡ଼ଶ ବିଷୁବ ମିଳନରେ ସେ ସମ୍ମାନିତ ହୋଇଥିଲେ । ଓଡ଼ିଶା ଇତିହାସ କଂଗ୍ରେସର ସେ ଜଣେ ଆଜୀବନ ସଭ୍ୟ ଏବଂ ଏକଦା ସେ ତାହାର ଉପ-ସଭାପତି ଥିଲେ । ବହୁ ପାଠ୍ୟପୁସ୍ତକର ଲେଖକ ରୂପେ ସେ ସୁପରିଚିତ । ତାଙ୍କ ରଚିତ ଗ୍ରନ୍ଥଗୁଡ଼ିକ ମଧ୍ୟରେ Studies on some aspects of the history and culture of Orissa ଉଲ୍ଲେଖନୀୟ ।